# ଜରାସନ୍ଧବଧ

ରଚନା :

ପଣ୍ଡିତ ୬ ଶ୍ରୀ ହରିହର ମିଶ୍ରଶର୍ମା

ସଂପାଦନା :

ଶ୍ରୀ ଦୀପ୍ତିରଞ୍ଜନ ଶେଠ

# ଜରାସନ୍ଧ ବଧ

ଲେଖକ :
ପଣ୍ଡିତ ୰ଶ୍ରୀ ହରିହର ମିଶ୍ରଶର୍ମା, ଶିକ୍ଷକ
(ତାଳଶ୍ରୀଗିଡ଼ା– ବରଗଡ଼)

ସମ୍ପାଦକ :
ଶ୍ରୀ ଦୀପ୍ତିରଞ୍ଜନ ଶେଠ



ପ୍ରକାଶକ
ଶ୍ରୀ ନଳିନୀକାନ୍ତ ମିଶ୍ର
(ବରଗଡ଼-ସମ୍ବଲପୁର)

**Jarasandhabadha** – *An Epic Origionally Written by* :
Late **Pandit Harihar Misra-sarma**, (Teacher)
*Collected and Edited by :*
**Shri Diptiranjan Seth**, *At: Babubandh*
Post : Kalamati, via. : C.A.Chiplima
Dist. : Sambalpur, (Odisha), Pin. : 768 025
First Edition : 2018
Price : Rs. 200/-

ଜରାସନ୍ଧ ବଧ– *(ମହାକାବ୍ୟ)*

ସମ୍ପାଦକ :
ଶ୍ରୀ ଦୀପ୍ତିରଞ୍ଜନ ଶେଠ, ବାବୁବନ୍ଧ
ଡାକଘର- କଳାମାଟି, ଭାୟା- ସି.ଏ. ଚିପିଲିମା
ଜି. : ସମ୍ବଲ୍‌ପୁର, ପିନ୍: ୭୬୮୦୨୫ (ଓଡ଼ିଶା)

ପ୍ରକାଶକ : ଶ୍ରୀ ନଳିନୀକାନ୍ତ ମିଶ୍ର
ବରଗଡ଼, (ଓଡ଼ିଶା)

ମୁଦ୍ରଣ : ଅପ୍ରତିମା ଅଫ୍‌ସେଟ୍ ପ୍ରିଣ୍ଟର୍ସ
ସୂତାହାଟ, କଟକ-୭୫୩ ୦୦୧, (ଓଡ଼ିଶା)

ପ୍ରଥମ ସଂସ୍କରଣ : ଦୋଳ ପୂର୍ଣ୍ଣମୀ, ୨୦୧୮

ମୂଲ୍ୟ : ଟ. ୨୦୦.୦୦
(ଦୁଇଶହ ଟଙ୍କା ମାତ୍ର)

# କୃତଜ୍ଞତା ଜ୍ଞାପନ

କବି ଓ ପଣ୍ଡିତ ହରିହର ମିଶ୍ର ପଶ୍ଚିମ ଓଡ଼ିଶାର ଜଣେ ବିଶିଷ୍ଟ ସାରସ୍ୱତ ସାଧକ । ଊନବିଂଶ ଶତାବ୍ଦୀର ଶେଷ ଆଡ଼କୁ ତଥା ବିଂଶ ଶତାବ୍ଦୀର ପ୍ରଥମଦଶକ ବେଳକୁ ବରଗଡ଼ ଅଞ୍ଚଳରେ ସଂସ୍କୃତ ସାହିତ୍ୟର ଚର୍ଚ୍ଚା ଆରମ୍ଭ ହୋଇଥିଲା ଓ ସେହି ଆଲୋଚନା ଚକ୍ରରେ ପଣ୍ଡିତ ହରିହର ମିଶ୍ର ଭାଗ ନେଇ ନିଜର ପାଣ୍ଡିତ୍ୟ ଓ ବହୁମୁଖୀ ପ୍ରତିଭାର ପରିଚୟ ଦେଇଥିଲେ । ସେ ଜଣେ ସୁସାହିତ୍ୟିକ ଓ ପ୍ରଚଣ୍ଡ ବକ୍ତାଥିଲେ । ତାଙ୍କ ଲିଖିତ କାବ୍ୟ କବିତା ମଧ୍ୟରେ 'ଅମର ପ୍ରାର୍ଥନା' (୧୯୨୭) ଓ 'ରାଘବ ବିଜୟ'(୧୯୨୯) ପୁସ୍ତକଦ୍ୱୟ ତାଙ୍କର ଜୀବଦ୍ଦଶାରେ ପ୍ରକାଶିତ ହୋଇପାରିଥିଲା । ସେହିଭଳି ତାଙ୍କର ଦେହାବସାନ ପରେ 'ଗୋଚାର ସିଦ୍ଧି କାବ୍ୟ' (୧୯୭୨) ପ୍ରକାଶିତ ହୋଇଥିଲା । ପଣ୍ଡିତ ହରିହର ମିଶ୍ର ''ଜରାସନ୍ଧ ବଧ'' ଭଳି ଖଣ୍ଡିଏ ବୃହତ୍ କାବ୍ୟ ଲେଖିଯାଇଥିଲେ ମଧ୍ୟ ତାହା ତାଙ୍କର ଜୀବିତାବସ୍ଥାରେ ପ୍ରକାଶିତ ହୋଇପାରିନଥିଲା । ବୃହତ୍ କାବ୍ୟ ଖଣ୍ଡିକ ପ୍ରକାଶିତ ନ ହେବା ଫଳରେ ଦୀର୍ଘଦିନ ଧରି ତାହାର ପାଣ୍ଡୁଲିପି କାଠ ବାକ୍ସରେ ପଡ଼ିରହିଥିଲା । ୨୦୦୧-୨୦୦୨ ମସିହା ବେଳକୁ ଶ୍ରୀଯୁକ୍ତ ପ୍ରସନ୍ନ କୁମାର ଦାଶ (ଅଧୁନା ସ୍ୱର୍ଗତ, ଭୂତପୂର୍ବ ସୁଯୋଗ୍ୟ ହେଡ୍‌ମାଷ୍ଟର, ରାଣା ପ୍ରତାପ ହାଇସ୍କୁଲ, ବରଗଡ଼), ପ୍ରଫେସର ମୀନକେତନ ପୁରୋହିତ ପ୍ରମୁଖ, ପଣ୍ଡିତ ହରିହର ମିଶ୍ରଙ୍କ ଘରୁ 'ଜରାସନ୍ଧ ବଧ' କାବ୍ୟର ପାଣ୍ଡୁଲିପି ଖଣ୍ଡିକ ସଂଗ୍ରହ କରି ଆଉ ଗୋଟିଏ ନୂତନ ପାଣ୍ଡୁଲିପି ପ୍ରସ୍ତୁତ କରି ରଖିଥିଲେ । ପାଣ୍ଡୁଲିପିର ସ୍ଥାନେ ସ୍ଥାନେ ପାଠ ନଷ୍ଟ ତଥା ଅସ୍ପଷ୍ଟ ହୋଇଯାଇଥିବାରୁ ପାଠ ନିର୍ଣ୍ଣୟ ପାଇଁ ପାଠକ ପାଠିକା ଅସୁବିଧା ଅନୁଭବ କରିବାର ଅସମ୍ଭବ ନୁହେଁ । ଶ୍ରୀଯୁକ୍ତ ପ୍ରସନ୍ନ କୁମାର ଦାଶ ତାଙ୍କର ମହାପ୍ରୟାଣର କିଛିମାସ ପୂର୍ବରୁ ''ଜରାସନ୍ଧ ବଧ'' କାବ୍ୟର ପାଣ୍ଡୁଲିପି ଖଣ୍ଡିକ ମତେ ହସ୍ତାନ୍ତର କରିଦେଇ ପ୍ରକାଶନର ବ୍ୟବସ୍ଥା ମଧ୍ୟ କରାଇ ଦେଇଥିଲେ; କିନ୍ତୁ ଦୁଃଖର କଥା ପ୍ରସନ୍ନବାବୁଙ୍କ ଜୀବଦ୍ଦଶାରେ ମଧ୍ୟ ବହି ଖଣ୍ଡିକ ପ୍ରକାଶିତ ହୋଇପାରିଲା ନାହିଁ । ଆଜି 'ଜରାସନ୍ଧ ବଧ' କାବ୍ୟ ପ୍ରକାଶନର ଶୁଭ ଅବସରରେ ସର୍ବପ୍ରଥମେ ସ୍ୱର୍ଗୀୟ ଶ୍ରୀଯୁକ୍ତ ପ୍ରସନ୍ନ କୁମାର ଦାଶ ମହାଶୟଙ୍କୁ ସଭକ୍ତି ନମସ୍କାର ଜଣାଉଛି ।

(ଘ)　　ଜରାସନ୍ଧ ବଧ

ଏହି ଗ୍ରନ୍ଥର ସମ୍ପାଦନା ଅଥବା ପ୍ରସ୍ତୁତି ସମୟରେ ଯେଉଁମାନେ ମତେ ଉତ୍ସାହିତ କରିଛନ୍ତି ସେମାନଙ୍କ ମଧ୍ୟରେ ଅଛନ୍ତି ଓଡ଼ିଶାର ଖ୍ୟାତନାମା ଗବେଷକ ଶ୍ରୀଯୁକ୍ତ ଦେବେନ୍ଦ୍ର କୁମାର ଦାଶ, ଗବେଷକ ଡକ୍ଟର ଗୌରାଙ୍ଗ ଚରଣ ଦାଶ, ପ୍ରଫେସର ମୀନକେତନ ପୁରୋହିତ ପ୍ରମୁଖ ସୁଧୀବୃନ୍ଦ । ''ଜରାସନ୍ଧ ବଧ'' କାବ୍ୟ ପ୍ରକାଶନର ବ୍ୟୟଭାର ବହନ କରିଛନ୍ତି ଶ୍ରୀଯୁକ୍ତ ନଳିନୀକାନ୍ତ ମିଶ୍ର । ସେ ହେଉଛନ୍ତି 'ଜରାସନ୍ଧବଧ' କାବ୍ୟର ସ୍ରଷ୍ଟା ପଣ୍ଡିତ ହରିହର ମିଶ୍ରଙ୍କ ପ୍ରପୌତ୍ର । ତେଣୁ ପୁସ୍ତକ ପ୍ରକାଶନର ଶୁଭମୁହୂର୍ତ୍ତରେ ସମସ୍ତଙ୍କୁ ପ୍ରଣାମ ଜଣାଉଛି ।

ଏହି ପୁସ୍ତକ ସମ୍ପାଦନା କଲାବେଳେ ଯେଉଁ ତଥ୍ୟଗୁଡ଼ିକ ବ୍ୟବହାର କରିଛି, ସେଗୁଡ଼ିକ 'ଉତ୍କଳ ସାହିତ୍ୟ ସମାଜ' (କଟକ)ର 'ମଧୁସୂଦନ ପାଠାଗାର', 'ଓଡ଼ିଶା ରାଜ୍ୟ ଅଭିଲେଖାଗାର' (ଭୁବନେଶ୍ୱର), 'ଓଡ଼ିଶା ରାଜ୍ୟ ସଂଗ୍ରହାଳୟ' ଏବଂ 'କେଦାରନାଥ ଗବେଷଣା ପରିଷଦ'ରୁ ସଂଗୃହୀତ । 'ଜରାସନ୍ଧବଧ' କାବ୍ୟର ମୁଦ୍ରଣ କାର୍ଯ୍ୟରେ ବିଶେଷ ସହଯୋଗ କରିଛନ୍ତି 'କଟକ, ଅପ୍‌ଟିମା ଅଫ୍‌ସେଟ୍ ପ୍ରିଣ୍ଟସ୍'ର ପରିଚାଳକ ଶ୍ରୀତପନ କୁମାର ମହାପାତ୍ର । ତେଣୁ ଉପରୋକ୍ତ ସମସ୍ତ ପାଠାଗାରର କର୍ମକର୍ତ୍ତାଙ୍କ ସହିତ ଶ୍ରୀ ତପନ କୁମାର ମହାପାତ୍ରଙ୍କୁ ବିଶେଷ କୃତଜ୍ଞତା ଜଣାଉଛି ।

ଶେଷରେ, ପାଠକ-ପାଠିକା, ଗବେଷକ-ଗବେଷିକା ''ଜରାସନ୍ଧ ବଧ'' କାବ୍ୟ ପାଠକରି ଆନନ୍ଦିତ ହେବେ ବୋଲି ଆଶା କରେଁ ।

ବାବୁବନ୍ଧ　　　　　　　　ଶ୍ରୀ ଦୀପ୍ତିରଞ୍ଜନ ଶେଠ
(ତା. ୧-୩-୨୦୧୮)
ଦୋଳ ପୂର୍ଣ୍ଣିମା

# ବିଷୟସୂଚୀ

# ଭୂମିକା

ଯାହାର ଅତୁଳ ଶୌର୍ଯ୍ୟବୀର୍ଯ୍ୟ ଓ ପ୍ରତାପରେ ନିଖିଳ ଭାରତ ଚଳିତ, ଚକିତ ଓ ସ୍ତମ୍ଭିତ; ଯାହାର ଦୋର୍ଦ୍ଦଣ୍ଡବଳରେ ତତ୍‌କାଳୀନ ଉପକଦମ୍ବ ତ୍ରସ୍ତବ୍ୟସ୍ତ ଓ ସୁଦୂର ପରାହତ; ଯେ ଅଦମ୍ୟ ଉତ୍ସାହ ଓ ସାହସ ସହକାରେ ଷଣ୍ଣବତି ସହସ୍ର ନରେଶଙ୍କୁ ଅନାୟାସରେ ନିତାନ୍ତ ଅନୁଗତ ଭୃତ୍ୟବତ୍ ପଦାନତ କରି ରଖିଥିଲେ; ଯେ ଯାଦବକୁଳ ଚୂଡ଼ାମଣି ରାମକୃଷ୍ଣ ଦ୍ୱୟଙ୍କୁ ବନ୍ଧନୋଦ୍ଦେଶ୍ୟରେ ମାନସ ରଖି ଅସୀମ କ୍ଷତି ଓ ପରିଶ୍ରମ ସ୍ୱୀକାର ପୁରଃସର ଅଟଳ ପ୍ରତିଜ୍ଞାରେ ଅଷ୍ଟଦଶବାର ମୁହୁଃ-ମୁହୁଃ ଅଭିଯାନ କରତଃ ଜଗତକୁ ନିଜ ଚତୁରତ୍ୱର ପରାକାଷ୍ଠା ପ୍ରଦର୍ଶନ କରିଥିଲେ; ଯେ ଅନ୍ୟାନ୍ୟ ପରାକ୍ରମୀ ରାଜାଙ୍କ ତୁଲ୍ୟ ସ୍ୱବିଜୟାଦି ଗୁରୁତର କାର୍ଯ୍ୟ କରି ନଥିଲେ ହେଁ ଭାରତ ବକ୍ଷରେ ନିଜର ବିପୁଳତାର ପ୍ରଭାବ ଅକ୍ଷୁର୍ଣ୍ଣ ରଖିଥିଲେ; ସେହି ପ୍ରବଳ-ପରାକ୍ରମୀ ଚକ୍ରବର୍ତ୍ତୀ ରାଜା ଜରାସନ୍ଧଙ୍କ ସମ୍ବନ୍ଧରେ କିଛି ନା କିଛି ଜାଣିବା ନିତାନ୍ତ ଆବଶ୍ୟକ । ମହାବୀର ଜରାସନ୍ଧ ଜଣେ ତାନ୍ତ୍ରିକ ଶାକ୍ତ ମହାମଲ୍ଲ ମହାଧିରାଜା ଏବଂ ରାଜନୀତିଜ୍ଞ ନରପତି ଥିଲେ । ହିଂସା, ଅଭିମାନ, କ୍ରୋଧ ଆଦି ଦୁର୍ଗୁଣଗଣ ତାଙ୍କ ଜୀବନର ଏକାନ୍ତ ସହଚର ଥିବା ହେତୁ ଜୀବହିଂସାଦି ବିଷୟରେ ତାଙ୍କର ଧର୍ମାଧର୍ମ ବିଚାର ନ ଥିଲା । ତା'ପରେ ଦେବର୍ଷି ନାରଦଙ୍କ ଅତ୍ୟୁତ୍କୂଟ କଟୁ ମନ୍ତ୍ରଣାରେ ପଡ଼ି ହିତାହିତଶୂନ୍ୟ ହୃଦୟରେ ନୃପମେଧ ସକାଶେ ସେ ସେହି ଷଣ୍ଣବତି ସହସ୍ର ନରେଶଙ୍କୁ ବନ୍ଦୀ କରି ନିଧନ କରିବା ବାସନା ରଖିଥିଲେ । ଅହୋ ! କି ଘୋର ଲୋମହର୍ଷଣ-କାରୀ ବ୍ୟାପାର ଜଗତ ସମକ୍ଷରେ ସନ୍ଦର୍ଶନ କରାଇ ନିଜ ଜୀବନକୁ କଳଙ୍କିତ କରିଥିଲେ ରାଜନ୍! ଏତ ବିଷୟ ଭାବନା କଲେ ମନୋଜଗତରେ ଏକଦୁର୍ବିସହ ଶୋକ ଦୁଃଖର ଧାରା ପ୍ରବାହିତ ହୁଏ । ଯାହାହେଉ, ମହାରାଜା ଜରାସନ୍ଧଙ୍କ ଜୀବନରେ ଅନେକ ଅତ୍ୟଦ୍ଭୁତ ଘଟନା ଓ ଅନେକ କୌତୁକାବହ ବ୍ୟାପାର ସଂଘଟିତ ହୋଇଥିଲା । ଯେଉଁ ବିଷ ସନ୍ଦେହ ପ୍ରାୟ ଅନେକ କୋବିଦଙ୍କ ହୃଦୟ ଗୋଚର ନୋହିଥିବ ବୋଲି ମନେହୁଏ । କୌଣସି ପୁରାଣାଦିରେ ତାଙ୍କ ସମ୍ବନ୍ଧରେ ସେପରି ଧାରାବାହିକ ତଥ୍ୟ ଲିଖିତ ହୋଇଥିବା ଦୃଷ୍ଟିଗୋଚର ହୁଏ ନାହିଁ । ଏପରି ଶୂରବୀର ପ୍ରତାପୀ ମହାରାଜାଙ୍କ ଆଦ୍ୟୋପ୍ରାନ୍ତ ବିବରଣ ଜାଣିବା, ସର୍ବଜନ ପ୍ରୟୋଜନ ମନେକରି ମୁଁ ଏହି ଗ୍ରନ୍ଥ ପ୍ରଣୟନରେ ନ୍ୟସ୍ତ ହେଲି । ଏଥିରେ କାବ୍ୟାନୁମୋଦିତ ରଚନାତ୍ରୁଟୀ ନଥିଲେ ହେଁ ତାଙ୍କର ବିବରଣ ଗୁଡ଼ିକ ଯଥାର୍ଥଭାବରେ ସନ୍ନିବେଶିତ ହୋଇଥିବାର ଅନୁମାନ କରେଁ ।

(ଳ)  ଜରାସନ୍ଧ ବଧ

ଏହି ଗ୍ରନ୍ଥରେ ଯେ କେବଳ ବୀରବୀର୍ଯ୍ୟ ଜରାସନ୍ଧଙ୍କ ବିବରଣ ବର୍ଣ୍ଣିତ ତାହା ନୁହେଁ; ତତ୍‌କାଳୀନ ଭାରତୀୟ ରାଜନ୍ୟବୃନ୍ଦଙ୍କ ରାଜନୀତି, ଆଚାର, ବ୍ୟବହାର ଏବଂ ଐଶ୍ୱର୍ଯ୍ୟ ବୀର୍ଯ୍ୟାଦିର ବିଷୟ ଲିଖିତ ହୋଇଅଛି । ପୁନଶ୍ଚ ଯଦୁ-ବଂଶାବତଂସ ଶ୍ରୀକୃଷ୍ଣଙ୍କର ଅପ୍ରମେୟ ବୁଦ୍ଧି ବଳ ଓ ରାଜନୀତିଜ୍ଞତା, ଅତ୍ୟୁଦ୍ଭୂତ ମହିମା କୌଶଳ ଉଚିତବ୍ୟତା ଏବଂ ଭକ୍ତପ୍ରତି ନିଜର ଏକାନ୍ତ ସହୃଦୟତା ଇତ୍ୟାଦିର କଥା ବର୍ଣ୍ଣିତ ହୋଇଅଛି ।

ମୋର ପ୍ରଣୀତ ଗ୍ରନ୍ଥ 'ଗୋଚାର ସିଦ୍ଧି', 'ଅମର ପ୍ରାର୍ଥନା', 'ରାଘବ ବିଜୟ', 'କବିତା କଦମ୍ବ', 'କିଶୋର ବିଚ୍ଛେଦ', 'କିଶୋରୀ ବିଚ୍ଛେଦ', 'ସୁଭଦ୍ରା ରୋଦନ', 'ପତିବ୍ରତା ଧର୍ମ', 'ସଙ୍ଗୀତ କୁମୁଦାକର' ଏବଂ ଅନ୍ୟାନ୍ୟ ଅନେକ ଛୋଟଛୋଟ କବିତା ମଧ୍ୟରେ ଏହି 'ଜରାସନ୍ଧବଧ' ବୃହତ୍ତମ । ମୁଁ ଶିକ୍ଷାବିଭାଗରୁ ପେନ୍‌ସନ୍ ପ୍ରାପ୍ତ ହୋଇ ଗୃହରେ ରହୁଥିବା କାଳରେ, ବୃଥା କାଳକ୍ଷେପ ଜାଣି ଏବଂ ମୋର କନିଷ୍ଠ ତନୟ ଶଶିଭୂଷଣ ମିଶ୍ର ବରଗଡ଼ ଜର୍ଜହାଇସ୍କୁଲର ଆସିଷ୍ଟାଣ୍ଟ ମାଷ୍ଟର୍ ମୋର କବିତା ପ୍ରତି ଆଗ୍ରହ ପ୍ରକାଶ କରୁଥିବା ଦେଖି ବାକ୍‌ଦେବୀଙ୍କ କରୁଣାରୁ ଗ୍ରନ୍ଥଟି ଲେଖି ବସିଲି । ଗ୍ରନ୍ଥ ରଚନା ସମୟରେ ଶୋକଦୁଃଖର ପ୍ରବଳ ଢେଉ ମୋର ହୃଦୟ ହ୍ରଦକୁ ଆନ୍ଦୋଳିତ କରିଥିଲା । ତେଣୁ ଦୁର୍ବିସହ ମନୋ-ବେଦନାରେ ବହୁକାଳ ଲେଖନୀ ଧାରଣ କରିପାରିନଥିଲି; କିନ୍ତୁ ସେଗୁଡ଼ିକ ଜୀବନର ନିତ୍ୟ ସହଚର ମନେକରି ପାଶ୍ଚାତ୍ ପ୍ରକୃତିସ୍ଥ ହୋଇ ଲେଖନୀ ଧାରଣ କଲି । ଏଥିରେ ସତ୍ ସାହିତ୍ୟର ହୃଦୟ କ୍ରନ୍ଦନକାରୀ ତେଣ୍ଟୋଇର ଟେଁ, ଡାମରାକାଉର କା, ବା ଚୂଟିଆମୂଷାର ଭିକମଗା ନାହିଁ । ଅଛି କେବଳ ପୁରାତନ ସଭ୍ୟତା, ପୁରାତନ ସାଜସଜ୍ଜା, ପୁରାତନ ରାଜନୀତି, ଆଚାର ବ୍ୟବହାର ଏବଂ ଶୌର୍ଯ୍ୟ ବୀର୍ଯ୍ୟାଦିର ମହୋଜ୍ଜ୍ୱଳ ଛବି ।

ଅତଃପର ଉତ୍କଳ ଭାଷାରେ ଅମିତ୍ରାକ୍ଷର ଛନ୍ଦ ରଚିତ ଗ୍ରନ୍ଥର ବିରଳତା ଦେଖି ମୁଁ ଏହି ଗ୍ରନ୍ଥ ଅମିତ୍ରାକ୍ଷର ଛନ୍ଦରେ ପ୍ରଣୟନ କରିଅଛି । ଅନୁପ୍ରାସର ଅବତାରଣାରେ ଗ୍ରନ୍ଥଟି ଦେବ ଓ ମାନବ ଉଭୟ ଭାଷାରେ ଅନୁପ୍ରାଣିତ ହୋଇଛି । ପାଠକ ମହାଶୟବୃନ୍ଦ ଏହାକୁ ଆମୂଳଚୂଳ ପାଠକଲେ ଗ୍ରନ୍ଥର ସାରାସାର ଏବଂ କବିର ପରିଶ୍ରମ ଅନାୟାସରେ ବୁଝିପାରିବ । ଅଳମତି ବିସ୍ତରେଣ ।

ନିବାସୀ: ତାଳଶ୍ରୀଗିଡ଼ା  ଗ୍ରନ୍ଥ ପ୍ରଣେତା
ପୋ:ଅ: ବରଗଡ, ଜି: ସମ୍ବଲପୁର ।  ଶ୍ରୀ ହରିହର ମିଶ୍ର

# ପ୍ରସ୍ତାବନା: କବି ଓ ଶିକ୍ଷକ-ପଣ୍ଡିତ ହରିହର ମିଶ୍ର

କବି ଓ ପଣ୍ଡିତ ହରିହର ମିଶ୍ରଶର୍ମା (ସାହିତ୍ୟିକ ଶଶିଭୂଷଣ ମିଶ୍ରଶର୍ମା (ବୁଢ଼ା-ମାଷ୍ଟ୍ରେ)ଙ୍କ ପିତା) ପଶ୍ଚିମ ଓଡ଼ିଶାର ଜଣେ ବିଶିଷ୍ଟ ସାହିତ୍ୟିକ ଓ ସମ୍ଭବତଃ ରାଧାନାଥ ସରଣୀର ଶେଷ କବି । ସମ୍ବଲପୁର ଜିଲ୍ଲାର (ଅଧୁନା ବରଗଡ଼) ନିକଟବର୍ତ୍ତୀ ''ଅଡ଼ଗାଁ'' ନାମକ ଏକ କ୍ଷୁଦ୍ର ପଲ୍ଲୀରେ କବି ହରିହର ମିଶ୍ରଙ୍କ ଆବିର୍ଭାବ । ସେ ଗଙ୍ଗାଧରଙ୍କ ସମସାମୟିକ ସାହିତ୍ୟିକ ଥିଲେ । ଉନବିଂଶ ଶତାବ୍ଦୀରେ ଜନ୍ମ ଲାଭ କରି କବି ହରିହର ଏତେ ସବୁ ଚମତ୍କାର ଓ ଉପାଦେୟ ତଥା ଉଚ୍ଚକୋଟୀର କାବ୍ୟ-କବିତା ଲେଖିଥିଲେ ହେଁ ତାଙ୍କର ସାହିତ୍ୟିକ ପ୍ରତିଭା ପ୍ରକୃତରେ ଲୋକଲୋଚନକୁ ଆସି ପାରି ନ ଥିଲା; କିମ୍ୱା ନିଜର ସାହିତ୍ୟିକ ପ୍ରତିଭାର ପ୍ରଚାର ପ୍ରସାର ଦିଗରେ ସେ ଆଦୌ ସ୍ଵଚେତନ କିମ୍ୱା ସଚେଷ୍ଟ ନଥିଲେ ।

କବି ଓ ଶିକ୍ଷକ –ପଣ୍ଡିତ ହରିହର ମିଶ୍ର ୧୮୬୯ ମସିହାର ପବିତ୍ର ଶ୍ରୀକୃଷ୍ଣ ଜନ୍ମାଷ୍ଟମୀ ତିଥିରେ ଅବିଭକ୍ତ ସମ୍ବଲପୁର ଜିଲ୍ଲାର ବରଗଡ଼ ସନ୍ନିକଟ ''ଅଡ଼ଗାଁ'' ଗ୍ରାମରେ ଜନ୍ମଲାଭ କରିଥିଲେ । ତାଙ୍କର ବାପା ଗୋପୀନାଥ ମିଶ୍ର ଦନ୍ତାନଦୀ ତଟବର୍ତ୍ତୀ ତାଳଶ୍ରୀଗିଡ଼ା ଗ୍ରାମର ସ୍ୱନାମଧନ୍ୟ ଗୌନ୍ତିଆ ବୃନ୍ଦାବନ ଦାଶଙ୍କ ସାଗ୍ରହ ଅନୁରୋଧ ରକ୍ଷାକରି ତାଳଶ୍ରୀଗିଡ଼ା ଗ୍ରାମର ବାସିନ୍ଦା ହୋଇଥିଲେ । ଐତିହାସିକ ଶିବପ୍ରସାଦ ଦାଶ ଏହି ବଂଶର ପରିଚୟ ଦେବାକୁଯାଇ ଲେଖିଛନ୍ତି :

> ''ପୁରୀ ଜିଲ୍ଲାର ବୀର ରାମଚନ୍ଦ୍ରପୁର ଶାସନର ଏକୋଦ୍ଦିଷ୍ଟ ଶମ୍ଭୂକର ଭରଦ୍ୱାଜ ମିଶ୍ର ଗୋତ୍ରିୟ ବ୍ରାହ୍ମଣମାନେ ପୁରୀ ମୁକ୍ତିମଣ୍ଡପର ପ୍ରଥମ ସ୍ତମ୍ଭ ଏବଂ ଶାସନୀ ବ୍ରାହ୍ମଣମାନଙ୍କ ମଧ୍ୟରେ ଅଗ୍ରଣୀ । ସମ୍ବଲପୁର ଛତ୍ରପତି ଚୌହାନ ନରପତିଙ୍କ ଅନୁରୋଧକ୍ରମେ ପୁରୀ ଗଜପତି ଏହି ଶମ୍ଭୂକର ଭରଦ୍ୱାଜ ମିଶ୍ର ବଂଶର ୧୨/୧୩ଘର ବ୍ରାହ୍ମଣ ସମ୍ବଲପୁରକୁ ପଠାଇ ଦେଇଥିଲେ । ଚୌହାନ ନରପତି ସେମାନଙ୍କୁ ନିଷ୍କର ଭୂମିବୃତ୍ତି ଦେଇ ରାଜଗୁରୁ ପଦରେ ବରଣ କରି ସମ୍ବଲପୁରରେ ରଖିଥିଲେ । ସେମାନଙ୍କ ମଧ୍ୟରୁ ଜଣେ ରାଜାନୁଗ୍ରହ ପ୍ରତ୍ୟାଖ୍ୟାନ କରିଥିଲେ ଏବଂ ମହାନଦୀ ଦକ୍ଷିଣତୀର ବରଗଡ଼ ଅଞ୍ଚଳକୁ ପ୍ରସ୍ଥାନ କରି ଦନ୍ତା ନଦୀର ଦକ୍ଷିଣ ତଟସ୍ଥିତ

ଅଡ଼ଗାଁ ଗ୍ରାମରେ ବାସ କଲେ । ଅଡ଼ଗାଁର ତଦାନୀନ୍ତନ ଧର୍ମପ୍ରାଣ ଗୌନ୍ତିଆ ଜମିବାଡ଼ି ଦେଇ ତାହାଙ୍କୁ ସମାଦରରେ ଗ୍ରହଣ କରିଥିଲେ । ତାହାଙ୍କର ଦୁଇ ପୁଅ-ଗୋପୀନାଥ ଓ ଗୋବିନ୍ଦ । ଗୋପୀନାଥଙ୍କ ତିନିପୁଅ ନବଘନ, ତ୍ରିଲୋଚନ, ଓ ହରିହର, ଦୁଇଝିଅ-ରୁକ୍ମିଣୀଓ ଯଶୋଦା । ବରଗଡ଼ ମାଫିଦାର ବଂଶୀୟ ସ୍ୱନାମଧନ୍ୟ କୃଷ୍ଣଦାଶଙ୍କ ଜ୍ୟେଷ୍ଠପୁତ୍ର ବୃନ୍ଦାବନ ଦାଶଙ୍କ ସଙ୍ଗେ ରୁକ୍ମିଣୀଙ୍କର ବିବାହ ହୋଇଥିଲା । ବୃନ୍ଦାବନ ଦନ୍ତାନଦୀର ବାମତଟବର୍ତ୍ତୀ ତାଳଶ୍ରୀଗିଡ଼ା ଗ୍ରାମର ଗୌନ୍ତିଆ ଥିଲେ । ସେ ଶ୍ୱଶୁର ଗୋପୀନାଥଙ୍କୁ ଅଡ଼ଗାଁରୁ ଆଣି ତାଳଶ୍ରୀଗିଡ଼ାରେ ରଖିଥିଲେ ।''

(ଗୋଚାରସିଦ୍ଧି କାବ୍ୟ–୧୯୭୨, ପୃ ୧–୨)

ତାଳଶ୍ରୀଗିଡ଼ା ଗ୍ରାମରେ ରୁକ୍ମିଣୀ ଦେବୀଙ୍କ ବଡ଼ପୁଅ ଅର୍ଥାତ୍ ହରିହରଙ୍କ ନିଜ ଭଣଜା-ଗଜରାଜଙ୍କ ସଙ୍ଗେ ଗ୍ରାମ୍ୟ ଚାଟଶାଳୀରେ ଶିକ୍ଷା ଶେଷକରି ବରଗଡ଼ର ଫାଷ୍ଟଗ୍ରେଡ୍ ଭିଲେଜ ସ୍କୁଲରେ ଅଧ୍ୟୟନ କଲେ । ସେ କାଳରେ ବରଗଡ଼ର ଭିଲେଜ୍‌ସ୍କୁଲ ଏକ ଉଚ୍ଚ ଆଦର୍ଶ ସମ୍ପନ୍ନ ଶିକ୍ଷାନୁଷ୍ଠାନ ଥିଲା । କଟକ ଜିଲ୍ଲାର ମୂଳବସନ୍ତ ଗ୍ରାମ ନିବାସୀ ପଣ୍ଡିତ ମାଧବଚନ୍ଦ୍ର କର ଏହି ବିଦ୍ୟାଳୟରେ ପ୍ରଧାନ ଶିକ୍ଷକ ଥିଲେ । ମାଧବ ଚନ୍ଦ୍ର କର ହେଉଛନ୍ତି ସେ କାଳର ବିଖ୍ୟାତ୍ ''ଉତ୍କଳ ସାହିତ୍ୟ'' ପତ୍ରିକାର ସୁଯୋଗ୍ୟ ସଂପାଦକ ବାଗ୍ମୀ ବିଶ୍ୱନାଥ କରଙ୍କ ସଂପର୍କୀୟ । ମାଧବଚନ୍ଦ୍ର କରଙ୍କ ଉପରେ ବିଶ୍ୱନାଥ କରଙ୍କ ଗଭୀର ପ୍ରଭାବ ପଡ଼ିଥିଲା । ତାଙ୍କର ଶିକ୍ଷାଦାନ ପ୍ରଣାଳୀ ଉଚ୍ଚକୋଟୀର ଥିଲା । ଛାତ୍ର ହରିହର ପଣ୍ଡିତକର ମହାଶୟଙ୍କ ତତ୍ତ୍ୱାବଧାନରେ ରହି ପ୍ରାଚୀନ ଓଡ଼ିଆ ସାହିତ୍ୟ, ବିଶେଷ କରି ଛାନ୍ଦ ସାହିତ୍ୟ, ବ୍ୟାକରଣ ଓ ଅଳଂକାର ଶାସ୍ତ୍ର ଭଲଭାବରେ ଅଧ୍ୟୟନ କରିବାର ସୁଯୋଗ ପାଇଥିଲେ । ଛାତ୍ରାବସ୍ଥାରେ ହରିହର ଜଣେ ମେଧାବୀ ଛାତ୍ର ଥିଲେ । ଭିଲେଜ୍ ସ୍କୁଲର ଶେଷ ପରୀକ୍ଷାରେ ହରିହର କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହୋଇଥିଲେ ମଧ୍ୟ ନିଜ ପିତାଙ୍କ ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନଥିବାରୁ ସେ ଆଉ ପାଠ ପଢ଼ି ପାରିଲେ ନାହିଁ ।

ସେତେବେଳେ ସମ୍ବଲପୁର ଜିଲ୍ଲା ମଧ୍ୟ ପ୍ରଦେଶ ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ମଧ୍ୟ-ପ୍ରଦେଶରେ କୃଷି ଓ ଚିତ୍ରାଙ୍କନ (ଡ୍ରଇଂ) ଭିଲେଜ୍ ସ୍କୁଲର ଦୁଇଟି ପ୍ରଧାନ ଶିକ୍ଷଣୀୟ ବିଷୟ ଥିଲା । ତତ୍‌କାଳୀନ ଶିକ୍ଷା ବିଭାଗର ନିର୍ଦ୍ଦେଶରେ ହରିହର ମିଶ୍ର ନାଗପୁରରୁ କୃଷି- ବିଦ୍ୟା ଓ ରାୟପୁରରୁ ଚିତ୍ରାଙ୍କନ ବିଦ୍ୟାରେ ତାଲିମ୍ ପାଇ ଯଥେଷ୍ଟ ଅଭିଜ୍ଞତା ଅର୍ଜନ କରି ବରଗଡ଼ ଫେରି ଆସିଥିଲେ । ତା'ପରେ ବରଗଡ଼ ଭିଲେଜ୍ ସ୍କୁଲ୍‌ରେ ସହକାରୀ ଶିକ୍ଷକ ପଦରେ ନିଯୁକ୍ତ ହୋଇ ଚାକିରୀ ଜୀବନ ଆରମ୍ଭ କରିଥିଲେ ।

ହରିହର ମିଶ୍ରଙ୍କ ଶିକ୍ଷାଦାନ ପ୍ରଣାଳୀ ଥିଲା ଅତି ଚିତ୍ତାକର୍ଷକ । ବରଗଡ଼ ସ୍କୁଲର ଅଧ୍ୟାୟୀ ଜୀବନରେ ତତ୍‌କାଳୀନ ସ୍କୁଲ୍ ଇନ୍‌ସପେକ୍ଟର ଭକ୍ତକବି ମଧୁସୂଦନ ରାଓ ବରଗଡ଼ ସ୍କୁଲ ପରିଦର୍ଶନ ଅବସରରେ ପଣ୍ଡିତ ମିଶ୍ରଙ୍କ ଅଧ୍ୟାପନା ଶୈଳୀରେ ସମ୍ମୋହିତ ହୋଇ ତାଙ୍କୁ ଓଡ଼ିଶାର ଜଣେ ଆଦର୍ଶ ଶିକ୍ଷକ ରୂପେ ଅଭିହିତ କରିଥିଲେ । ହରିହର ମିଶ୍ର ବରଗଡ଼ ବ୍ୟତୀତ ରମ୍ପେଲା, ଟାମ୍ପରସରା ଭିଲେଜ୍ ସ୍କୁଲରେ ଶିକ୍ଷକତା କରି ଶେଷରେ ରେମଣ୍ଡା ମିଡ଼ିଲ୍ ଭର୍ଣ୍ଣାକୁଲର ସ୍କୁଲର୍ ହେଡ୍‌ମାଷ୍ଟର ରୂପେ ୧୯୨୫ ମସିହାରେ ଅବସର ଗ୍ରହଣ କରିଥିଲେ । ଅବସର ନେବାପରେ କବି ତାଳଶ୍ରୀଗିଡ଼ାରେ ଜୀବନର ଅବଶିଷ୍ଟ କାଳ ଅର୍ଥାତ୍ ଶେଷ ୨୮ ବର୍ଷ ଜୀବନଯାପନ କରି ୧୯୫୩ ଖ୍ରୀ: ବୈଶାଖ କୃଷ୍ଣ ଚତୁର୍ଦ୍ଦଶୀ ତିଥିରେ ୮୪ ବର୍ଷ ବୟସରେ ଇହଲୀଳା ସମ୍ବରଣ କରିଥିଲେ । କାବ୍ୟ ରଚନା, ଗୋ ସେବା, କୃଷିକର୍ମ, ଉଦ୍ୟାନର ଯତ୍ନ, ଆୟୁର୍ବେଦୀୟ ଚିକିତ୍ସା, ଦୁଃଖୀଦରିଦ୍ରଙ୍କର ସେବା, ସମାଜସେବାରେ କାଳଯାପନ କରି ସର୍ବଦା କର୍ମରତ ଏବଂ ଆନନ୍ଦ ବିଭୋର ହୋଇ ବଞ୍ଚିଥିଲେ । ସହଜେ ତ କଳ୍ପନା ବିଳାସୀ ଭାବପ୍ରବଣ ବ୍ୟକ୍ତିଥିଲେ । ତାଙ୍କର ବ୍ୟବହାର ଥିଲା ଅମାୟିକ । ମାତ୍ର ସେ ଅନ୍ୟାୟ ଓ ଅନାଚାର ସହିତ ସାଲିସ୍ କରୁନଥିଲେ । ମର୍ଯ୍ୟାଦାବନ୍ତ ପୁରୁଷ ଥିଲେ । ନିର୍ଭୀକ ଓ ସତ୍ୟନିଷ୍ଠ ଥିଲେ । ବହୁମୁଖୀ ତାଙ୍କର ପ୍ରତିଭା ପରିଣତ ବୟସରେ ରବୀନ୍ଦ୍ରନାଥ ଟେଗୋର, ଫକୀର ମୋହନ ସେନାପତି ଯେପରି ଚିତ୍ରାଙ୍କନକୁ ଭାବପ୍ରକାଶର ମାଧ୍ୟମ ରୂପେ ଗ୍ରହଣ କରିଥିଲେ ତଦ୍ରୂପ ପଣ୍ଡିତ ମିଶ୍ର ଠିକ୍ ସେହିପରି ଚିତ୍ରାଙ୍କନ ଓ ମୂର୍ତ୍ତିଗଠନ କଳାର ସାଧନ ଆରମ୍ଭ କରିଥିଲେ । ସାଧନାରେ ସିଦ୍ଧିର ଏକ ଉଚ୍ଚତର ସୋପାନକୁ ଉଠିଥିଲେ ।

ପଣ୍ଡିତ ହରିହର ମିଶ୍ର ଥିଲେ ଜଣେ ମହାନ୍ ସଂସ୍କୃତଜ୍ଞ । ସଂସ୍କୃତ କାବ୍ୟଶାସ୍ତ୍ରରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ସଂସ୍କୃତ ସାହିତ୍ୟକୁ ଗଭୀର ତଥା ଉତ୍ତମ ରୂପେ ଅଧ୍ୟୟନ କରିଥିବା ତାଙ୍କ ଭଳି ଜଣେ ନିଷ୍ଠାପର ଭକ୍ତ ଓ ଉପାସକ ସମାଜରେ କ୍ୱଚିତ୍ ଦେଖାଯାନ୍ତି । ଓଡ଼ିଆ ସାହିତ୍ୟକୁ ତାଙ୍କର ଦାନ ଅତୁଳନୀୟ । ତାଙ୍କ ଜୀବଦ୍ଦଶାରେ ତାଙ୍କ ରଚିତ ଦୁଇଟି କବିତା ପୁସ୍ତକ – (୧) ''ଅମର ପ୍ରାର୍ଥନା''–୧୯୨୭, (୨) ''ରାଘବ ବିଜୟ''– ୧୯୨୯ ପ୍ରକାଶିତ । ସେହିଭଳି ମୃତ୍ୟୁପରେ କେବଳ ଖଣ୍ଡେ ମାତ୍ର କାବ୍ୟ ''ଗୋଚାର ସିଦ୍ଧି'' ୧୯୭୨ ମସିହାରେ ପ୍ରକାଶିତ ହୋଇ ଲୋକଲୋଚନକୁ ଆସିଥିଲା । ଏହା ବାହାରେ ଅପ୍ରକାଶିତ ପାଣ୍ଡୁଲିପି ଗୁଡ଼ିକ ମଧ୍ୟରେ ରହିଛି: (୧) କବିତା କଦମ୍ବ, (୨) କିଶୋର ବିଚ୍ଛେଦ, (୩) କିଶୋରୀ ବିଚ୍ଛେଦ, (୪) ସୁଭଦ୍ରା ରୋଦନ, (୫) ପତିବ୍ରତା ଧର୍ମ, (୬) ସଙ୍ଗୀତ କୁମୁଦାକର, (୭) ପତିସେବା ବ୍ରତମାଳା, (୮) ରସିକ ବିଳାସ ତରଙ୍ଗିଣୀ

ଏବଂ ( ୯ ) ମଦନ ତନ୍ତସାର । ଏହାପରେ ତାଙ୍କର ଆଉ ଗୋଟିଏ ଦୀର୍ଘ କାବ୍ୟ ହେଉଛି ''ଜରାସନ୍ଧ ବଧ'' । ''ଅମର ପ୍ରାର୍ଥନା'' ପୁସ୍ତକ ଖଣ୍ଡିକ ପ୍ରକାଶ ପାଇବା ପରେ ତାହାର ଗୋଟିଏ ପୁସ୍ତକ ସମୀକ୍ଷା ତତ୍‌କାଳୀନ ସାପ୍ତାହିକ ସମ୍ବାଦପତ୍ର ''ଉତ୍କଳ ସେବକ''ରେ ପ୍ରକାଶିତ ହୋଇଥିଲା । ସମୀକ୍ଷାଟି ଏହିପରି :

> ''ଆମ୍ଭେମାନେ ଶ୍ରୀ ନିତ୍ୟାନନ୍ଦ ବହିଦାର ସମ୍ବଲପୁରଙ୍କ ''ଭ୍ରାତୃଭକ୍ତି'', ଶ୍ରୀ ହରିହର ମିଶ୍ରଶର୍ମା ତାଳଶ୍ରୀଗିଡ଼ାଙ୍କ ''ଅମର ପ୍ରାର୍ଥନା'' ଏବଂ ଶ୍ରୀ ରାଘବ ମିଶ୍ର ବରପାଲିଙ୍କ ''କୃଷ୍ଣଭକ୍ତି ରସାମୃତ'' ଉପହାର ପାଇ ପ୍ରାପ୍ତି ସ୍ୱୀକାର କରୁଅଛୁଁ । ଅମର ପ୍ରାର୍ଥନା–ଏହି ପୁସ୍ତକଟି ମଧ୍ୟ ପଦ୍ୟ ଏବଂ ୨୮ ପୃଷ୍ଠା ବିଶିଷ୍ଟ । କଟକ ଉତ୍କଳ ସାହିତ୍ୟ ପ୍ରେସ୍‌ରେ ମୁଦ୍ରିତ, ମୂଲ୍ୟ .ଟ.୦ [illegible] । [illegible] ଙ୍କେଶ୍ୱର ମିଶ୍ରଙ୍କୁ ଉତ୍ସର୍ଗୀକୃତ ହୋଇଅଛି । ଗ୍ରନ୍ଥକାର ଏହି ପୁସ୍ତକରେ ରାବଣର ଅତ୍ୟାଚାରରେ ଦେବକୁଳ ଜର୍ଜରିତ ହୋଇ ଭଗବାନଙ୍କ ଶରଣ ଗ୍ରହଣ କରିବା ଉପାଖ୍ୟାନ ବର୍ଣ୍ଣନା କରିଅଛନ୍ତି । ପଣ୍ଡିତ ହରିହର ମିଶ୍ର ବହୁଦିନ ଧରି ରେମଣ୍ଡା ମି. ଭ. ସ୍କୁଲ୍‌ର ହେଡ୍‌ମାଷ୍ଟର୍ ଥିଲେ, ସାରା ଜୀବନ ସେ ସାହିତ୍ୟଚର୍ଚ୍ଚା କରି ଆସୁଅଛନ୍ତି । ଏପରି ଅବସ୍ଥାରେ ତାହାଙ୍କର ଲେଖାଗୁଡ଼ିକ ଶୁଦ୍ଧ ଏବଂ ସଂଯତ ହେବା ସ୍ୱାଭାବିକ । ଏହି ଅମର ପ୍ରାର୍ଥନାରେ ଗ୍ରନ୍ଥକାର କିନ୍ତୁ କେତେକ ଭାଷାରେ ନୁହେ ଭାବର ମଧ୍ୟ ବୈଚିତ୍ର ଏବଂ ନୂତନତ୍ୱ ଦେଖାଇ ପାରିଛନ୍ତି ।
>
> (ଉତ୍କଳ ସେବକ–୧୬/୩୪ : ତା. ୧୫.୮.୧୯୨୯)

'ଗୋଚାର ସିଦ୍ଧି' କାବ୍ୟକୁ ଶିବପ୍ରସାଦ ଦାଶ, କବି ହରିହର ମିଶ୍ରଙ୍କ ଶ୍ରେଷ୍ଠ କାବ୍ୟକୃତି ବୋଲି ମତ ଦେଇଛନ୍ତି । ସେହିପରି ଅଧ୍ୟାପକ ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ) 'ଗୋଚାର ସିଦ୍ଧି' କାବ୍ୟର ଉଲ୍ଲସିତ ପ୍ରଶଂସା କରିଅଛନ୍ତି । ''କାବ୍ୟଟି ସର୍ବତୋଭାବେ କବିଙ୍କର ବହୁଶାସ୍ତ୍ରଦର୍ଶିତାର ସ୍ୱାକ୍ଷର ବହନ କରିଥିବା ଯୋଗୁଁ ଏହା ତାହାଙ୍କର ପରିଣତ ବୟସର କୃତି ମନେହୁଏ । କବିଙ୍କୁ ତିରିଶ ବର୍ଷ ବୟସ ହେବାପରେ ସେ ଏହା ଲେଖିଥିବା ଅନୁମେୟ । କାବ୍ୟଟିର ରଚନା କାଳ ଏଣୁ ବିଂଶ ଶତାବ୍ଦୀ । ହରିହର, କବି ରାଧାନାଥଙ୍କ ଜନ୍ମର ମାତ୍ର କୋଡ଼ିଏ ବର୍ଷ ପରେ ଜନ୍ମଗ୍ରହଣ କରିଥିଲେ ଓ ଗଙ୍ଗାଧରଙ୍କ ଠାରୁ ମଧ୍ୟ ବୟଃ-କନିଷ୍ଠ ଥିଲେ । ସେ ରାଧାନାଥ ଓ ଗଙ୍ଗାଧରଙ୍କ ପ୍ରାୟ ସମକାଳୀନ ହେଲେହେଁ, ସେମାନଙ୍କ ସାହିତ୍ୟ ସାଧନା ପରେ କାବ୍ୟ ରଚନା କରିବାରେ

ମନୋନିବେଶ କରିଥିବା ଅନୁମେୟ। ଏହି ଦୃଷ୍ଟିରୁ ଓଡ଼ିଶାର ପଶ୍ଚିମାଞ୍ଚଳର ଏହି ବୟୋଜ୍ୟେଷ୍ଠ କବିଙ୍କ ସାହିତ୍ୟକୃତିର ଐତିହାସିକ ମୂଲ୍ୟ ଅନସ୍ୱୀକାର୍ଯ୍ୟ। ହୁଏତ ଏହିପରି ବହୁ କବି ପଶ୍ଚିମ ଓଡ଼ିଶାର ନିଭୃତ ଅଞ୍ଚଳରେ ଓଡ଼ିଆରେ ବହୁମୂଲ୍ୟ ଗ୍ରନ୍ଥ ରଚନା କରି ଆମର ଅନାଦର ଫଳରେ ବଣଫୁଲ ପରି ବଣରେ ହିଁ ମଉଳି ଯାଇଛନ୍ତି। ଆଜି ତାହାର ପୁନରୁଦ୍ଧାର ପ୍ରଚେଷ୍ଟା ଏକାନ୍ତ କାମ୍ୟ ମନେ ହୁଏ।''

(ଗୋଚାରଚାର ସିଦ୍ଧି କାବ୍ୟ–୧୯୭୨.ପୃ,୨)।

କବି ହରିହର ମିଶ୍ରଙ୍କ ଚରିତ ''ଜରାସନ୍ଧ ବଧ'' କାବ୍ୟଖଣ୍ଡିକ ଓଡ଼ିଆ ସାହିତ୍ୟ ଭଣ୍ଡାରର ଗୋଟିଏ ମୂଲ୍ୟବାନ୍ ରତ୍ନରୂପେ ବିବେଚିତ। କବି ହରିହର ମିଶ୍ର ଯୌବନାବସ୍ଥାରେ ଅନେକ ସାହିତ୍ୟିକ ରଚନା ସୃଷ୍ଟି କରି ସେ ନିଜର ସାହିତ୍ୟିକ ପ୍ରତିଭାର ସାମାନ୍ୟ ପରିଚୟ ଦେଇଥିଲେ। ଜୀବନର ପରିଣତ ବୟସରେ 'ଜରାସନ୍ଧବଧ' ଭଳି ଖଣ୍ଡିଏ ମହାକାବ୍ୟ ରଚନା କରି ଓଡ଼ିଆ ସାହିତ୍ୟର ଇତିହାସରେ ଗୋଟିଏ ଅମର କୀର୍ତ୍ତି ରଖିଗଲେ; କିନ୍ତୁ ଦୁଃଖର କଥା, କବିଙ୍କ ଜୀବଦ୍ଦଶାରେ ଏହି କାବ୍ୟ ଖଣ୍ଡିକ ପ୍ରକାଶିତ ହୋଇପାରିଲାନାହିଁ। ସମଗ୍ର କାବ୍ୟ ଖଣ୍ଡିକ ବିଶୁଦ୍ଧ ତଥା ଅମିତ୍ରାକ୍ଷର ଛନ୍ଦରେ ଲିଖିତ ହୋଇଛି। କାବ୍ୟର ନାୟକ 'ଜରାସନ୍ଧ'ଙ୍କ ନାମରେ ଏହି କାବ୍ୟ ଖଣ୍ଡିତ ନାମିତ କରାଯାଇଛି। କାବ୍ୟର ସର୍ଗ ସଂଖ୍ୟା ପନ୍ଦର। କବି ହରିହର କାବ୍ୟର ପ୍ରଥମ ସର୍ଗରେ ପାରମ୍ପରିକ ରୀତିରେ ମଙ୍ଗଳାଚରଣ କରିଛନ୍ତି। ବିଦ୍ୟାର ଅଧିଷ୍ଠାତ୍ରୀ ଦେବୀ ସରସ୍ୱତୀଙ୍କ ନିକଟରେ ନିଜର ପ୍ରାର୍ଥନା ଜଣାଇଛନ୍ତି :

''ମାଗୋ ବୀଣାପାଣି! ତବ ବୀଣାର ଝଙ୍କାର,
ମୋହଇ ଜଗତ ଯେହ୍ନେ ଦିବ୍ୟଛନ୍ଦେ ଛନ୍ଦି
ସୁସଙ୍ଗୀତ ସୁଧାଧାରା ଢାଳି ଅବିରତ
ସେ ଭାବେ ସାଜ ମା ସାଜ ସରୋଜ ବାସିନି!
ତୋ'ପଦ ପଙ୍କଜେ ଭିକ୍ଷା ଏତିକି ବରଦେ।''

କବିବର ରାଧାନାଥ ଓଡ଼ିଶାରେ ସର୍ବପ୍ରଥମ ଅମିତ୍ରାକ୍ଷର ଛନ୍ଦରେ କାବ୍ୟ ରଚନା ଆରମ୍ଭ କରିଥିଲେ । କବି ହରିହର ମିଶ୍ର ମଧ୍ୟ ''ଜରାସନ୍ଧ ବଧ'' କାବ୍ୟକୁ ପୂର୍ଣ୍ଣଭାବେ ଅମିତ୍ରାକ୍ଷର ଛନ୍ଦରେ ରଚନା କରିଛନ୍ତି । ସେ ରୀତିଯୁଗୀୟ କାବ୍ୟଶୈଳୀକୁ ପରିତ୍ୟାଗ କରିପାରି ନାହାନ୍ତି। କବିଙ୍କ ''ଗୋଚାରସିଦ୍ଧି କାବ୍ୟ''ରେ ଏହି ଉଭୟ ରୀତିକାବ୍ୟ ଓ ନବ୍ୟ କାବ୍ୟ ଶୈଳୀର ଅପୂର୍ବ ମିଳନ ଦେଖିବାକୁ ମିଳିଥାଏ । ଅତଏବ କବିଙ୍କ ଉଭୟ 'ଗୋଚାର ସିଦ୍ଧି କାବ୍ୟ' ଓ 'ଜରାସନ୍ଧ ବଧ' ଓଡ଼ିଆ କାବ୍ୟୋଦ୍ୟାନରେ ସୁରଭିତ, ସୁବାସିତ ଦୁଇଟି ପୁଷ୍ପକୁଂଜ ସଦୃଶ।

(ଢ଼)    ଜରାସନ୍ଧ ବଧ

କବି ଓ ପଣ୍ଡିତ ହରିହର ମିଶ୍ର (୧୮୬୯-୧୯୫୩) ଓଡ଼ିଆ ସାହିତ୍ୟରେ ଗୋଟାଏ ବିରାଟ ପ୍ରତିଭା । ସେ ଥିଲେ ଜଣେ ପରମ ଅମାୟିକ ବ୍ୟକ୍ତି । ସେ ସରଳ ତଥା ନିରାଡ଼ମ୍ବର ଭାବେ ଜୀବନଯାପନ କରିଥିଲେ । କବି ହରିହରଙ୍କ ଦ୍ୱିତୀୟ ପୁତ୍ର ହେଉଛନ୍ତି ପଣ୍ଡିତ ଶଶିଭୂଷଣ ମିଶ୍ର । ପଶ୍ଚିମ ଓଡ଼ିଶାର ଲୋକେ ଯାହାଙ୍କୁ ସମ୍ବୋଧନରେ ''ବୁଢ଼ାମାଷ୍ଟ୍ରେ'' ବୋଲି ସମ୍ମାନ ପ୍ରଦର୍ଶନ କରୁଥିଲେ । ଶଶିଭୂଷଣ ମିଶ୍ରଙ୍କ ଜୀବନ ମଧ୍ୟ ବହୁ ଝଡ଼ଝଞ୍ଜା ପୂର୍ଣ୍ଣଥିଲା । ସେ ମଧ୍ୟ ତାଙ୍କର ପିତା ହରିହର ମିଶ୍ରଙ୍କ ଭଳି ଜଣେ ଉଚ୍ଚକୋଟୀର ଲେଖକ ତଥା ପ୍ରତିଭାବାନ୍ ସାହିତ୍ୟିକ ଥିଲେ । ପିତାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଏବଂ ଆଜୀବନ ସତ୍ୟ ଓ ଧର୍ମପଥରେ ରହି ଶଶିଭୂଷଣ ନିଜର ସାରସ୍ୱତ ସାଧନା କରିଥିଲେ । ଓଡ଼ିଆ ସାହିତ୍ୟର ଉନ୍ନତି ସକାଶେ ଉଭୟ ପିତାପୁତ୍ରଙ୍କର ବଳିଷ୍ଠ ତଥା ଯଥେଷ୍ଟ ଅବଦାନ ରହିଛି; ଏଥିରେ ସନ୍ଦେହ ନାହିଁ ।

ଶ୍ରୀ ଦୀପ୍ତିରଞ୍ଜନ ଶେଠ

(ସମ୍ପାଦକ)

# ପ୍ରଥମ ସର୍ଗ

(ରାଗ- ଅମିତ୍ରାକ୍ଷର ଛନ୍ଦ)

କହ ଗୋ ଭାରତି ମାତଃ ! ଚାରୁ ଭାରତୀରେ
ଜନ୍ମକର୍ମ ସହ ଜରାସନ୍ଧ ବଧ-ବାର୍ତ୍ତା
ମଣ୍ଡଇ ଯତନେ ଯେହ୍ନେ ମଘବାମହିଷୀ
ବିବିଧ ରତନେ ତନୁ, ବରେଣ୍ୟା ରମାର
ହୃଦହରା ମଧୁସ୍ୱରେ ମୃଦୁଗୀରେ ଭାଷି,
ତେହ୍ନେ ତାକୁ ମଣ୍ଡି ଭାବ ରସ ଅଳଂକାରେ
ପୁନର୍ଲହବର୍ଣ୍ଣ କର୍ଣ୍ଣ ରସାୟନ ଗଢ଼ି :
ମାଗୋ ବୀଣାପାଣି ! ତବ ବୀଣାର ଝଙ୍କାର
ମୋହଇ ଜଗତ ଯେହ୍ନେ ଦିବ୍ୟଛନ୍ଦେ ଛନ୍ଦି
ସୁସଙ୍ଗୀତ ସୁଧାଧାରା ଢାଳି ଅବିରତ
ସେ ଭାବେ ସାଜ ମା ସଜ ସରୋଜବାସିନି !
ତୋ' ପଦପଙ୍କଜେ ଭିକ୍ଷା ଏତିକି ବରଦେ !
ମଗଧାଧିପତି ଶୌର୍ଯ୍ୟେ ବୀର୍ଯ୍ୟେ ଯେ ଗରିଷ୍ଠ
ଭାରତେ ଦୁର୍ଭାର ମଲ୍ଲ ଅସ୍ତ୍ରେ ଶସ୍ତ୍ରେ ଗୁରୁ
ବୀରତ୍ୱ ଦୁର୍ବାର ବଶୁ ମଣ୍ଡିତ ପ୍ରଗଣ୍ଡ
ନୃପତି କାନନଧ୍ୱଂସୀ ଘୋର ଦାବାନଳ
ପ୍ରଚଣ୍ଡ କେଶରୀ ସମ ଚଣ୍ଡ ଯା ସ୍ୱଭାବ
ନ ଭଜେ ବଜ୍ରାସ୍ତ୍ରେ ଯାର ଦୃଢବପୁଃ ଭିନ୍ନ ।
ମାୟାପଟଳ ନାଟକ ନର୍ତ୍ତନ କୁଶଳ
ବୈନତେୟ ପୃଷ୍ଠପୀଠ କମଳାବିଳାସ
ଜନାର୍ଦ୍ଦନ କବଚି ସ୍ୱଗାତ୍ର ଶାନ୍ତିମନ୍ତେ
ହେଲେହେଁ ବିଜୟୀ ବିଶ୍ୱେ ପରାଜୟବ୍ୟାଜେ
ଚହଲେ ସଦ୍ୟ କଲେ ଯାର ଭୀମପରାକ୍ରମ
ପୁଣି ବନ୍ଧୁକାର୍ଯ୍ୟ ସ୍ମରି ଅମର୍ଷ ସମ୍ବରି
ଯେହ୍ନେ କୁମ୍ଭକାର ଉହା ବାହ୍ୟେ ଆର୍ଦ୍ର ଲେପ

ଅଷ୍ଟାଦଶବାରେ ହାରି ଯା ସଙ୍ଗେ ସଙ୍ଗରେ
ଲୁକ୍କାୟିତ ଦ୍ୱାରାବତୀ ପୁରେ ବାରି ମଧ୍ୟେ
ପ୍ରଥିତା ମଥୁରା ବ୍ୟଥା ବିଲୋକି ସବଂଶେ;
ତେବେ କି କୌଶଳେ ବଳେ ଯଦୁବଂଶନାଥ
ଧ୍ୱଂସିଲେ ସେ କ୍ରୂରକର୍ମା ଗିରିବ୍ରଜନାଥେ
ମହାଭଇରବୀ ଶକ୍ତି ଶାକ୍ତ-ଶିରୋମଣି,
ଶୁଣିବାକୁ କ୍ଷିପ୍ତବକ୍ଷଃ ଉକ୍ଷିପ୍ତ-ଶ୍ରବଣ
କର ଦାସେ କୃପା କୃପାମୟି: ତବ ବିନା
ଆର କାର ଶକ୍ୟ ଦେଖୁନାହିଁ ଏ ଜଗତେ;
ଶୁଣବତ୍ସ ! ଇଚ୍ଛୁ ଯାହା କହଇଁ ତୋ' ଠାଇଁ
ଜନ୍ମକର୍ମ ସହ ଜରାସନ୍ଧ ବଧବାର୍ତ୍ତା
ଯେଣୁ ତୁଁ ମୋ ଭକ୍ତ ମୁଁ ସେ ଭକତବତ୍ସଳା
ଏକଦା ତ୍ରିଦଶରାଜ୍ୟେ ରାଜୁଁ ଋତୁରାଜ
ନବବଳ ନବଶୋଭା ଗ୍ରହେ ଚରାଚର
ନବଯୌବନ ବିକାଶେ ଦେହୀଦେହ ଯଥା
ସୁଖଦା ଦିବା ଯାମିନୀ ଦେବବାଞ୍ଛା ମତେ
ପ୍ରକାଶନ୍ତି ଯହିଁ ନିଜେ ରବିଶଶୀ ବସି
ଏକେ ସୁଖ ଶାନ୍ତି, କାନ୍ତିମୟ ସୁରଲୋକ
ତହିଁ ପୁଣି କାନ୍ତ ବସନ୍ତର ଅଭ୍ୟୁଦୟ
ତୁଳନା ଦେବାକୁ ତାର ବିଶ୍ୱେ କାହିଁ ସ୍ଥାନ
ଆଦିତ୍ୟ ସହ ଖଦ୍ୟୋତ ତୁଳେ କିରେ କେହି ?
ଗନ୍ଧର୍ବ କିନ୍ନର ସିଦ୍ଧ ସାଧ୍ୟ ବିଦ୍ୟାଧର
ଗୁହ୍ୟକ ଚାରବା ଅପସରିଃ ଯକ୍ଷ ରକ୍ଷ
ଖଗ ମୃଗ ନଗୋରଗ ବନ ଉପବନ
ବସନ୍ତ ସୌନ୍ଦର୍ଯ୍ୟମଦେ ମତ୍ତ ଅବିରତ
ବସନ୍ତଜ ପୁଷ୍ପରସେ ମତ୍ତ ଯେହ୍ନେ ଅଳି,
ହରଷ ଉତ୍ସାହ ଭରି ସ୍ୱର୍ଗବାସୀ ପ୍ରାଣେ
ମୃଦୁଳ ହିଲ୍ଲୋଳେ ସୁଖସେବ୍ୟ ଭାବେ ବହି
ମନ୍ଦ ଗନ୍ଧବହ ହରିଚନ୍ଦନ ସୌରଭ

ନନ୍ଦନକାନନ୍ରୁ ହରି ଆମୋଦେ ହରିତ
ଯେ ଚନ୍ଦନ ଘୃଷଟ୍‌ବସ ସୁପ୍ରପାନ ପାନେ
ନିତ୍ୟ ଯଉବନ ଲଭେ ସ୍ୱର୍ଲ୍ଲୋକେ ତ୍ରିଦଶ
ପୁଷ୍ଟିମନ୍ତ କାନ୍ତିମନ୍ତ ମୃତ୍ୟୁଞ୍ଜୟ ଭଳେ
ନିରାମୟ ନିରାକୁଳ ରହେ ଅହରହଃ;
ପୁଷ୍ପିତ ପାରିଜାତକ ବହି ଶୁଭ୍ରକାନ୍ତି
ତ୍ରିଦିବ-ବିଭବ ଯେବା ଇନ୍ଦ୍ର ଇନ୍ଦ୍ରାଣୀର
ପର୍ବ-ଶର୍ବରୀଣ ଚୟ ଏକତ୍ରସଂକୁଳ
ପରାଏ ଅତୁଳ ଶୋଭା ବହେ ସେ ପାଦପ
ଅମରାବତୀ ପୁରୀକି ତେଜେ ଉଜ୍ଜ୍ୱଳଇ
ସୌରଭେ ଅମରପ୍ରାଣ ଲସାଏ ଉଲ୍ଲାସେ
ରତ୍ନବର୍ଣ୍ଣେ ଗଠିତ ତା' ପିଣ୍ଡ କାଣ୍ଡ ଦଳ
ଶୋଭା ସୁବାସ ସମ୍ଭଳ ବିଶ୍ୱେ ଏକତରୁ
ମନ୍ଦାର, ଯା ମନ୍ଦା ବିନିର୍ମିତ ମରକତେ
ମନାସନ୍ତି ସୁମନ ଯା ବୃନ୍ଦାରକ-ବୃନ୍ଦ
ପୁଷ୍ପିତ ଏକାଳେ ଚାହିଁ ବାଳରବିଦ୍ୟୁତି
ଇଷ୍ଟଗନ୍ଧ ପୂରେ ତାର ତ୍ରିଦଶ ସଦନେ;
ସନ୍ତାନବୃକ୍ଷର ଶୋଭା ପ୍ରଭା ଅକଳିତ
ବିସ୍ତାରେ ଯେ ଇଚ୍ଛାମତେ ହ୍ରସ୍ୱ ଦୀର୍ଘବପୁଃ
ଜୀବଜଗତ ସୃଷ୍ଟିର ଉପାଦାନ ସ୍ଥାନ
ଇନ୍ଦିବରନିଭ ପୁଷ୍ପେ ଏକାଳେ ଶୋଭିତ;
କଳ୍ପ କଳ୍ପ ତପସ୍ୟାରେ ମିଳେ ଯା' ଦର୍ଶନ
କଳ୍ପତରୁ ମୁକୁଳିତ ମହା ସୁଷମାରେ
ଇନ୍ଦ୍ରନୀଳ-ଦ୍ୟୁତି ପତ୍ର ବିଦ୍ରୁମାଭ ନୀଳ
ପୁଷ୍ପରାଗ ରାଗେ ଦୀପ୍ତ ପତ୍ରଶିରାରାଶି
ହୀରକ ମାଣିକ୍ୟରାଗେ ଫୁଲଫଳ ଯୁତ
କ୍ଷଣେ କ୍ଷଣେ ଆନରୂପ ବହେ ଦେବତରୁ,
ପ୍ରବାଳ ଆବାଳେ ଯାର ବ୍ରଧ୍ନବନ୍ଧ ମାନ
ଉଦ୍ଦାଳକ ଦେବାଳକ ନାମେ ବେନିଦ୍ରୁମେ

ଫୁଟିଛି ନିରାଟେ ସ୍ୱର୍ଣ୍ଣ ରୌପ୍ୟ ସ୍ଥାଳୀ ଭଳି
ସୁସମ-କୁସୁମ, ଚାରୁଗନ୍ଧେ ମୋହେ ମନ,
ବିକାଶିଛି ମଧୁକୋଷୀ ଦିଶୁଛି ମଧୁର
ମଧୁର ଭଣ୍ଡାର ଯେବା ସୁବାସ-ଆବାସ
ଯାର ମୂଳେ ବସି ସଚୀ ସହ ଆଖଣ୍ଡଳ
କରନ୍ତି ତା ମଧୁପାନ ରତନ ଚଷକେ,
ଦେବବନ୍ଦ୍ୟା ହବିର୍ଗନ୍ଧା ବ୍ରତତୀ-ବରିଷା
ପୁଷ୍ପିତା ବସନ୍ତ ଚାହିଁ ଅଭ୍ର ଶୁଭ୍ରାକାରେ
ମୁକ୍ତାଫଳ ତୁଳ ତହୁଁ କଳିକା ନିକରେ
ପ୍ରସରଇ ନିତ୍ୟ ମନୋହର ହବିର୍ଗନ୍ଧ
ମନ୍ଦ୍ୟ ବନ୍ଧା ତାର ଶୋଣମାଣିକ୍ୟ ରତନେ
ଯତନେ ରକ୍ଷିତ ବୈଡୂର୍ଯ୍ୟର ବାଡ଼ବକ୍ଷେ;
ପୟଃସ୍ରୋତା ନାମେ ଲତା କୁସୁମେ ଶୋଭିତା
ଦୁଗ୍ଧଫେନ ନିଭକାନ୍ତି ମୁଗ୍ଧ କରେ ଚିତ୍ତ
କ୍ଷରଇ ସୁପେୟ ପୟଃ ତହୁଁ ନିରନ୍ତର
ଅନ୍ତର ତୋଷନ୍ତି ନେଇ ପିଇ ସଚୀକାନ୍ତ;
ଗ୍ରହି ସହକାର ତରୁ କୁସୁମମଞ୍ଜରୀ
ଆନତ ମସ୍ତକ ଯଥା ବିଦ୍ୱଷ-ପୁରୁଷ
କୋକିଳକୂଜଇ ହର୍ଷେ ତରୁଡାଳେ ବସି
ମାକନ୍ଦରି ମକରନ୍ଦ ପାନେ ମଧୁତାନେ
ସପଞ୍ଚମ ରାଗେ ବଧୂସଙ୍ଗତେ ସରାଗେ
ଚମକନ୍ତି ନାଦଶୁଣି ବିରହେ ବିରହୀ
ଉନ୍ମାଦନ ନାମେ ପୁଷ୍ପଶର ଯେ ସ୍ମରର
କେ ବର୍ଣ୍ଣିବ ଶୋଭା ନିଜେ ସ୍ମର ମୁହ୍ୟମାନ
ସ୍ୱର୍ଗୀୟ ଭ୍ରମର ତାର ଚୁମ୍ବେ ପୁଷ୍ପମଧୁ
ମର୍ତ୍ତ୍ୟ ଭ୍ରମରର ତହିଁ ନାହିଁ ଅଧିକାର
ଗନ୍ଧ ପ୍ରସରେ ତ୍ରିଦିବେ ମନୋ ମୁଗ୍ଧକର
କ୍ରୀଡ଼ନ୍ତି ସେ ତରୁକାଣ୍ଡେ ରତି ରତିପତି;
ନିତ୍ୟଛାୟା ଛଦେ ପୂର୍ଣ୍ଣ ସୁରଦାରୁ ତରୁ

ବିକୁଞ୍ଚିତ କିସଳୟ ବହିଛି ବସନ୍ତେ
ଅମର କୁସୁମଲତା ଢଡ଼େ ସ୍କନ୍ଧଦେଶେ
କୁସୁମିତ ହୋଇ ବାସ ପ୍ରସାରେ ଚୌଦିଗେ
ତାର ତଳେ ବସି ସଚୀ ତ୍ରିଦିବସୁନ୍ଦରୀ
ପଶାଖେଳେ ରଞ୍ଜୁଥାନ୍ତି ତ୍ରିଦଶେଶ ଚିତ୍ତ;
ପ୍ରଫୁଲ୍ଲ ସମ୍ପାକ ଚମ୍ପା ଶମ୍ପାକମ୍ପକରୀ
ଗନ୍ଧର୍ବ ଅଙ୍ଗନାଅଙ୍ଗେ ନୋହୁଁ ସମତୁଲ
କେଶପାଶେ ବନ୍ଧ ତେଜି ବର୍ଣ୍ଣର ଗରିମା
ଆବର କର୍ଣ୍ଣ ଅଙ୍ଗୁଳି ଛଟା ଦରଶନେ;
ଉଭାରି କ୍ରକଚପତ୍ର ବିକଚ କେତକୀ
ବିରହୀ-ପାତକୀ ବକ୍ଷଃ ବିଦାରିବା ବାଦେ
ମାତ୍ର ନ ପାଇ ବିରହୀ ହାରି ଅବଶେଷେ
ସାଧିସେ କରଇ ନାକନାରୀ ଶୀର୍ଷଆଶ୍ରା;
ନିରେଖି ନଖର ଅପସରୀ କରେ ପଦେ
ଭୟେ ଅପସରି ନବମାଳିକା–କଳିକା
ହାର ହୋଇ ବନ୍ଦୀ ରହେ ତାଙ୍କରି ଉରସେ
କାମ ପୁଷ୍ପବାଣ ହେବା ବ୍ୟର୍ଥ ତାର ଟାଣ;
ବିକାଶେ ଅଶୋକ ସେ ଯେ ଦୁତି ପୁଷ୍ପଶର
ସ୍ମରଶୋକ ଦେବାଥାଉ ପଶଇ ଶରଣ
କଟି କିଙ୍କିଣୀ ସ୍ୱରୂପେ ସୁରନାରୀଙ୍କର
ଭୟେ ଲୁଚି ପରିଧାନ ବସନର ତଳେ;
ମୁକୁଳିତ ବକୁଳଯେ ମଧୁସେକପାତ୍ର
କାମ ମରକତଛତ୍ର ପ୍ରାୟେ କମନୀୟ
ଯା ଫୁଲେ ମେଖଳା ଗୁନ୍ଥି ବିଳାସୀ ଅମର
ପ୍ରଫୁଲ୍ଲେ ଅମରୀ କରେ କରନ୍ତି ଅର୍ପଣ
ଫୁଟିଛି ପାଟଳି ଅଳିଆଳୀ ଚିତ୍ତହାରୀ ।
କିନ୍ନରୀ ଶ୍ରବଣଶୋଭା ଜିଣିବା ସକାଶେ
ମାତ୍ର ହାରି ଶ୍ରୁତିଯୁଗେ ଲଜ୍ଜାସଂକୁଚିତେ
ମଞ୍ଜୀର ସ୍ୱରୂପେ ରହି ରଞ୍ଜାଇ ପୟର

ସୁକାନ୍ତ ବସନ୍ତେ ତେଣୁ ଲୀଳା ଖେଳା କାଳେ
କିନ୍ନର ସଂଶ୍ରବେ ତାକୁ ପୁଷ୍କରଣି ମଧ୍ୟେ;
ସ୍ଫୁଟ ଛୁରୀଅନା ଦେଖି କେଉଁ ବିଦ୍ୟାଧରୀ
ସଙ୍ଗ ସଖୀ ପ୍ରତି କହେ ଛଳ ଭାବ ରଖି
ସଜନୀ ଲୋ ନାହାନ୍ତି ତ ନାହା ତୋର ସହ
ପ୍ରେମ ବଳାଉରେ କିପାଁ ସେ ପାମର ପୁଷ୍ପେ
ଅନା ନା ଛୁରିକା ବହି ରହିଛି ପଶ୍ଚାତେ
ପରାଣ ଘେନିବ ନିଶ୍ଚେ ଜାଣିଥାଅ ସଖି;
ବିକସ୍ୱର କରବୀର ପୁଷ୍ପ କରେ ବହି
କେହି ବିମ୍ବାଧରୀ ବିଦ୍ୟାଧରୀ ରସେ ଭାଷେ
ଏକାନ୍ତେ କାନ୍ତ ସଙ୍ଗତେ ରହିବାରୁ ରାଣେ
ମଦନ କଦନ ବଶେ ଏ ଭାବେ ରହସ୍ୟେ
ଫୁଲନାମ ବ୍ୟସ୍ତେ ଯାହା ଲିଭିଛି ମୁଁ ତାହା
କିପାଁ ଡର ସ୍ମରଶର ଛାରକୁ ମୋ ଆର
ବୁଝିଭାଷେ ବିଦ୍ୟାଧର ତେଣୁ କି ସୁନ୍ଦରି !
ଏ ଫୁଲେ ଶରଧା ବଳିଅଛି ଏତେ ଭଳି;
ସୁନ୍ଦରଦଶନ କୁନ୍ଦଦଶନା ବୃନ୍ଦର
ସ୍ମିତହାସ କାଳେ ଚାହିଁ କୁନ୍ଦ ଲଜ୍ଜାଭରେ
ଅର୍ଦ୍ଧସ୍ଫୁଟ ରହେ ପୂର୍ଣ୍ଣ ବିକାଶ ନ ଭଜି
ସ୍ୱସମ୍ମାନ ରଖି ଶୁକ୍ଳେ ଆନନ ଲୁଚାଇ,
ମାତ୍ର ହାସ ଦେଖି ମଲ୍ଲୀ ନିର୍ଲ୍ଲଜ ସ୍ୱଭାବେ
ପ୍ରକାଶେ ହସଇ ଆସ୍ୟେ ମଦଗନ୍ଧ ଭରି;
ପୁଷ୍ପିତ ପଲାଶ ଚାହିଁ କେଉଁ ସୁରାଙ୍ଗନା
ଏକାନ୍ତେ ସଙ୍ଗିନୀସଙ୍ଗେ କରଇ ବିତର୍କ
ନାମୁଁ ଜଣାଯାଏ ସଖି : ଏସେ ମାଂସଭୋକ୍ତା
କେତେ ବିରହି ଙ୍କି ମାରି ରକ୍ତାକ୍ତ କଟାରୀ
ବହିଛି ତା ପାଶେ ନ ଯା ବଡ଼ ସେ ନିର୍ଦ୍ଦୟ;
କାମିନୀ ହୃଦହାରିଣୀ କାମିନୀ-ନିକର
ଯାମିନୀରେ ଫୁଟି ବାସ ପ୍ରକଟେ ଉତ୍କଟେ;

ସୁବାସ-କେଶର ବହି ଉଭୟକେଶର
ବିକାଶ ହେବାକୁ ଭରା ସ୍ମରଅପସରେ;
ଏହିରୂପେ କୁରୁବକ ମାଧବୀ ମରୁଆ
ଆଦି ନାନା ଜାତି ବୃକ୍ଷେ; ପୁଷ୍ପିତ, ଅଗଣ୍ୟ
ନାନାବର୍ଣ୍ଣେ, ସିତ ଗୀତ ଲୋହିତ ପାଟଳ
ନୀଳ ଶବଳ ହରିତ ନେତ୍ରାନନ୍ଦକର;
ରୋଳମ୍ବକଦମ୍ବ ଚୁମ୍ବି କୁସୁମ ସଧୀରେ
ଗୁଣ୍ଡୁନାଦେ ମକରନ୍ଦ ପିଅନ୍ତି ଆନନ୍ଦେ
ଯଥା ଚାଟୁପଟୁ ବିଟେ ବଧୂ ବକ୍ତ୍ରୁଁ ମଧୁ
କ୍ଷିପ୍ରମତି ହୋଇ କ୍ଷିପ୍ତ ହୁଅନ୍ତି, ଆକାଶେ
ବସନ୍ତି ସେ ପୁଣି ଅର୍ଦ୍ଧଚୁମ୍ବି ପୁଷ୍ପପରେ;
ଆରୋହି ଜାତୀ-ବୃକ୍ଷର ସ୍କନ୍ଧେ ଏକା ଲତା
ଫୁଲ ଫଳ ଗୁଚ୍ଛେ ଆହା ଦିଶେ କି ମଞ୍ଜୁଳ
କିସେ ଅଳଂକୃତା କାନ୍ତାବାହୁ କାନ୍ତକଣ୍ଠେ;
ସର୍ଜ୍ଜସରଳ ଗୁଗୁଳ ନିର୍ଯ୍ୟାସର ବାସ
ଧୂପସ୍ନେହୀ ଦେବତାଙ୍କ ମାନସ ଉଲ୍ଲାସେ;
ପିଆଳ ମଧୁକ ତିନ୍ଦୁ ବିଲ୍ୱ ଭଲ୍ଲାକେ
ଜମ୍ବୁ ଜମ୍ବିଳ ନାରଙ୍ଗ କରୁଣା କେଶର
କଦଳି କମଳା ଦ୍ରାକ୍ଷା ଡାଳିମ୍ବ ପନସ
ଶୁବାକ ଲାଙ୍ଗଳୀ ଆଦି ନାନା ଫଳବୃକ୍ଷେ
ଶୋଭେ ନନ୍ଦନକାନନ ମହା ସୁଷମାରେ
ଫୁଲ ଫଳ ଭାରେ ଡାଳ କରେ ଭୂମିସ୍ପର୍ଶ
ଯେହ୍ନେ ନତଶିର, ଗୁଣଜ୍ଞାନେ ଜ୍ଞାନୀନର,
ବାୟୁ ମନ୍ଦ ମନ୍ଦ ବହି ସୁଶୀତଳ ଭାବେ
ଫୁଲ ଫଳ ରସ ଗନ୍ଧ ପ୍ରସାରେ ଚୌଦିଗେ
କାବ୍ୟ ଯଥା କବି ଗୁଣ ନାମ ଯଶଃ ସ୍ତୁରେ
ବୃକ୍ଷୁ ଫଳ ଖଣ୍ଡି ଖାଏ କାକ ଶୁକ ପିକ
ଶାରୀ ଶ୍ୟାମା ଆଦି ପକ୍ଷିକୁଳ କେ କଳିବ ?
ନାଦ କରି ମଞ୍ଜୁରୁତେ ମୋହୁଥାନ୍ତି ଚିତ୍ତ

ଗନ୍ଧର୍ବୀ କିନ୍ନରୀ କଣ୍ଠୁ ଶିଖି ସୁରାଗିଣୀ
ଯେହ୍ନେ ନବଗଢ଼ା ନବତାର ଚଢ଼ାବୀଣା
ପକ୍ଷିଣୀ ସଙ୍ଗତେ ଖାଦ୍ୟ କରି ବିନିମୟ,
ମନଃ ସୁଖେ ବିହରନ୍ତି ବୃକ୍ଷୁଁ ବୃକ୍ଷାନ୍ତର;
ଶମ୍ବର କସ୍ତୁରୀମୃଗ ବାହୁଟୀ ଖୁରୁଣ୍ଟୀ
ଶଲ୍ଲକୀ କଣ୍ଟକୀ ବୀରୁ ରୁଲୁ କୃଷ୍ଣସାରେ
ନକୁଳ ଗନ୍ଧମାର୍ଜାର ଚମର ହରିଣ
ଶଶକ ମୂଷିକ କୋଳ ଚିତ୍ରଳ ଗଣ୍ଡାର
ଇତ୍ୟାଦି ଆରଣ୍ୟ ଜୀବ ବିହରନ୍ତି ରଙ୍ଗେ
ଇତସ୍ତତଃ ଇଚ୍ଛାସୁଖେ ନିର୍ଭୟ ମାନସେ;
ନାମୁଁ ସେ ବିଦିତ ଗିରିବରର ସୁଷମା
ସୁରସୁଖ ଦାତାତ୍ରାଣ ଆପଦଭଞ୍ଜନ
ରତ୍ନାଗାର ରତ୍ନକୂଟ ମରକତକାନ୍ତି
କୂଟେ ମାରାଗ ମଣ୍ଡିତ ପ୍ରଭା ଉଚ୍ଛ୍ୱସିତ
ଭୃଗୁ ଶିରପଦେ ହୃଦେ ଶୋଭେ ପଦ୍ମରାଗ
ହୀରା ନୀଳା ପୁଷ୍ପରାଗ ଆଦି ରତ୍ନଚୟ;
ତରୁଲତା ପଶୁ ପକ୍ଷୀ ଜୀବ ଜନ୍ତୁ ଯେତେ
ତତ୍ତୁଲ୍ୟ ଆକାରେ ତହିଁ ନିବସନ୍ତି ହର୍ଷେ
ଭୀତି କିବା, ନାହିଁ ମୃତ୍ୟୁ ଜରାବ୍ୟାଧି ଆଧି
ସତତ ଯୌବନ, ଗାତ୍ର ସୌଷ୍ଟବ ଅନ୍ୱିତ;
ନାହିଁ ଧ୍ୱୁ ବନ୍ଧ୍ୟ ତହିଁ ତରୁଲତା ଗୁଳ୍ମ
କି ବିଚିତ୍ର ତାହା ଅପବର୍ଗ ଦାତା ସ୍ୱର୍ଗେ;
ବିହରନ୍ତି ତହିଁ ସ୍ମରେ ସୁରାଙ୍ଗନା ସଙ୍ଗେ
ସୌନ୍ଦର୍ଯ୍ୟେ ବିମୁଗ୍ଧ ହୋଇ ଭାସି ହର୍ଷରସେ;
ରତ୍ନକୂଟ ଗିରିଦେହୁଂ ବହଇ ନିର୍ଝର
ନାଦ କରି ଝର କାନନ ଝଙ୍କାରି;
ସ୍ୱଚ୍ଛନୀର ବହେ ନିତ୍ୟ ତେଣୁ ତରୁ ତୃଣ
ସୁଧା ସ୍ୱାଦୁ ସୁଶୀଳେ ସଲିଳ ଲଭନ୍ତି,
ଅମାପ ପାପ ସଂତାପ ହାରିଣୀ ସ୍ୱର୍ଗଙ୍ଗା

ମୃଦୁମନ୍ଦ ଭାବେ ବହେ ଗଭୀର-ପ୍ରବାହେ
ବହି ଶୁଭ୍ରବୀଚିମାଳା ମନ୍ଦ ମନ୍ଦ ସ୍ୱନେ
ସୁଧାଧାରା ସମେ ସୁରପୁରେ ସୁରସେବ୍ୟା
ସ୍ୱଚ୍ଛେ ସ୍ଫଟିକାଭ ଜଳ ପାତଳ ଶୀତଳ
ଭାସମାନ ଝସରାଶି ମକରଙ୍କ ମେଳେ
ଜଳ ପୃଷ୍ଠେ ଫୁଟେ ଫୁଲ ସହସ୍ରୈକଦଳେ
ଇନ୍ଦୀବର କୋକନଦ କୁମୁଦ କହ୍ଲାର
ଦିବା ବିଭାବରୀ କି ନବାରି ସମ୍ଭାବେ
ବିବର୍ଣ୍ଣ ବିଶୀର୍ଣ୍ଣ ନୋହି ଜ୍ୟୋତି କାନ୍ତିପୂର୍ଣ୍ଣେ;
ବାସ ପ୍ରସରଇ ତାର ଦିଗଦିଗନ୍ତରେ
ଶୁଣ୍ଣୁ ରୁତେ ମତ୍ତଭୃଙ୍ଗ ଭ୍ରମେ ପୁଷ୍ପେ ପୁଷ୍ପେ
ଗଣକ ରୂପେ କି ଗଣେ ପୁଷ୍ପରାଶି ସଂଖ୍ୟା;
ହଂସ ସାରସ ବିଭାର ବିସ ପତ୍ର ଭକ୍ଷି
ସଞ୍ଚରନ୍ତି ମଧୁରୁତେ ପତତ୍ର ସଙ୍କୁଚି;
ସୈକତ ରତନ-ରେଣୁ ଯୋଗେ ବିଭ୍ରାଜିତ
ସ୍ୱରଙ୍ଗନା ସ୍ନାନ କାଳେ ଖେଳେ ଯହିଁ ଯତ୍ନେ
ରତ୍ନଲୁଚା ଖେଳ ତାର ରେଣୁ ସଂଗ୍ରହଣେ
ହୁଏ ତେଣୁ କର ରତ୍ନ କାନ୍ତି ବିନିମୟ;
ସୈକତ ଉରସେ ସୁରେ କ୍ରୀଡ଼ା କଉତୁକେ
ଦେଖାନ୍ତି ଯୁଦ୍ଧ ବିକ୍ରମ ଭାବୀ ଯୁଦ୍ଧ ଆଶେ;
କେତେ ସୁର ବିଦ୍ୟାଧର ଗନ୍ଧର୍ବ କିନ୍ନର
ଖେଳନ୍ତି ଏକାଳେ ଜଳେ ସ୍ୱୀୟ ପ୍ରିୟା ସଙ୍ଗେ
ଜଳ କରି ପରିମଳମୟ ଅଙ୍ଗ ବାସେ;
କେବେ ତରଣୀରେ ଯେବା ରତ୍ନବିନିର୍ମିତ
ରତ୍ନ ଛାଦେ ଉଡ଼େ ଯାର ରତନ କେତନ
ଆରୋହି ବଲ୍ଲକୀ ରବା ମୁରଜ ବଜାଇ
ମୋହୁଥାନ୍ତି ପରସ୍ପର ଚିତ୍ତ ସୁସଙ୍ଗୀତେ
ଦିବ୍ୟପଟ ବସ୍ତ୍ର ଅଙ୍ଗେ ଦିବ୍ୟ ଭୂଷା ସଙ୍ଗେ
ଯେବା ରତ୍ନେ ଜଡ଼ା ଚାରୁକାରୁକର୍ମେ ଗଢ଼ା

ସ୍ୱର୍ଗୀୟ କୁସୁମ ଶିରେ ଭରେ ଶୋଭେ ଆର
ବାସୁଁ ଫୁଟି ଦେହକାନ୍ତି ବିକୀରଙ୍ଗ ପ୍ରଭା
ପ୍ରସରଇ ମନୋହର ବାସ ଅଙ୍ଗ ଦେଶୁଁ;
ଅବଗାହି ଦେହ ଜଳେ ଶୁଣ୍ଡ ଉର୍ଦ୍ଧେ ଟୋଳି
ଦିଗହସ୍ତୀ ଜଳକେଳି କରନ୍ତି ବୃଂହିତେ
ଐରାବତ ପୁଣ୍ଡରୀକ କୁମୁଦ ଅଞ୍ଜନ
ପୁଷ୍ପଦନ୍ତ ସାର୍ବଭୌମ ବାମନ ପ୍ରତୀକ
ନିଜ ନିଜ କାନ୍ତା ଘେନି ଏ ଚାରୁବସନ୍ତେ
ଅଭ୍ରମୂ କପିଳା ପୁଣି ପିଙ୍ଗଳାନୁପମା
ତାମ୍ରକର୍ଣ୍ଣୀ ଶୁଭ୍ରଦନ୍ତୀ ଅଙ୍ଗନା ଅଞ୍ଜନା
ନାମେ ଏ ଅଟନ୍ତି କରୀକ୍ରମେ କରୀ କାନ୍ତା;
କର ଶୀକର ସିଞ୍ଚାଡ଼ି ନିଜ ଶିରେ ଉରେ
କେବେ ପ୍ରିୟବତୀ ପରେ ମୃଣାଳକବଳେ;
କେବା ସିତ ଅସିତ କେ ପୀତି କେ ହରିତ
ବର୍ଣ୍ଣେ ଶୋଭେ ଦେହ, ଦନ୍ତ ଏକ ଦୁଇ ତିନି
କାର ଚାରି ଅଭ୍ରଶୁଭ୍ର ସୁଦୀର୍ଘ ବର୍ତ୍ତୁଳ;
ମଦଜଳ ଜଳେ ସ୍ରବି ହେଉଁ ଆମୋଦିତ
ସୁରଧୁନୀ ସୁରଭିତ ହୁଏ ସଦାକାଳେ
ତୀରତରୁ ଲତା ପତ୍ରୁଁ ଖସି ପୁଷ୍ପରାଶି
ସୁବାସିତ ଉଭାସିତ କରେ ପୁଣି ସ୍ରୋତେ;
ସ୍ୱର୍ଗଙ୍ଗାର ତଟେ ବସି ଦେବର୍ଷି ବ୍ରହ୍ମର୍ଷି
ପିତୃଋଷି ଆଦି ରତ ସମାଧି ସାଧନେ
ବିଶ୍ୱାତ୍ମା ଚରଣ ସୁଧା କରିବାକୁ ପାନ
ନିଦ୍ରା କ୍ଷୁଧା ବାଧା ବିଘ୍ନହୀନ ସଂହନନେ;
ବକ କ୍ରୌଞ୍ଚ ଚକ୍ରବାକ ଆବର ପୁଷ୍କର
ଦ୍ୱିଜନାମ ବହୁଁ ତହିଁ ବସନ୍ତି ହରଷେ
ରତିସତୀ ରତିପତି ଯହିଁ ନିଜେ ବିଜେ
ତହିଁ ବସନ୍ତର କାହିଁ ଶୋଭା ପଟାନ୍ତର
ଇତିଶ୍ରୀ ଜରାସନ୍ଧବଧ କାବ୍ୟେ ସ୍ୱର୍ବସନ୍ତ ବର୍ଣ୍ଣନେ ନାମ ପ୍ରଥମଃ ସର୍ଗଃ ।

——

## ଦ୍ୱିତୀୟ ସର୍ଗ

ଏ କାନ୍ତ ବସନ୍ତ ଚାହିଁ ଇନ୍ଦ୍ର ମହାନନ୍ଦେ
ବସନ୍ତ ଉତ୍ସବ ବିଧି ସାଧନ ସକାଶେ
ବଳାଇଲେ ମନ ବରି ବିବୁଧସନ୍ଦୋହ
ଦେବଯୋନିଙ୍କ ସହିତ ବିହିତ ସମ୍ମାନେ;
ନିମନ୍ତ୍ରଣେ ଆଣିବାକୁ ବନ୍ଦ୍ୟ ଦେବବୃନ୍ଦ
ବରଗିଲେ ଦୂତ ଦେଇ ବିନୟ ପତର,
ନିଯୋଗିଲେ ଭୃତ୍ୟ ଚାଣ୍ଡେ ସ୍ୱପୁରୀ ମଣ୍ଡନେ
ଦେବବନ୍ଦ୍ୟା ଚିରାନନ୍ଦା ଅମରାବତୀର;
ସ୍ଥାନେ ସ୍ଥାନେ ଧ୍ୱଜ ଛତ୍ର ପତାକା ତୋରଣା
ପତ୍ର ପୁଷ୍ପ ସୂତ୍ର ବସ୍ତ୍ର ଅଶ୍ୱେ ସଜ୍ଜୀଭୂତ
ହର୍ମ୍ୟରାଜି ଶୋଭେ ଚାରୁ କଳସ କେତନେ
ସର୍ବ ରତ୍ନମୟ ତେଜେ ନେତ୍ର ତ୍ରସ୍ତ ଭଜେ;
କଟକର ଶୃଙ୍ଗାଟକ ରଥ୍ୟା ସଂସରଣ
ସ୍ୱଚ୍ଛ କମନୀୟ ପୁଣି ସରଳ ସୁନ୍ଦର
ସ୍ୱର୍ଗୀୟ ସୁପଣ୍ୟେ ପୂର୍ଣ୍ଣ ସରଣି-ବିପଣି
ମନଗଛି ବାଛି ସୁରେ କିଣନ୍ତି ତକ୍ଷଣେ
ସୁଖ ଶାନ୍ତି କାନ୍ତିମୟ ସର୍ବ ଦ୍ରବ୍ୟ ଠୁଳ
ଅଭାବ ଶବଦ ନାହିଁ ସ୍ୱର୍ଗ ଅଭିଧାନେ;
ବିତରେ ଚନ୍ଦ୍ର ଭାସ୍କର ରତ୍ନଦୀପ ତହିଁ
ଖର ମଧ୍ୟ ମନ୍ଦ ରଶ୍ମି, ଦେବବାଞ୍ଛା ମତେ;
ପଟାନ୍ତର ନାହିଁ ବିଶ୍ୱେ ସୁଧର୍ମା ସଭାର
ଅପରୂପ ସଞ୍ଜେ ସଞ୍ଜା ରତ୍ନେ ଯାର ଗଢ଼ା
ସ୍ୱର୍ଗ ଶିଳ୍ପୀ ବିଶ୍ୱକର୍ମା ନିଃଶେଷ କଳ୍ପନା
ସମ୍ଭୂତ ଯେ ବେଶ୍ମ, ଶ୍ରେଷ୍ଠ ଚତୁର୍ଦ୍ଦଶପୁରେ
ନେତ୍ର ତ୍ରାସକର ପ୍ରଭା ଉଭାସେ ଅମ୍ବର

ରତ୍ନବାର ଦୀପି, ଦୀପ୍ତିକର ବସ୍ତତେଜେ
ମଧ୍ୟେ ତା ରତନମଞ୍ଚ ସୁସଜ୍ଜେ ନିଘଞ୍ଚେ
ଧାଡ଼ିଧାଡ଼ି ଶ୍ରେଣୀ ଶ୍ରେଣୀ ସ୍ଫଟିକର ତଳେ
ଊର୍ଦ୍ଧ୍ୱେ ରାଜେ ଚନ୍ଦ୍ରାତପ ବିଚିତ୍ର ବରନେ
ମୋତି ପନ୍ତି ଗୁନ୍ଥା ଯାର ଝାଲର ସ୍ୱରୂପେ
ପ୍ରାଚୀର ପ୍ରାଙ୍ଗଣ ମେଢ଼ ଗବାକ୍ଷ ତୋରଣ
ଅଳିନ୍ଦ ଦେହଳୀ ଆଳୀ ସୂଚି କର୍ମେ ଗଢ଼ା
ଉପମେୟ ନୁହେ କାର ସେହି ସେ ଉପମା
ମର୍ତ୍ତ୍ୟର ଉପମା ନେଇ ସ୍ୱର୍ଗେ ତୁଳେ କେବା
ପଦ୍ମରାଗ ଆଗେ ତୁଚ୍ଛ ଗୁଞ୍ଜାରାଗ ସିନା;
ଧୂପପୁଷ୍ପଗନ୍ଧେ ସଭାଗୃହ ମହମହ
ଗହଗହ ପୁଣି ସ୍ୱର୍ଗ ବାଦିତ୍ର ଶବଦେ,
ସୁକେଶୀ ଉର୍ବଶୀ ରମ୍ଭା ମେନକା ଘୃତାଚୀ
ତିଳୋତ୍ତମା ମଞ୍ଜୁଘୋଷା ଚିତ୍ରରେଖା ଆଦି
ଅପସରୀ, ସଙ୍ଗେ ନୃତ୍ୟ ଅପରୂପ ରଙ୍ଗେ
କରୁଛନ୍ତି, ଗନ୍ଧର୍ବୀ କିନ୍ନରୀ ବିଦ୍ୟାଧରୀ
ମଧୁସ୍ୱରେ, ସୁସଙ୍ଗୀତ ଉଚ୍ଚାରି ପଞ୍ଚମେ
ବୀଣା ବେଣୁ ରବା ଆଦି ବାଦ୍ୟ ଅନୁସରି
ଗନ୍ଧର୍ବ ଗାୟକ ହାହା ହୁହୁ ସହକାରେ
କର୍ଣ୍ଣଦେଶେ ବରଷାଇ ଚାରୁ ସୁଧାଧାରା;
ଏକାଳେ ସ୍ୱାଗତ ସଚୀ ସହ ଆଖଣ୍ଡଳ
ନିଖିଳ ସ୍ୱର୍ଗମଣ୍ଡଳ ରାଜରାଜେଶ୍ୱର
ଅମୋଘ ବଜ୍ରାସ୍ତ୍ରକର ନୀଳକାନ୍ତିଦେହ
ମହାର୍ହ କିରୀଟଶୀର୍ଷ କ୍ଷୌମପରିହିତ
ଶ୍ୱେତଗାତ୍ର ଚତୁର୍ଦ୍ଦନ୍ତ ଐରାବତ ପୃଷ୍ଠେ
ଗଜମୋତି ଜ୍ୟୋତି ପ୍ରତିବିମ୍ବେ ଯା ମସ୍ତକେ
ଦିଶେ ଯେ ଭାସ୍ୱର ମହାମନୋହର ବେଶେ
ପାଣ୍ଡର ଚାମରଦଣ୍ଡ ଆସ୍ଫାଳେ ଯେ ଶୁଣ୍ଡେ;
ଆଶେ ବାଦ୍ୟକାରବାର ବଜାନ୍ତି ବାଜଣା

ଦୁନ୍ଦୁଭୀ ନିନାଦେ ହୁଏ ସ୍ୱର୍ଗ କମ୍ପମାନ;
ଧରି ଛତ୍ରଧର ଛତ୍ର, ପତାକୀ ପତାକା
ବେତ୍ରହସ୍ତ ବହିବେତ୍ର ଗମନ୍ତି ତା ପଛେ
ପୁଣି ସ୍ତୁତିକାରବାର ସ୍ତୁତିବାକ୍ୟମୁଖେ
ଚଳିଯାନ୍ତି ଶଙ୍ଖମୁଖ ଶଙ୍ଖୁଆ ସହିତେ
ଆବର ଚାମରଗ୍ରାହୀ ଆଲଟ ଚାଳକ
ଚାଲନ୍ତି ସେ ସଙ୍ଗେ ରଙ୍ଗେ ଜୟକାର ଘୋଷେ;
ପାର୍ଶ୍ୱେ ଉଚ୍ଚୈଃଶ୍ରବା ପୃଷ୍ଠେ ଯା ଶ୍ରେଷ୍ଠ ବା ଖର
କଣ୍ଠେ କୁରୁବିନ୍ଦମାଳା ନୀଳାଝାଲୀ ଚୂଳେ
ପାଦେ ମଞ୍ଜୁନାଦୀ ମହାରଜତ ପାହନ୍ତୁ
କାନକକବିତା ମୁଖେ ହ୍ରେଷେ ଯେ ଉତ୍କର୍ଣ୍ଣେ,
ଆବର ଦିଗ୍ଗଜ ଶିରେ ମାଣିକ୍ୟଉତ୍ତଂସ
ପୃଷ୍ଠେ ପରିସ୍ତୋମ ମୋତି ଝାଙ୍କର ମଣ୍ଡିତ
ଭ୍ରାଜିଷ୍ଣୁ ଶୃଙ୍ଖଳାବଳୀ ପଦ ଚତୁଷ୍ଟୟେ
ସୁଦୀର୍ଘ ବର୍ତ୍ତୁଳଦନ୍ତେ କାଞ୍ଚନବଳୟ
କ୍ୱଣିତ ଘଣ୍ଟିକା ଯୁଗ ଦୋଳେ ପାର୍ଶ୍ୱ ଯୁଗେ
କ୍ୱଣ କ୍ୱଣ ରୋଳେ ପୁଣି କିଙ୍କିଣୀମାଳିକା,
ମହା ସମାରୋହେ ଦେବ ଦେବଯୋନି ସହ
ସମାସୀନ ସିଂହାସନେ ପାର୍ଶ୍ୱେ ପାରିଷଦେ
ସୁରଗୁରୁ ବୃହସ୍ପତି, ଦୈତ୍ୟଗୁରୁ ଶୁକ୍ର
କଳହପ୍ରିୟ, ନାରଦ, ଭୃମ୍ବୁରୁ, କପିଳ,
ଅଙ୍ଗିରା, ମରୀଚି, ଭୃଗୁ, ସନକ, ମାର୍କଣ୍ଡ
ଆଦି ଦେବବ୍ରହ୍ମପିତୃ ଋଷି, ସିଦ୍ଧ, ଯୋଗୀ
ଜୟନ୍ତ ନଳକୁବର ଅଙ୍ଗାରପନ୍ନଗ
ଚିତ୍ରସେନ ଚିତ୍ରରଥ ଦେବବୈଦ୍ୟ ମେଳେ
ଆବର ଗନ୍ଧର୍ବ ଯକ୍ଷ ରକ୍ଷ ବିଦ୍ୟାଧର
ସିଦ୍ଧ ସାଧ୍ୟ କିନ୍ନର ଅପ୍ସର ଦେବଦେବୀ
ଆସିଛନ୍ତି ସେ ଉତ୍ସବେ ଯୋଗ ଦେବା ପାଇଁ
ହରଷିତ ଚିତ୍ତେ ବହି ଦିବ୍ୟ ବେଶ ଭୂଷା;

ଯଥା ଉଚିତ ଆସନେ ବସିଛନ୍ତି ସର୍ବେ
କୋଳାହଳ ଶୂନ୍ୟ, ଶାନ୍ତି ବିଜେ ପୂର୍ଣ୍ଣମାତ୍ରା
ଯେସନ ତରଙ୍ଗହୀନ ପୁଷ୍ପମୟ ସରଃ
ଇନ୍ଦ୍ରେ ପୂଛା କଲେ ତହିଁ ଶୁଭାଶିଷ ଦେଇ
ନାରଦର୍ଷି ଅଗ୍ରେ ଉଠି, କହ ସୁରେଶ୍ୱର !
ତିନିଦେବ ବିଶ୍ୱେସାର ବ୍ରହ୍ମା ବିଷ୍ଣୁଶିବ
ଦେହୀ ଦେହେ ଯଥା ବାତ ପିତ୍ତ କଫ ତିନି
ପୟର ପୂଜିବା କାର ବସନ୍ତ ଉତ୍ସବେ
ତିନିହେଁ ଏକାତ୍ମା ହେଲେ ମଧ୍ୟେ ଭିନ୍ନଧର୍ମୀ
ସୌର କରୁଁ ଜାତଯଥା ନୀଳ ରକ୍ତ ପୀତ
ପୂଜିଲେ ଏକେ, ଆରକେ ଲଜ୍ଜା ଉପୁଜିବ
କି ଉପାୟ ଭାବ ସର୍ବେ ନ ଘଟୁ ପ୍ରମାଦ
ଏକତ୍ରେ ତିନିଙ୍କ ପୂଜା ନୁହଇ ସମ୍ଭବ
ଶୁଣି ସୁରମଣି ହୃଦ ହେଲା ସ୍ତବ୍ଧ କ୍ଷୁବ୍ଧ
ଆହା ଯେହ୍ନେ ମୃଦୁପୁଷ୍ପେ ପଶେ ଦୁଷ୍ଟକୀଟ
କିଛିକ୍ଷଣ ପରେ ସୁରଗୁରୁଙ୍କୁ ଅନାଇ
କହିଲେ ଭୋ ଗୁରୋ ! କହ କି କର୍ତ୍ତବ୍ୟ ଏବେ
ମହତ ବିପଦ ଆସି ପଦତଳେ ଉଭା
କେଉଁ କାର୍ଯ୍ୟ କରି ସର୍ବେ ଉଦ୍ଧରିବା ତହୁଁ;
ଉତ୍ତରିଲେ ସୁରଗୁରୁ ଆହେ ସୁରପତି ।
ଉପାୟ ଚିନ୍ତିବା ଚିତ୍ତୁଁ ଚିନ୍ତା ପରିହର,
ଚିନ୍ତା ହରେ ବଳବୀର୍ଯ୍ୟ ଧୈର୍ଯ୍ୟ ଜ୍ଞାନ ଆଦି
ଚିନ୍ତାର ସଦୃଶ ପ୍ରାଣଭକ୍ଷୀ ବିଷ କାହିଁ ?
ଶାନ୍ତ ଦାନ୍ତ ଶିଷ୍ଟ ଶ୍ରେଷ୍ଠ ଯେବଣ ମହାତ୍ମା
ହୋଇଥିବେ ବ୍ରହ୍ମନିଷ୍ଠ ବ୍ରହ୍ମକୁଳେ ଜାତ
ତାହାଙ୍କୁ ପେଷିବା ଆଗେ ପରୀକ୍ଷାକରଣେ
ତିନିଦେବଙ୍କର ଅନ୍ତେ କର୍ତ୍ତବ୍ୟ ବିହିତ
ଏଥିକି ସୁଯୋଗ୍ୟ ଭୃଗୁ ବ୍ରହ୍ମର୍ଷି ତ୍ରିଦିବେ
ତାଙ୍କ ବିନା ଅନାୟାସ ସାଧ୍ୟ ନୁହେ ଆନେ

ଅଜ କି ବହି ପାରଇ ଗଜବୁହା ଭାର;
ଶୁଣି ସହସ୍ରଲୋଚନ ବିଲୋଳ ଲୋଚନେ
ସମକ୍ଷେ ଆସୀନ ମହାତେଜା ଭୃଗୁ ଚାହିଁ
ସିଂହାସନୁ ଉଠି ପଦ ବନ୍ଦି ଭକ୍ତିଭରେ
ନିବେଦିଲେ, କରି କକ୍ଷା ଗୁରୁ ଗୀରମତେ
ମହର୍ଷିପ୍ରବର ରକ୍ଷାକର ଏ ବିପଦୁ
ତ୍ରିଦିବବାସିଙ୍କୁ ନତୁ ମରିବୁଁ ସକଳେ;
ଥାଉ ବା ନଥାଉ ଭକ୍ତି ବିପନ୍ନେ ମୁକତି
ମହାତ୍ମା ବ୍ୟକ୍ତିର ଦେବା ଶ୍ରେୟସ୍କର ଧର୍ମ
ଏଠାରେ ଭକତି ପୁଣି ଅଛି ଦେବପ୍ରୀତି
ନ କରିବି କାର୍ଯ୍ୟ କିପାଁ ଶକ୍ତି ଅନୁମତେ
ଚିତ୍ତେ ଗୁଣି ଋଷିମଣି କଲେ ଅଙ୍ଗୀକାର
ତହୁଁ ଶୀର୍ଷେ କରସ୍ପର୍ଶି ଆଶିଷ ସେ ବାଞ୍ଛି
ମନୋଯାନ ଆରୋହଣ କରିଣ ଝଟିତି
ପ୍ରବେଶିଲେ ଶିବବାସ କୈଳାସ ସବେଶେ
ଗମେ ଯଥା ରାଜହଂସ ମାନସ ସରସେ
ସୁରକ୍ତ ଚଞ୍ଚୁ ଚରଣଧାରୀ ମହାବେଗୀ
ସରଃସଦ୍ମ ସ୍ୱର୍ଣ୍ଣପଦ୍ମ କିଞ୍ଜଲ୍କଲାଳସର,
ଅଧ୍ୱମଧ୍ୟେ ଚିନ୍ତି ସ୍ଥିର କରିଥିଲେ ଚିତ୍ତେ
କ୍ରୋଧୋଦ୍ରେକେ ପରୀକ୍ଷା ସେ ହେବ ଦେବଙ୍କର
ତେଜିଲେ ଜ୍ୱଳେ ନା ଦୀପ୍ତଦୀପ ବହୁତେଜେ;
ବହଇ ରଜତଶୁଭ୍ରକାନ୍ତି ଗିରିରାଜ
ଖଗ ମୃଗ ତରୁ ଭୃଣ ସମସ୍ତଧବଳ
ଚୁମ୍ବେ କ୍ଷିତିତଳ ତରୁଡାଳ ଫୁଲ ଫଳେ
ଧ୍ରୁବ ବନ୍ଧା ହୋଇ ତହିଁ ନାହିଁ ବୃକ୍ଷ ଏକ
ପୁଷ୍ପବାସ ଘେନି ବହେ ସଧୀର ସମୀର
ଆତପ ସନ୍ତାପ ହୀନେ ନିତ୍ୟ ସୁଖମୟ
ଝରଇ ନିର୍ଝରରାଶି ଝରି ଝରି ନାଦେ
ଗିରହ୍ରଦେ ଅଚ୍ଛସ୍ୱଚ୍ଛ ପୟୋରାଶି ଘେନି

କିସେ ଗିରିବକ୍ଷ ଯୁକ୍ତା ମୁକ୍ତା ହାରାବଳୀ,
ଭ୍ରମନ୍ତି ଭ୍ରମରବୃନ୍ଦ କରି ଗୁଣ୍ଣୁ ରୁତ
ପୁଷ୍ପେ ପୁଷ୍ପେ ବସି ମଧୁ ଚୁମ୍ବନ୍ତି, ହରଷେ
କାମିନୀରଦନଛଦ କି କାମୀ ବଦନେ,
କୂଜନ୍ତି କୋକିଳକୁଳ ସପଞ୍ଚମ ତାନେ
ଆନ ଆନ ପକ୍ଷୀଯୂଥେ ଯୁତ ହୋଇତହିଁ
ତତବାଦ୍ୟକୁଳ କି ବାଜଇ ଏକମେଳେ,
ନାଚନ୍ତି କେକିନିକର କରି କେକାରବ
ଶିଖଣ୍ଡବସ୍ତାରି ଇନ୍ଦ୍ରକୋଦଣ୍ଡ ଆକାରେ,
ବସନ୍ତି ଏକତ୍ର ଜୀବେ ନାହିଁ ହିଂସାବାଦ
ଅଜ ଗଜ ଦ୍ୱିପିନ ବିପିନରାଜ ଆଦି
ମୃଗ ବ୍ୟାଘ୍ର ଏକସ୍ଥାନେ କରନ୍ତି ଶୟନ
ନକୁଳର ପୃଷ୍ଠେ ହୃଷ୍ଟେ ଖେଳେ କାଳବ୍ୟାଳ
ସିଂହୀସ୍ତନୁ ସ୍ତନ୍ୟ ପିଏ କାହିଁ ମୃଗବତ୍ସ
ଚଳହଇ କାହିଁବା ବ୍ୟାଘ୍ରୀ ଶୁଣାଶିଶୁ ଗାତ୍ର
ଦେଖିଏ ଅଦ୍ଭୁତ କାଣ୍ଡ ନୟନଅୟନେ
ଚିତ୍ରମଣି ରଶ୍ମିମଣି ଉଠିଲେ ତା ଊର୍ଦ୍ଧ୍ୱେ
ଶିବବୃକ୍ଷ ପଦକ୍ଷେପ ଚିହ୍ନ ମାର୍ଗେ ଲକ୍ଷି;
ଗିରିଶୃଙ୍ଗେ ବରାଜିତ ବିଶଦମନ୍ଦିର
ଶ୍ୱେତରତ୍ନେ ବିନିର୍ମିତ ଶରଚ୍ଚନ୍ଦ୍ରଛଟା
କିସେ ଗିରିବର ଶିର ହୀରକଉତ୍ତଂସ
ମଧ୍ୟେ ରାଜେ ଚତୁରସ୍ରେ ପୀଠ ଶଙ୍ଖୋପଳେ
ଜଡ଼ିତ ଯେ ରତ୍ନେ ତେଜେ ନେତ୍ରତ୍ରସ୍ତେ ଭଜେ
ବ୍ୟାଘ୍ରଚର୍ମ ଆସନ ସ୍ଥାପିତ ପୀଠୋପରି
ତହିଁ ନିବସନ୍ତି ହର ଗିରୀନ୍ଦ୍ର-ନନ୍ଦିନୀ
ସତତ ଯୌବନା ବିଭାବିଭର୍ବସମ୍ପନ୍ନ;
ଜୟନ୍ତକ ଅଜୟନ୍ତ ଭୀମ ବୀରଭଦ୍ର
କାଳଘଣ୍ଟ ବୀରଘଣ୍ଟ ଯମଘଣ୍ଟ ବଜ୍ର
ନନ୍ଦୀ ଭୃଙ୍ଗୀ କାର୍ତ୍ତିକେୟ ଆଦି ଶିବଗଣ

ଶୂଳ ଶକ୍ତି ଗଦା ଖଡ୍ଗ ଚକ୍ର ପାଶ ଆଦି
ପ୍ରହରଣ ଘେନି ପାଶେ ଖଟନ୍ତି ନିଯୋଗେ,
ବାଜଇ ଡମ୍ବରୁ ଶିଙ୍ଗା ଘୁମୁରା ମର୍ଦ୍ଦଳ
ଭୂତପ୍ରେତ ବେତାଳ ନାଚନ୍ତି କୁତୂହଳେ
ପ୍ରମଥସହ ପ୍ରମଥନାଥ ଦ୍ୱାରଦେଶେ
କରେ ପାଶାଙ୍କୁଶ ଯାର ଦ୍ୱିରଦବଦନ
ତାଙ୍କୁ ଭାଷି ପ୍ରବେଶନ୍ତେ ଅଭ୍ୟନ୍ତରେ ଋଷି
ନିରେଖିଲେ ବସିଛନ୍ତି, ପୀଠେ ତ୍ରିପୁରାରି,
କୁମୁଦ କୁନ୍ଦ କର୍ପୂର ନିନ୍ଦି କଳେବର
ବିଭୂତି ଭୂଷିତ, କିସେ ଶଶାଙ୍କେ କଳଙ୍କ
କର୍ଣ୍ଣେ ଶ୍ୱେତଫଣୀ ଶିରେ ଶୋଭେ ଜଟାଜୁଟ
ବିରାଜନ୍ତି ଯହିଁ ଲୋଳା ଧବଳାଙ୍ଗୀ ଗଙ୍ଗା
ରାଜେ କିବା ତମୋଗର୍ଭେ ଶର୍ବରୀଶ ରେଖା
ଭାଲେ ଚନ୍ଦ୍ର ଭୟଙ୍କର ବ୍ୟାଳମାଳ ଗଳେ
ହସ୍ତେ ଶୂଳ ପଞ୍ଚବକ୍ତ୍ରେ ପଞ୍ଚଦଶନେତ୍ର
ଜଗତବନ୍ଦିନୀ ଗିରିନନ୍ଦିନୀ ବାମାଙ୍ଗେ
ଶୁଭ୍ରଅଭ୍ର କୋଳେ ଯଥା ସ୍ଥିରା ସୌଦାମିନୀ,
ସ୍ଥାଣୁ ଅଗ୍ରେ ଉଭା ଋଷି ସ୍ଥାଣୁ ପ୍ରକାରେ
ସ୍ତୁତି ବିରହିତମୁଖେ, ପ୍ରଣାମ ନକରି,
ଦେଖି କୋପ କଲେ ହର କରାଳଲୋଚନେ
ଭଜିଲା ଅଧର ସ୍ଫୀତ, କମ୍ପିଲା ଶରୀର
ଭାଲନେତ୍ରୁଁ ନିକସିଲା ଅଗ୍ନି ଧଗଧଗେ
ଧରି ବିକରାଳ ମୂର୍ତ୍ତି ଜ୍ୱାଳାମାଳାବର୍ଷି
ବହିଲା କାଳିମା ବାଳଇନ୍ଦୁ ମୌଳିଦେଶେ
ଆତଙ୍କେ ସ୍ୱକୀୟ ସ୍ନିଗ୍ଧ ଜ୍ୟୋତି ପରିହରି
ଅଭୁତେ ରାବିଲା ଶିଙ୍ଗା ଭୈରବ ଆରବେ
ଶୃଙ୍ଗ ଉତୋଳିଲା ନନ୍ଦୀ ମୁଖବକ୍ରେ ରଖି
ବାଜିଲା ଡମ୍ବରୁ ଡିବି ଡିବି ନାଦନାଦି
ଗର୍ଜିଲେ ଭୁଜଙ୍ଗକଣ୍ଠେ ଫୁତ୍କାର ସ୍ୱନେ

ବଦନବ୍ୟାଦାନେ କିଳିକିଳା ରାବଦେଇ
ଭୂତ ପ୍ରେତ ବେତାଳ ଆସିଲେ ରୋଷବହି
ଆକୃତି ଭୀଷଣ ଯାର ପ୍ରକୃତି ଭୀଷଣ
ସଂଭ୍ରମେ ଭ୍ରମିଲେ ଗଙ୍ଗା ଜଟାଜୂଟେ ପଶି
ସ୍ୱତରଙ୍ଗ ଭଙ୍ଗେ ଶିବରଙ୍ଗ ନେତ୍ର ଚାହିଁ
ହର ଉତ୍ସଙ୍ଗେ କମ୍ପିଲେ କାମ୍ପିଲ୍ଲବାସିନୀ;
ଦକ୍ଷହସ୍ତେ ଶୂଳତୋଳି ଗର୍ବେ ଭୃକ୍ତି ଗୁରୁ
ଭାଷିଲେ ସେ ସର୍ବ, ଆମ୍ଭେ ଦେବଦେବେଶ୍ୱର
ତ୍ରିଲୋକେ ବନ୍ଦିତ ଜାଣୁ ଜାଣୁ ଋଷିମନ୍ଦ
ଅବମାନନା ପ୍ରକାଶୁ ସ୍ୱର୍ଗବାସୀ ହୋଇ
ମାରିବ ପ୍ରଚଣ୍ଡ ଶୂଳେ ତାରିବ କେ ତୋତେ
ଯା ଆଘାତ ନ ସହନ୍ତି ନାଗ ସୁରାସୁର
ଶିବବାଣୀ ଶୁଣି ଋଷି ଯୋଡ଼ି ବେନିପାଣି
ନମସ୍କାରେ ଆଚରିଲେ ବିନୀତ ସ୍ତୁତି କି
କ୍ଷମ ଦୋଷ ମମ ନମୋ ମୃତ୍ୟୁଞ୍ଜୟ ଶୂଳୀ
ସଦାନନ୍ଦ ଯୋଗୀଶ୍ୱର ତ୍ରିପୁରସଂହର୍ତ୍ତା
ବିଶ୍ୱବନ୍ଦ୍ୟ ବିଶ୍ୱନାଥ ଚନ୍ଦ୍ରାର୍ଦ୍ଧମଉଳି
ଅଗତିରଗତି ନାଥ ଆଶୁ ବରଦାତା
କୋପାଇଲି ଦେବକାର୍ଯ୍ୟେ ପରୀକ୍ଷା କପଟେ
ସଂସିଦ୍ଧ ମୋ କାର୍ଯ୍ୟ ଦେବ ଯାଉଛି ଅନ୍ୟତ୍ର
ଏତେ ଭାଷି ହସି ତୋଷି ଦେବ ଆଶୁତୋଷେ
ବାହାରିଲେ ଯଶୋବନ୍ତି ପୁର ଅଭିମୁଖେ
ଖରତରେ, ତହିଁ ଯାଇ ନିରେଖିଲେ ଋଷି
ହିରଣ୍ମୟ ପୁର ଶୋଭା ଉଜ୍ଜ୍ୱଳେ ଅମ୍ବର
ଗଞ୍ଜଇ ନୟନ ତେଜେ ଯେହ୍ନେ ରବିରଶ୍ମି
ଜୀବଜନ୍ତୁ ବୃକ୍ଷଲତା ସର୍ବେ ତେଜୋମୟ
ପାରିଷଦ ଘେନି ବସିଛନ୍ତି, ଚତୁର୍ମୁଖ
ଦେବବ୍ରହ୍ମ ପିତୃଋଷି ସିଦ୍ଧ ସାଧ୍ୟ ଆଦି
ବେଦନାଦେ ମୁଖରିତ ଚତୁରବଦନ

ଗୌରବର୍ଣ୍ଣବପୁଃ ସ୍କନ୍ଧେ ଶୁଭ୍ରଉପବୀତ
ଦଣ୍ଡ କମଣ୍ଡଳୁ ସ୍ରୁବ୍ ସ୍ରୁଚ ଶୋଭେ କର
ରୂପସୀ ସାବିତ୍ରୀ ସତୀ ତାଙ୍କ ବାମପାର୍ଶ୍ୱେ
ପାଟଳ ଜଳଦ ପଟେ ଯେହ୍ନେ ତଡ଼ିଲ୍ଲତା
ସୂଚୀମୁଖି ହଂସ ବସେ ତାଙ୍କରି ସମ୍ମୁଖେ
ତାଙ୍କୁ ଭାଷି ଅଭ୍ୟନ୍ତରେ ପଶି ଭୃଗୁଋଷି
ଅକ୍ଷମାଳାବକ୍ଷଃ ବ୍ରହ୍ମାପାଖେ ହେଲେ ଉଭା
ସ୍ତୁତି ବିରହିତ ମୁଖେ ପ୍ରଣାମ ନ କରି
ଜଡ଼ ବଧିର ସମାନ ନିର୍ଭୟ ମାନସେ
ଚାହିଁ ସୁରଜ୍ୟେଷ୍ଠ ତାଙ୍କୁ ରୋଷିଲେ ଅଶେଷ
ଶିରଝୁଣି ଶ୍ମଶ୍ରୁଯୁତ ବଦନ ଆସ୍ଫାଳି
ରକ୍ତ ନେତ୍ରେ ଦକ୍ଷହସ୍ତେ ତର୍ଜନୀତର୍ଜନେ
କହିଲେ, ବର୍ବର ! ଆମ୍ଭେ ଦେବ ଦେବେଶ୍ୱର
ତ୍ରିଲୋକେ ବନ୍ଦିତ ଜାଣୁ ଜାଣୁ ଋଷିମନ୍ଦ
ଅବମାନନା ପ୍ରକାଶୁ ସ୍ୱର୍ଗବାସୀ ହୋଇ
ଧିକ ଧିକ ଶତଧିକ ତୋହ ଋଷିପଣେ
ଦୂର ହୁଅ ଏହିସ୍ଥାନୁ ନୋହୁ ଯୋଗ୍ୟଜନ
ଜାଣି ନାହୁଁ କିରେ ଆମ୍ଭେ ବେଦଜ୍ଞାତା ଦେବ;
ଦେଖି ବ୍ରାହ୍ମାଙ୍କର ରୋଷ ତହୁଁ ଋଷିଶ୍ରେଷ୍ଠ
ନମସ୍କାର କଲେ ଖରେ ଯୋଡ଼ି ବେନିକର
ସ୍ତୁତି ଆରମ୍ଭିଲେ ତାଙ୍କ ବିନୀତ ଉକ୍ତିରେ
ନମୋ ବେଦପତି ପ୍ରଜାସର୍ଜନା କାରକ
ସାବିତ୍ରୀ ହୃଦବଲ୍ଲଭ କରୁଣା ସାଗର
ଯଜ୍ଞକରି ଯଜ୍ଞଭୋକ୍ତା ଇଷ୍ଟବରଦାତା
ଜୀବ ପିତା ମାତା ନାଥ ! ସର୍ବଜ୍ଞ ବ୍ରହ୍ମଙ୍କ
ସ୍ୱୟଂଭୂ ପଦ୍ମସଂଭବ ଭବୋଭବକର୍ଣ୍ଣ
ଅଗତିର ଗତିଦେବ ଦୋଷ କ୍ଷମ ମମ
କୋପାଇଲି ଦେବକାର୍ଯ୍ୟେ ପରୀକ୍ଷା କପଟେ
ସଂହିର ମୋ କାର୍ଯ୍ୟ ଦେବ ଯାଉଛି ଅନ୍ୟତ୍ର

ଏତେ ଭାଷି ହସି ତୋଷି ଚତୁରଆନନେ
ବାହାରିଲେ ବଇକୁଣ୍ଠ ପୁରେ ସେ ସହରେ
ଦେଖିଲେ ସେ ପୁର ବିଶ୍ୱେ ଅତିଚମତ୍କାର
ଜ୍ୟୋତି କାନ୍ତି ଉପାଦେୟ ଆଧାର ବିହୀନ
ମେଢ଼ ବାଡ଼ ଚାଳ ଚୂଳ ସ୍ତମ୍ଭ ତୋରଣାଦି
ସର୍ବ ନାନାବର୍ଣ୍ଣ ଜ୍ୟୋତିକାନ୍ତିରେ ନିର୍ମିତ
ବହିଲେହେଁ ସପ୍ତରଙ୍ଗ ବରନ ଭାସ୍ୱର
ଇନ୍ଦ୍ରଧନୁ ନୋହିବରେ କାର ଶୋଭା ଲକ୍ଷ୍ୟ
ମଧ୍ୟଭାଗେ ଜ୍ୟୋତିର୍ମୟ ପର୍ଯ୍ୟଙ୍କ ବିରାଜେ
ଶଯ୍ୟା ଅପସର ଜ୍ୟୋତିକାନ୍ତିରେ ପ୍ରସ୍ତୁତ
ତାର ପରେ ସୁପ୍ତ ଦେବ କମଳାବିଳାସ
ନୀର ନୀରଦନିନ୍ଦିତ ସୁନ୍ଦର ଶରୀର
ଅନର୍ଘ କିରୀଟଶୀର୍ଷ ପୀତାଂଶୁକଧାରୀ
ଚାରିଭୁଜେ ଗଦାପଦ୍ମ ଶଂଖ ଚକ୍ର ସଦା
କଉସ୍ତୁଭ ବନମାଳା ଉରେ ବିଲମ୍ବିତ
ଆଦରେ ସେବନ୍ତି, ଶ୍ରିୟା ସାରଦା ବେନିହେଁ
ପଦ ସମ୍ବାହନେ ପୁଣି ବଲ୍ଲକୀ ବାଦନେ
ଅଗ୍ରେ ଉଭା ସବିନୟେ ବିନତାତନୟ
ତହିଁ ବିରାଜନ୍ତି ଯେବା ସର୍ବେ ଚତୁର୍ଭୁଜ
ନୀରଦ କାନ୍ତି ବିଗ୍ରହ ଜରାମୃତ୍ୟୁଜୟୀ
ଜୟ ବିଜୟ ବିଜୟ ଦ୍ୱାର ସଂରକ୍ଷଣେ
ପହୁଞ୍ଚିଲେ ଭୃଗୁ ତାଙ୍କ ସନ୍ନିଧାନେ ଆସି
ଦ୍ୱାର ଛାଡ଼ୁଁ ଅଭ୍ୟନ୍ତରେ ପଶି ଋଷିବର
ଉଭା ହେଲେ ସ୍ତମ୍ଭ ନିଭ ବିନା ନମସ୍କାରେ
ସ୍ତୁତିହୀନ ମୁଖେ ଭୟଭ୍ରାନ୍ତି ପରିହରି
ଭୃଗୁ ଆଗମନ ଜାଣି ପୂର୍ବୁ ଅନ୍ତର୍ଯ୍ୟାମୀ
ଶୋଇଲେ ଶଯ୍ୟାରେ ଗାଢ଼େ ବ୍ୟାଜଭାବ ବହି
ଦେଖେଁ କି କରନ୍ତି ଭୃଗୁ ସେ ମୋ ପରୀକ୍ଷକ
ପରୀକ୍ଷା ଦେବେ ସେ ଆଜ ମୋହର ସମକ୍ଷେ

ପଙ୍କିଳପଲ୍ୱଳ ଜଳ ମାପିବାକୁ ଯାଇ
ମାପକ ହୁଅଇ ମାପି ତହିଁରେ ଯେସନ
ପରୀକ୍ଷକ ଶିରୋମଣି ଯେଉଁ ନାରାୟଣ
ପରୀକ୍ଷା କରିବ ତାଙ୍କୁ କିଏ ଏଜଗତେ
ବହୁକାଳଗତ ମାତ୍ର ନ ଭାଙ୍ଗନ୍ତେ ନିଦ୍ରା
ରୋଷେ ଋଷି କଲେ ବକ୍ଷେ ଦକ୍ଷ ପଦାଘାତ
ନିଦ୍ରାମଗ୍ନଜନ ପରି ତେଣୁ ଗଦାଧର
ଚମକି ଉଠିଲେ ଚାଣ୍ଡେ ଋଷିପଦ ଧରି
କହିଲେ ମଧୁର ଗୀରେ ଏସନ ବଚନ
ସୁଧା ସେଚନ ସ୍ୱରୂପେ ଭୃଗୁ ଋଷିବରେ
ହେ ଅମିତତେଜା ! ତବ ଏ କୋମଳ ପଦ
ବ୍ୟଥା ହେଉଥିବ ଲାଗି ମୋ ଦୃଢ଼ ହୃଦୟେ
ଯେହ୍ନେ ପୁଷ୍ପଗୁଚ୍ଛେ ମତ୍ତମାତଙ୍ଗ ତାଡ଼ନା
କ୍ଷମା କର ଋଷିବର । ଶରଣ ମୁଁ ପଦେ
ଶୁଣି ଅଧୋମୁଖେ ଋଷି ରହିଲେ ସଲ୍ଲଜ୍ଜେ
ବର୍ଷା ଜଳେ ଯଥା ଘନ ପର୍ଣ୍ଣ ତରୁତାଳ
କୃତକର୍ମ ପରିତାପେ ଆତ୍ମାକୁ ଧିକ୍କାରି
ପରୀକ୍ଷା କରଣେ କଲି କି କର୍ମ ମୁଁ ମୂଢ଼
ନିଜର ପରୀକ୍ଷା ଦେଲି ନିଜ ଆଚରଣେ
ଏତେ ଚିନ୍ତି ଭକ୍ତିଭାବେ ବିଷ୍ଣୁପଦାଶ୍ରତେ
ପ୍ରଣାମ ଆଚରି ପୁଣି ବେନିପାଣି ଯୋଡ଼ି
ସ୍ତୁତି କଲେ ପ୍ରେମନୀରେ ନିମଜ୍ଜାଇ ମଜ୍ଜା
ନମୋ ନାରାୟଣ ନମୋ ଦେବଦେବେଶ୍ୱର
ବିଶ୍ୱ ପିତାମାତା ଭ୍ରାତା ଅବ୍ୟୟ ଅନନ୍ତ
ଜଗତ ଶରଣ୍ୟ ଶିବ ଜଗତ କରତା
ଅକ୍ରୋଧ ଅଜାଶେତ୍ରୁ ଅବ୍ୟକ୍ତପୁରୁଷ
ପରାତ୍ମା ବିଶ୍ୱାତ୍ମା ଚିଦାନନ୍ଦ ସନାତନ
ସର୍ବଜ୍ଞ ସର୍ବଗ ସର୍ବଦ୍ରଷ୍ଟା ଭଗବନ୍ତ
ଭକତବତ୍ସଳ ଭକ୍ତଭାବେ ହୁଅ ବଶ

ଶ୍ରୀପଦଦ୍ରୋହିର ଦୋଷ କ୍ଷମ ମହାପ୍ରଭୋ !
ଶ୍ରୀଚରଣେ ରହୁ ମନକର୍ତ୍ତବ୍ୟ ମୋହର
ଜାଣିଲି ଜାଣିଲି ନାଥ ହେ କୃପାଜଳଧି
ତିନି ଦେବୁଁ ଶ୍ରେଷ୍ଠ ତୁମ୍ଭେ ଅଟ ବିଶ୍ୱମ୍ଭର
ସତ୍ତ୍ୱ ରଜଃ ତମୋ ମଧ୍ୟେ ସତ୍ତ୍ୱଗୁଣ ଯଥା
ଅବା ବାତପିତ୍ତ କଫେ ଯଥା ବାତ ମୁଖ୍ୟ
ଏ ଭାବେ ସ୍ତବନ୍ତେ, ତାଙ୍କ ଗାଢ଼ ଭକ୍ତି ଦେଖି
କୃପା ଦୃଷ୍ଟି ନିବେଶି ଭାଷିଲେ ହୃଷୀକେଶ
ଆହେ ଋଷିଶ୍ରେଷ୍ଠ ଭୃଗୁ ଜାଣଇଁ ସକଳ
ତୁମ୍ଭ ଆଗମନେ ଯେତେ ଘଟିଅଛି ପଥେ
ଦେବକାର୍ଯ୍ୟ ଲାଗି ନିଜ ମନଃ ପ୍ରାଣ ଦେଇ
କଲ ଯେ କଠୋର କର୍ମ ତ୍ରିପୁରେ ଦୁର୍ଲ୍ଲଭ
ଆଜିଠାରୁ ତୁମ୍ଭ ପଦଚିହ୍ନ, ଗୋଟି ହୃଦେ
ବହିବି ମୁଁ ଜନ୍ମେ ଜନ୍ମେ ଶ୍ରୀବତ୍ସ ଆଖ୍ୟାରେ
ଭକ୍ତ ଶିରୋମଣି ତୁମ୍ଭେ ଜନ୍ମେ ଜନ୍ମେ ମୋର
ରହୁ ଏ କୀରତି ତୁମ୍ଭ ବିଶ୍ୱେ ଚିରକାଳ
ଏତେ କହି ମୌନ ଭଜୁଁ ଦେବନାରାୟଣ
କରିଲେ ପ୍ରୟାଣ ଋଷି ପଦଦ୍ୱନ୍ଦ୍ୱବନ୍ଦି
ଖରେ ସୁରପୁରେ ମିଳି ସୁଧର୍ମା ସଭାରେ
ଆଦ୍ୟୋପାନ୍ତ ଶୁଣାଇଲେ ନିର୍ଜ୍ଜରସମାଜେ
ଶୁଣି ଭୃଗୁବାଣୀ ତହିଁ ସର୍ବେ କଲେ ସ୍ଥିର
ମଧୂତ୍ସବେ ବିଷ୍ଣୁପଦ ପୂଜିବେ ପ୍ରଥମେ
ଦୋଷ କରି ବିନୟୀ ହୁଅଇ ଯେଉଁ ଜନ
ତାଦୋଷ କ୍ଷମନ୍ତି ତୋଷେ ସଜ୍ଜନ ପୁରୁଷ

ଇତି ଶ୍ରୀ ଜରାସନ୍ଧ ବଧ କାବ୍ୟେ ବ୍ରହ୍ମର୍ଷି ଭୃଗୁ ତ୍ରିଦେବ ପରୀକ୍ଷା କରଣେ ନାମ ଦ୍ୱିତୀୟ ସର୍ଗ ।

——

# ତୃତୀୟସର୍ଗ

ଦଳବଳ ସହ ରତ୍ନେ ବସ୍ତ୍ରେ ମଣ୍ଡି ଦେହ
ଆସୁଛନ୍ତି ନିମନ୍ତ୍ରିତ ଦେବେ ଏହି ଭାବେ,
ଆସେ ଆଗେ ଅଳକାରୁ ଦିକ୍‌ପାଳ କୁବେର
ପୁଷ୍ପକ ବିମାନେ କରେ ଧରି ରତ୍ନଛତ୍ର
ଯହୁଁ ବର୍ଷେ ରତ୍ନରାଣି ବାରିବିନ୍ଦୁ ସମେ
ଦଦ୍ରୁବିମଣ୍ଡିତ ଗାତ୍ର ଅଷ୍ଟଗୋଟି ଦନ୍ତ
ଯଥାର୍ଥ କୁବେରନାମ ସାର୍ଥ ହୁଏ ତେଣୁ
ଚୈତ୍ରରଥ-ନାଥ ଯେବା ତ୍ରିପୁରାରି-ମିତ୍ର
ସୁରପୁର କୋଷଘର ଶ୍ରେଷ୍ଠ ଅଧିକାରୀ;
ପ୍ରବେଶ ବରୁଣ ରତ୍ନାକର ଅଧୀଶ୍ୱର
ବସି ମକରବାହନେ ରତ୍ନଦଣ୍ଡ କରେ
ଚଳଚ୍ଛିଦ୍ୟୁନ୍ନିଭା ବିଭା ଯହୁଁ ପରକାଶେ
ଭାସ୍ୱର ରତନ ପୁଞ୍ଜେ ଶୋଭଇ ଶରୀର
ମଣି ମୁକ୍ତା ପ୍ରବାଳେ ଯା ହର୍ମ୍ୟ ବିନିର୍ମିତ,
ଆଗତ ମରୁତ ଦେବ ପୃଷଦଶ୍ୱେ ବସି
ଅବାଧ ଯେ ଅଶ୍ୱ ପୁଣି ଅବାଧ୍ୟ ଯା ଗତି
ଶରୀର ଗରିଷ୍ଠ ଦେବବୃନ୍ଦେ ସୁବଳିଷ୍ଠ
ଶତ୍ରୁ ପଦାକାରୀ ରତ୍ନାବଳୀ ଗଦାହସ୍ତେ;
ପ୍ରବେଶେ ହୁତାଶ ଆସି ବସି ରୋହିତାଶ୍ୱେ
ଶରୀର ଲୋହିତ ବର୍ଣ୍ଣ ହୃଦେ ଜ୍ୱାଳାମାଳା
ସପ୍ତଗୋଟି ଲୋକଜିହ୍ୱା ଭ୍ରମାଏ ସତତ
ଦୁଃସହ ତେଜସ୍ୱୀ ପୁଣି ସର୍ବଦ୍ରବ୍ୟଭକ୍ଷୀ;
ପ୍ରବେଶଇ ଯମ କାଳଦଣ୍ଡ ପାଶ କରେ
ମହିଷ ଆସନେ କାଳବିକାଳ ସହିତ
କୃଷ୍ଣବର୍ଣ୍ଣଗାତ୍ର ପୁଣି ଆରକ୍ତ ଲୋଚନ

କୁତ୍ସିତ ବ୍ୟାଧିରେ ପଦଯୁଗଳ କୁତ୍ସିତ
ଆଗତ ନୈର୍ଋତ ଜବ, ବସି ଶବ ଯାନେ
ଭୀଷଣ କୁଠାର ଶସ୍ତ୍ର ଧରି ବାମକରେ
ଜଟା ବିମଣ୍ଡିତ ଶିର ଭୀଷଣ ଶରୀର
କରାଳ ବଦନ ଶ୍ୱାନ ଯୁଗଳ ସଙ୍ଗତେ,
ପ୍ରବେଶିଲେ ପୁଣି ଖରେ ସଭାସ୍ଥଳେ ଗ୍ରହ
ମଣ୍ଡିତବିଗ୍ରହ ଦିବ୍ୟ ବସ୍ତ୍ର ଅଳଂକାରେ,
ଚନ୍ଦ୍ର, ସ୍ନିଗ୍ଧ କରେ ତୋଳି ସୁଧାପୂର୍ଣ୍ଣଭାଣ୍ଡ
ଅପରୂପ ରୂପେ ମୋହି ତ୍ରିଦିବନିବାସୀ,
ରବି, ଗଞ୍ଜି ତେଜଃପୁଞ୍ଜେ ଆନର ନୟନ
ଅମଳ କମଳ କରେ ଏକଚକ୍ର ଯାନେ;
ବୁଧ ନୀରଦସୁନ୍ଦର ରଜତାଭଗାତ୍ର
କନକଚମ୍ପକ ଫୁଲମାଳ କରେ ବହି,
ନାମେ ଯେ ମଙ୍ଗଳ ମାତ୍ର କାମେ ଅମଙ୍ଗଳ
ମଙ୍ଗଳ ସ୍ୱହସ୍ତେ ତୋଳି ମୁଷଳ ଦୁର୍ବାର,
ବକ୍ରଦୃଷ୍ଟି ଅଟେ ଯାର ଅଶନି ସମାନ
ନିର୍ମାଂସଶରୀର ଶନି ଚିତ୍ରଧ୍ୱଜ ହସ୍ତେ;
ରାହୁ ଭୀଷଣ ବଦନ ଭୀଷଣ ରଦନ
ମାଂସ-ଗୃଧ୍ନୁ ଗୃଧ୍ର ପରେ ରୁଷ୍ଟତୁଷ୍ଟମନେ
କେତୁ କବନ୍ଧ ସ୍ୱରୂପୀ ବସି ସରୀସୃପେ
ବକ୍ଷୋଦେଶେ ବିରାଜେ ଯା ଭୀଷଣ ନୟନ
ପ୍ରବେଶ କୁମାର ସୁରସାରି ସେନାପତି
ଅଭିରାମ ପିଣ୍ଡ ଯାର ଷଟଗୋଟି ମୁଣ୍ଡ
ମୟୂରବାହନେ ଶତ୍ରୁଞ୍ଜୟ ଶକ୍ତି ହସ୍ତେ
ବୀର ଶୂର ସୁରସେନା ସଙ୍ଗେ ସାଡ଼ମ୍ବରେ;
ପ୍ରବେଶ ଗଣେଶ ଶିର ସିନ୍ଦୂରେ ମଣ୍ଡିତ
ଦିବ୍ୟ ପାଷାଙ୍କୁଶ କରେ ଇନ୍ଦୁରବାହନେ
ସୁଦୀର୍ଘ ଉଦର ଯାର ବିଦ୍ୟାରଭଣ୍ଡାର
ନିଜ ଗଜ ମୁଣ୍ଡ ଶୁଣ୍ଡ ଦୋଳାଇ ଖେଳାଇ;

ଆସେ କ୍ଷେତ୍ରପାଳ ବସି ଶ୍ୱେତଅଶ୍ୱ ପରେ
ସୁରପୁର ରକ୍ଷାକାରୀ ପରୀକ୍ଷକ ଯେବା
ଅନର୍ଗଳ ବଳ ଯାର ବାୟୁସମ ଗତି
କରେ ଘେନି ନବୀନ ଶାଣିତ କୁନ୍ତବର;
ଆସନ୍ତି ନୀରଦେ ନୀଳକାନ୍ତ ଦ୍ୟୁତି ବହି
ଘଡ଼ ଘଡ଼ ଚଡ଼ ଚଡ଼ ସଂରାବ ସମ୍ବରି
କୋଳେ ଘେନି ସ୍ୱର୍ଣ୍ଣବର୍ଣ୍ଣ ଚପଳା-ଅବଳା
ଶିରେ ଶୋଭେ ସପ୍ତରଙ୍ଗ ରଞ୍ଜିତ ଶିରସ୍ତ୍ର;
ପ୍ରବେଶ ସାରଦାଦେବୀ ସୁବିଶଦଗାତ୍ରୀ
ବଲ୍ଲକୀ ଝଙ୍କାରି କରେ ଦିବ୍ୟବେଶ ବହି
ସର୍ଗେ ଶିଖଣ୍ଡୀ ପିଣ୍ଡ ମଣ୍ଡି ସୁଯତନେ
ଶିଳ୍ପ କଳା ବିଜ୍ଞାନ ବିଦ୍ୟାର ଅଧିଷ୍ଠାତ୍ରୀ;
ପ୍ରବେଶ ସେ ଆଦ୍ୟାଶକ୍ତି ସର୍ବ ଶକ୍ତୀଶ୍ୱରୀ
ଭୀଷଣ ସୁତୀକ୍ଷ୍ଣ ଶକ୍ତି ଘେନି ଦକ୍ଷକରେ
ହର୍ଯ୍ୟକ୍ଷବାହନେ ବକ୍ଷେ ମନ୍ଦାରରମାଳ
ଶୋକ ଦୁଃଖ ନାଶିନୀ ଯେ ଆପଦଧ୍ୱଂସିନୀ;
ଆସିଲେ ସେ ବିଶ୍ୱକର୍ମା ସୁରଶିଳ୍ପୀ ଶ୍ରେଷ୍ଠ
କର୍ମଠ ଅଟନ୍ତି ଯେବା ସ୍ଥପତି କରମେ
ଚାରୁକାରୁ କର୍ମେ ଗଢି ରତ୍ନପୀଠଦ୍ୱୟ
ରତ୍ନାଙ୍କିତ ଦନ୍ତିଦନ୍ତ କଙ୍କତିକା ଘେନି;
ଆସିଲେ କନ୍ଦର୍ପରାଜା ତ୍ରିଭୁବନଜୟୀ
ନୀରଦ ସୁନ୍ଦର କାନ୍ତି ଦିବ୍ୟ ମନୋହର
କଳେବର ମଣ୍ଡି ଯତ୍ନେ ସୁବାସ କୁସୁମେ
ପୁଷ୍ପଧନୁ ପୁଷ୍ପବାଣ କରେ ସରାଗରେ
ଘେନି ରୂପବତି ରତି ସତୀଶିରୋମଣି
ଶୋଭେ ପୁଷ୍ପେ ଦୁକୂଳେ ଯା ଶ୍ରୀଅଙ୍ଗ ବରାଙ୍ଗ;
ବାଳଚପଳସ୍ୱଭାବ ଅଠାଶୀ ସହସ୍ର
ଶିଷ୍ୟଘେନି ବାଳଖିଲ୍ୟା ଆସିଲେ ଚପଳ,
ବୃଦ୍ଧାଙ୍ଗୁଷ୍ଠ ପରିମିତ ବିଗ୍ରହ ସୁନ୍ଦର

ଉଲଗ୍ନ ଶରୀର କାମଗତି ବ୍ରହ୍ମଯତି;
ଆଉ ଆଉ ଜପୀ ତପୀ ଯତି ବ୍ରହ୍ମଚାରୀ
ମିଳିଲେ ସେ ସ୍ଥାନେ ଘେନି ଦଣ୍ଡକମଣ୍ଡଳୁ
ବସିଲେ ରତନ ଯୋଜ୍ୟ ଯୋଗ୍ୟ ସଞ୍ଚ ମଞ୍ଚେ
ସଭାଗୃହ ଶୋଭା ବହେ ଅପରୂପ ଭାବେ;
କିଛିକ୍ଷଣ ପରେ ନିମନ୍ତ୍ରିତ ତିନିଦେବେ
ଉପସ୍ଥିତ ହେଲେ ଆସି ସ୍ୱର୍ଗ ସଭାମଧ୍ୟେ
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଦଳବଳ ଘେନି
ବସି ହଂସ ବୀଶ ବୃଷ ଯାନମାନ ପୃଷ୍ଠେ
ରୂପସୀ ସାବିତ୍ରୀ ରମା ଉମା ଅଙ୍କେ ଗ୍ରହି
ବିମଣ୍ଡିତ ଅସ୍ତ୍ର ବସ୍ତ୍ର ଭୂଷା କଳେବରେ,
ଚାହିଁ ସର୍ବେ ଉଭା ହୋଇ ବନ୍ଦିଲେ ପୟର
ସ୍ତୁତି ବାକ୍ୟେ ତିନିଦେବଙ୍କର ଯଥୋଚିତେ,
ତଦନନ୍ତରେ ଦ୍ୱିଦେବେ ପାର୍ଶ୍ୱାସନ ଦେଇ
ମଧ୍ୟାସନେ ବସାଇଲେ ରମା ରମେଶ୍ୱର
ପୂଜିଲେ ଦମ୍ପତିପଦ ସଭାସଦ ବର୍ଗ
ଇନ୍ଦ୍ର ଚନ୍ଦ୍ର ଗୁରୁ ଭୃଗୁ ଆଦି ଜୟନାଦେ
ବଜାଉଁ ଅସଂଖ୍ୟ ଶଙ୍ଖ ମୁରଜ କଂସାଳ
ଦୁନ୍ଦୁଭୀ ପଣବ ଢକ୍କା ବୀଣା ବେଣୁ ଆଦି
ସ୍ୱର୍ଗୀୟ ବାଦିତ୍ର ଧରି ସ୍ୱର୍ଗୀୟ ବାଦକେ
ଚମକିଲା ସୁରପୁର ବାଦ୍ୟନାଦ ଘୋଷେ,
ଆଦ୍ୟେ ପାଦ୍ୟ ଅର୍ଘ୍ୟ ପରେ ଦେଲେ ମଦୁପର୍କ
ତଦନ୍ତେ ନିଯୋଗି ଦେଲେ ମଣିପୀଠ ଦ୍ୱୟ
ଗଙ୍ଗାନୀର ଭରା ଶତ ଶତ ସ୍ୱର୍ଣ୍ଣକୁମ୍ଭ
ଅଣାଇ ରଖିଲେ ପାଶେ ସ୍ନାନର ସକାଶେ
ବେନି ଶ୍ୱେତହସ୍ତୀ ଶୁଣ୍ଢେ ଘେନି କୁମ୍ଭମାନ
ବରଷିଲେ ଉଭୟଙ୍କ ଶିରେ ଧୀରେ ଧୀରେ
ସ୍ନାନ ଅନ୍ତେ ଝୀନବାସେ ପୋଛି ବେନିଅଙ୍ଗ
କ୍ଷୌମବାସ ରତ୍ନଭୂଷା ମଣ୍ଡିଲେ ଯତନେ

ବିଷ୍ଣୁଅଙ୍ଗେ ଜିଷ୍ଣୁ ରମା ଅଙ୍ଗେ ଜିଷ୍ଣୁବାମା
ବାଛି ଗଛି ସ୍ୱର୍ଗକୋଷୁଁ ଆଣି ଯୋଗ୍ୟ ଜାଣି
ବିଲେପିଲେ ଘୋରି ହରିଚନ୍ଦନ ସ୍ୱରସ
ସରସ ଭଜିଲା ବେନିଅଙ୍ଗ ଶୋଭା ଘେନି
ପାରିଜାତ ପୁଷ୍ପମାଳ ଉରେ ଲମ୍ବାଇଲେ
ଶିରେ ନିବେଶିଲେ ପୁଣି ସୁଚାରୁ ସ୍ତବକ
କୃଷ୍ଣାଗୁରୁ କାଳୀୟକ କ୍ଷୌଦେ ଦେଲେ ଧୂପ
ନୀରାଜନା କଲେ ଜାଳି ଶ୍ରୀକର୍ପୂର ରଜଃ
ବାସ ଚହଟିଲା ବାସେ ମହମହ ହୋଇ
ପ୍ରମୋଦ ଭଜିଲେ ତହିଁ ଦମ୍ପତିଯୁଗଳ,
ଦିବ୍ୟପାତ୍ର ଗାତ୍ରେ ତହୁଁ ଅମୃତ ଭୁଞ୍ଜାଇ
ରଞ୍ଜାଇଲେ ଦମ୍ପତିମତି କି ସୁ ଭକ୍ତିରେ
ଆଚମନ ଲାଗିଦେଲେ ସୁବାସିତ ନୀର
ସ୍ୱର୍ଗଙ୍ଗାରୁ ଆଣି ଛାଣି ଭୃଙ୍ଗାରେ ତା ଭରି
ସୁରେ ବିଦ୍ୟାଧରେ ଶିରେ କଲେ ପୁଷ୍ପବୃଷ୍ଟି
ହରଷ ଭଜିଲା ସୁରସୃଷ୍ଟି ସେହିକାଳେ;
ଧରେ ଶକ୍ର ଶ୍ୱେତଛତ୍ର ଆଦିତ୍ୟ ତରାସ
ଚାଳଇ ଚନ୍ଦ୍ରଚାମର ମରୁତ ଆଲଟ
ବରୁଣ କୁବେର ଦୁହେଁ ବିଜନ୍ତି ବ୍ୟଜନ
ଆନ ଆନ ଦେବେ ସେବେ ନାନା ଉପାୟନେ
ବିଭୁ ଗୁଣ ଗୁଣି ପୁଣି ବନ୍ଦି ଶ୍ରୀଚରଣ
ଷୋଡ଼ଶୋପଚାରେ ଆଚରିଲେ ପୂଜାବିଧି
ପୁରତେ କରନ୍ତି ନୃତ୍ୟ ସଙ୍ଗୀତ ଆଳାପି
ଗନ୍ଧର୍ବୀ କିନ୍ନରୀ ବିଦ୍ୟାଧରୀ ଅପସରୀ,
ତଦନ୍ତେ ଦ୍ୱିଦେବେ ପୂଜା ଜ୍ୟେଷ୍ଠାଜ୍ୟେଷ୍ଠ ମତେ
ବହିଲେ ବିଷ୍ଣୁଙ୍କ ତୁଲ୍ୟ ଷୋଡ଼ଶ ବିଧାନେ;
ଗନ୍ଧର୍ବାଧିନାଥ ଚିତ୍ରରଥର ଅନୁଜ
ଶୂରବୀର ସୁନ୍ଦର ଅଟଇ ଯୁବାମଣି
ନାମ ତା ବିଚିତ୍ରରଥ ନିତାନ୍ତ ଦୁର୍ଦ୍ଦାନ୍ତ

ଅବାଧ୍ୟସ୍ୱଭାବ ପୁଣ ଅସାଧ୍ୟ ଲକ୍ଷଣ
ତିନିମିତ୍ର ସଙ୍ଗେ ଘେନି ନିଜ ଇଚ୍ଛାମତେ
ଭ୍ରମୁଥାଏ ଯହିଁ ତହିଁ କରି ଦୁଷ୍କର୍ମ
ତିନିମିତ୍ର ସଙ୍ଗେ ତାର ଅଭିନ୍ନହୃଦୟ
କାର୍ଯ୍ୟ କରୁଥାନ୍ତି ତେଣୁ ଆଜ୍ଞାମତେ ତାର;
ମିତ୍ରତ୍ରୟଙ୍କ ସଙ୍ଗତେ ସଭାଗୃହେ ବସି
ଦେଖୁଥିଲା ସ୍ୱର୍ବେଶ୍ୟାଙ୍କ ନୃତ୍ୟ ମଧୁସ୍ୱବେ
ଏକେ ସେ ସୁନ୍ଦର ତହିଁ ଯୌବନ ସମୟ
ପୁଣି ଯଉବନ ମଦେ ମତ୍ତ ସେ ଗନ୍ଧର୍ବ
ଏକର ପ୍ରତାପ ଯହିଁ ହୁଏ ଭୟଙ୍କର
ତ୍ରିତୟ ଏକତ୍ର ଯହିଁ ତାର କଥା କିବା;
ରୂପେ ହେଲେ ଭଲ ମାତ୍ର ଗୁଣେ ହେଲେ ଶଲ
ତହିଁରେ କି ଫଳ ପକ୍ୱ ମହାକାଳ ଯଥା,
ଦେଖି ଚିତ୍ରରେଖା ନୃତ୍ୟ ସଙ୍ଗେ ତାର ରୂପ
ମନ୍ଦନେ ଆବେଶ ଯେହ୍ନେ ପୁଷ୍ପେ ପୁଷ୍ପକିଟ
ଲଜ୍ଜା ତେଜି କହେ ନିଜେ ସଖାଙ୍କୁ ଏକାନ୍ତେ
ପ୍ରାଣ ବିସର୍ଜିବି ସଖେ ! ଚିତ୍ରରେଖା ଲାଗି
ନ ଲଭିଲେ ତାକୁ ଆଜ ବ୍ୟାଜ ନୁହେ ବାଣୀ
ଜୀବନ ବିହୀନେ ମୀନଜୀବର ସମାନ
ଜାଣି ଅଭିନ୍ନ ହୃଦୟ କଲି ନା ଉଦୟ;
ବିପଦେ ଯେ କାର୍ଯ୍ୟକରେ ସେ ଯଥାର୍ଥ ବନ୍ଧୁ
ତୁମ୍ଭେତ ବିଶ୍ୱସ୍ତ ବନ୍ଧୁ ବ୍ୟର୍ଥ ହେବ କିକେ
ଦେବି ବସ୍ତ୍ର ଅଳଙ୍କାର ମନୋରଥ ପୂର୍ଣ୍ଣେ
ମୋର ଧାର୍ଯ୍ୟ ମତେ କାର୍ଯ୍ୟ କରି ରଖ ପ୍ରାଣ
ବସନ୍ତ ସମୟ ପୁଣି ବସନ୍ତ ଉତ୍ସବ
ନିଜେ ବିଜେ ପୁଷ୍ପଧନ୍ୱା କି କହିବି ଆଉ
ପ୍ରାଣ ଦହେ ଅବିରତ ତାର ରୂପରାଶି
ଭାବ ହାବ ରଙ୍ଗ ନୃତ୍ୟ ହୃଦେ ସ୍ମରି ସ୍ମରି
ସୁତହତ ଜନନୀର ଜୀବନ ଯେସନ

କି ଛାର ରତନ ଧନ ସମ୍ମାନ ସଂଭ୍ରମ
ବିକିବି ତା' ପଦତଳେ ଅମୂଲ୍ୟ ଜୀବନ
ଦାସ କିବା ଛାର ଅଙ୍ଗବାସ ତା ଧୋଇବି
ପ୍ରଭୁ କରି ପଦତଳେ ଖଟୁଥିବି ନିତ୍ୟ
ଯାଅ ମିତ୍ରେ କାର୍ଯ୍ୟକର ଯାଇ ଅବିଳମ୍ବେ
କାୟା ସଙ୍ଗେ ଛାୟାବତ ଯିବି ମୁଁ ପଶ୍ଚାତେ
ଦିବ୍ୟବାସ ରତ୍ନଭୂଷା ନିଅ ହେ ଆବର
ଦିଅ ତା ଶ୍ରୀକରେ ତୋଷି ସରସ ବଚନେ
ଜଣାଅ ମଣାଅ ହାସ ରସ କଉତୁକେ
ଦୂତୀ ବେଶ ବହି ମିତ୍ର ଜୟସେନ ତୁମ୍ଭେ
ନୃତ୍ୟଶେଷେ ଯାଇ ତାର ବସିଥିବା ବାସେ
ରହସ୍ୟେ କହିବ କାର୍ଯ୍ୟ ନୋହିବ ପ୍ରକାଶ,
ମିତ୍ର ସତ୍ୟସେନ ଯାଅ ସଙ୍ଗେ ତାହାଙ୍କର
କରିବ ଏକାର୍ଯ୍ୟ ନିଜେ ନିଷ୍କଣ୍ଟକ ପାଇଁ
କଣ୍ଟକ ଦଣ୍ଡ ଦୋର୍ଦ୍ଦଣ୍ଡେ ବହି, ପନ୍ଥା ମଣ୍ଡ
ଯେ ଆସେ ତଦ୍ଦଣ୍ଡେ ପିଣ୍ଡେ ଦଣ୍ଡ ସେହି ଦଣ୍ଡେ
ଭୟେ ନ ପଶିବେ ପାନ୍ଥେ, ଆସିବା ପନ୍ଥାରେ
ଆସିଲାରୁ ପଥେ ଆଣ୍ଟେ କଣ୍ଟକ ନିରୁଦ୍ଧ;
ମିତ୍ର ବୃଦ୍ଧସେନ ତୁମ୍ଭ କାର୍ଯ୍ୟ ଗୁରୁତର
ନ ସ୍ପୃଷ୍ଟ ଚିନ୍ତାକୁ ମୋ ସକାଶେ ସହ କଷ୍ଟ
ଅଶ୍ୱତରୀ ଏକଗୋଟି ଯୋଟି ପୃଷ୍ଠେ ବସି
ସେ ଯୋଷାକୁ କହି ବହି ଆଣିବ ତା ପୃଷ୍ଠେ
ଅଳ୍ପ ଦୂରେ ରହି ପଥ ଥିବି ମୁଁ ଅନାଇ
ଆସିଲାରୁ ବଳେ ଘେନି ବହିବି ମୁଁ ପୃଷ୍ଠେ
ବଳେ ଘେନି ଚଳେ ଯଥା ହରିଣୀ କି ହରି
ଏ ଉପାୟ ସାର ସଖେ ! କହିଲି ତୁମ୍ଭଙ୍କୁ
ମୋ ମନେ ତୁମ୍ଭମାନଙ୍କ ମାନସେ ଯା ଆସେ
ଥିଲା ସେ ଦୁର୍ବୃତ୍ତ ପୁଣି କାମେ ଆସକତ
ରୁହନ୍ତା କି ହିତାହିତ ତହିଁରେ ତାହାର ?

କାମ ବାମ ହେଲେ ମାନବର ଏହି ଦଶା
ଅସାର କଳ୍ପନା କରେ ସ୍ୱୀୟ ମନେ ସାର
ମିତ୍ରମାନେ ଯେଣୁ ତାର ଆଜ୍ଞାବହ ଭୃତ୍ୟ
କରନ୍ତେ ସେ ଆନ କିପାଁ ତା କଥନ କଥା
ତଦନ୍ତେ ଚାରିହେଁ ମିଶି ସ୍ୱକର୍ମ ସାଧନେ
ପ୍ରସ୍ତୁତ ହୋଇ ନିଃସୃତ ହେଲେ ସେହି ସ୍ଥାନୁ
ଚଳେ ତିନି ଦସ୍ୟୁ ଘେନି ଯେହ୍ନେ ଦସ୍ୟୁପତି;
କାମବଶେ ବାମବୁଦ୍ଧି ସେ ବିଚିତ୍ର ରଥ
ପଥେ ରହି ମନେ ମନେ ଭାବେ ଏହି ଭାବେ
ରେ କର ଆତୁର ନୁହ ଧୈର୍ଯ୍ୟଧର କ୍ଷଣେ
ସବୁଠାରୁ ଆଗେରେ ହୋଇବୁ ଗିରିଧର,
ରେ ମୁଖ ବିମୁଖ କିପାଁ ରହ ସ୍ଥିର ହୋଇ
ଅବିଳମ୍ବେ ହୋଇବୁରେ ତୁ ମଧୁସୂଦନ
ରେ ନେତ୍ର ସୁତପ୍ତ ନୀରେ ଧୋଉ କିପାଁ ଗାତ୍ର
ସୁତୃପ୍ତ ହୋଇବୁ ଚାଣ୍ଡେ ଲଭି ଗଙ୍ଗାନୀର
ଚମକି ପଡୁକି ନାଦେ ରେ ଅବୁଝାକର୍ଣ୍ଣ
ବୀଣା ସ୍ୱନେ ହେବୁ ରହ ଅଚିରେ ସ୍ତବ୍ଧ
କିପାଇଁ ବ୍ୟାକୁଳ ଆରେ କୋମଳ ହୃଦୟ
ସଂସ୍ପର୍ଶ କରକାପିଣ୍ଡ ଶୀତଳିକୁ ଚାଣ୍ଡେ
ବିଶୃଙ୍ଖଳୀତାସ କିପାଁ ଆରେ ଅଙ୍ଗଦେଶ
ଭଳିବୁ ସରସ ହେଲେ ଲତାରେ ବେଷ୍ଟିତ
କର୍ଣ୍ଣନେତ୍ର କିପାଁ ଦୁହେଁ ଲଗାଅରେ ବାଦ
ମନ ମଧ୍ୟସ୍ଥତା ନେଲେ ମେଣ୍ଟିବ କଳହ;
ଏଥୁଅନ୍ତେ ଜୟସେନ ବହେ ନାରୀ ବେଶ
ଦିବ୍ୟ ପୀଠପୃଷ୍ଠେ ବସି ବାସଭୂଷା ରଖି
ଦନ୍ତୀଦନ୍ତ କଙ୍କତିକା ଘେନି ଦକ୍ଷହସ୍ତେ
କୋରନ୍ତେ ମୁକୁର ଦେଖି, ଚିକୁର ଏଲକ୍ଷ୍ୟ
କଳା କଲ୍ଲୋଳମାଳିନୀ କାଳିନ୍ଦୀକଲ୍ଲୋଳେ
ଗତାଗତେ ଖେଳେ ବାଳମରାଳ କି ଏକ;

ଚିରି କେଶରାଶି ଶିରେ ନିବାନ୍ଧୁ ସୀମନ୍ତ
ଶୋଭେ, ନୀଳନଭେ ରମ୍ୟ ଛାୟାପଥ ଯଥା,
ସୁଗନ୍ଧତୈଳ ଶାମଳି ଯତ୍ନେ ଖୋଷି ଖୋଷା
ତା ପରେ ମଣ୍ଡିଲା ଚାରୁ ରତ୍ନ ଫୁଲଝରା
ଜଗଜ୍ଜୟ ଆଶା ପୋଷି କି ଅବାରେ ମାର
ଜୟକେତୁ ଉଡ଼ାଇଲା ନୀଳଶୈଳ ଚୂଳେ,
ଅଳିକେ ଅଳକାବଳୀ କୁଞ୍ଚିତ ସୁସଞ୍ଚେ
ଫୁଲ୍ଲାରବିନ୍ଦେ କି ବେଢ଼େ ମିଳିନ୍ଦମାଳିକା
ଅବା ଚକୋରପାଳିକା ଚନ୍ଦ୍ରୁଁ ସୁଧା ଚୁମ୍ବେ;
ମାଥେ ମଥାଢାଲି ଯଥା ବ୍ୟୋମେ ତାରାବଳୀ
ଅଧରେ ତାମ୍ବୁଳ ବୋଳ ପକ୍ୱ ବିମ୍ବ ରୁଚି
କର୍ଣ୍ଣେ କର୍ଣ୍ଣଫୁଲ ଶୋଭା ପ୍ରଭାରେ ଅତୁଳ
ଶ୍ରୁତିପାଶେ ବଦ୍ଧ କିସେ କବି ବାଚସ୍ପତି
ଶ୍ରୁତିନାମ ବହୁଁ ତାକୁ ହାରି ଶବ୍ଦଜ୍ଞାନେ,
ଲୋଚନେ କଜ୍ଜ୍ୱଳରେଖା ଧୈର୍ଯ୍ୟଧ୍ୱଂସକରୀ
ତେଣୁ ଏ ଉପମା ଆସି ମାନସେ ପ୍ରବେଶେ
କାମ ଶ୍ୟାମ-ଅହି ନେତ୍ର ପେଟିକା ଫିଟାଇ
ଧାଏଁ ପଶିବାକୁ କିବା ଶ୍ରବଣବିବରେ
ନାସିକା ଗରୁଡ଼େ ଡରି ଭକ୍ଷ୍ୟ ଯେଣୁ ତାର;
ବିଶାଳ କପାଳେ ଶୋଭେ ସିନ୍ଦୂର ସୁବିନ୍ଦୁ
ଅର୍ଦ୍ଧଇନ୍ଦୁ କୋଳେ ବାଳରବି କିସେ ବସେ;
ଝଲକେ ଅଖଣ୍ଡଗଣ୍ଡେ ଚିବୁକେ ଆବର
ମକରୀ ଭ୍ରମରୀ ଚାରୁଚିତ୍ର ମୋହେ ଚିତ୍ତ
ସରସ୍ୱତୀ ସୈକତେ କି ସୁଷୁପ୍ତ ମକର
ମଧୁକୋଷେ ବସେ କିସେ ମକ୍ଷିକା ବିରଳେ;
ନାସେ ଗଜମୋତି ଜିତେ ଚିତ୍ରାର ଜ୍ୟୋତିକି
ଦଣ୍ଡୀ ରହି ଦଣ୍ଡଦେବା ଇଚ୍ଛଇ ବିଶାଖେ
ନଥ ମନମଥ ଚକ୍ରେ, ବସୁଣି ତା ଘନେ,
ହୃଦେ ମୁକ୍ତାହାର। ପୁଣି ହୀରକ ପଦକ

କୃତ୍ରିମ ଉଚ୍ଚ ଉରଜୋପରି ବିରାଜିତ
ଶମ୍ଭୁଶିରେ କିସେ ଅମ୍ବୁସ୍ରୋତ ସିତାମ୍ଭୋଜ;
କରଦ୍ୱୟେ ରତ୍ନଚୂଡ଼ୀ ଅଙ୍ଗଦ ମୁଦ୍ରିକା
ମୃଣାଳେ ବେଷ୍ଟିତ ଯଥା ନାନାବାଳ ବ୍ୟାଳ;
ପଦେ ଶ୍ରବଣତର୍ପଣ କ୍ୱଣିତହଂସକ
ନାଦେ ବାଦ ରଚେ ଯେହ୍ନେ କଳହଂସକୁଳେ;
ଅଙ୍ଗେ ଚୋଳ ସମୁନ୍ନତ ଉଚ୍ଚକୁଚ ଦେଶେ
ହେମ ଭୂମେ ଟେକିଛି କି କାମ ତମ୍ବୁଘର
ସୁବେଷ୍ଟିତ କଟିତଟେ ରଙ୍ଗ ପାଟଶାଢ଼ୀ
ସୁସ୍ୱନା ରସନା ଦାମ ବିରାଜଇ ତହିଁ
ଲୀଳା ଅରବିନ୍ଦ ଗୋଟି ଯୋଚି ଦକ୍ଷହସ୍ତେ
ବାମ ପଦ ଅଗ୍ରେ କ୍ଷେପି ଚାଲେ ଧୀରେ ଧୀରେ
କରେ ମାର ଗୁପତେ କି ସଙ୍ଗତେ ପ୍ରୟାଣ
ପୁଷ୍ପଶର ସାରସନ ମଞ୍ଜୁସାଞ୍ଜୁ ଘେନି;
ଶୀତାଂଶୁକ ଉପରାଣ ଥିଲେହେଁ ମସ୍ତକେ
ନୟନେ କଟାକ୍ଷ ମୁଖେ ହାସ କରେ ବାସ
ଯଥା ବିଷ୍ଣୁ ମୋହିନୀ ମୂରତି ମୋହେ ମନ;
ମଣିଲେ ମହିଳା କେହି ନଗଣିଲେ ପୁଂସେ
ରଜତମୂର୍ତ୍ତିରେ ଯେହ୍ନେ କନକ ରସାଣ,
ଅଶ୍ୱତରୀ ଘେନି ରହେ ବୃଦ୍ଧସେନ୍ ଦୂରେ
ପ୍ରବେଶ ସେ ଚିତ୍ରରେଖା ବସିବା ସଦନେ
ଦେଖି ସସ୍ମିତବଦନେ ତାକୁ ଓଳଗନ୍ତେ
ଆଦରିଲା ଚିତ୍ରରେଖା ସ୍ୱର୍ଗଅପସରୀ
ବସାଇ ସ୍ୱପାଶେ ପୁଚ୍ଛେ ସ୍ୱାଗତବାରତା
ଶୁଣି ସେ କହିଲା ଭାଳି ଛଳି ଏହି ଭାବେ
ମୁଁ ସେ ଜୟସେନ ନାରୀ ମୋ ନାମ ମୋହିନୀ
ଇଚ୍ଛିତା ହୋଇଲେ ସିନା ପୁଚ୍ଛିବି କଥାଏ
ନାଗରୀ ରତନେ ହୀରା ପରା ତୁ ସୁନ୍ଦରି !
ନାଗରବନ୍ଧନ ବିଦ୍ୟା ଅଛି ତୋଠି ଭଲେ

ଯନ୍ତ୍ର ମନ୍ତ୍ର ମହୌଷଧି ନଥିବ କିପାଇଁ
ଅଗୁଣ୍ଠୁରେ ଜାଣୁ ତା ଲୋ ! ସ୍ୱୟଂସିଦ୍ଧାଭାବେ
ଜୀବନ୍ତକୁ ମାରିପାରୁ ତାରିପାରୁ ତୁହିଁ
ତେବେ ମାରାତ୍ମକ ଅସ୍ତ୍ର ଶସ୍ତ୍ର ବହୁ କି କେ
କଟାକ୍ଷ ସୁତୀକ୍ଷ୍ଣବାଣ ଭୂରୁ ଶରାସନ
ବାହୁପାଶ କୁଚକ୍ରେ କରଜ କଟାରୀ
ନିତମ୍ବମଣ୍ଡଳ ଢାଳ ନାହିଁ କି ତୋ ଅଙ୍ଗେ
ଅବଳା ତୁ ନୋହୁ ବୀର ଅଟୁ ଲୋ ନିକର
ମହାବଳିକି ଦୁର୍ବଳ କରୁ କ୍ଷଣମଧ୍ୟେ
ଲୋଡ଼ା ପଡ଼େ ତାକୁ ଦୁଗ୍ଧ ଘୃତାକ୍ତଶର୍କରା
ଭୀରୁ ମଧ୍ୟ ନୋହୁ ସ୍ମର ସଙ୍ଗର-ରଙ୍ଗିଣୀ
ସଦା ବିଜୟିନୀ ତୋତେ କେ ଜିଣେ ସେ ରଣେ
ରୂପ ଗୁଣ ଗାଇବାକୁ ଅକ୍ଷମ ଲୋ ମୁହିଁ
ତଡିଲ୍ଲତା ସହ ଆନଲତା କେ ସେ ଯୋଡ଼େ
ଶୁଣି ତାରବାଣୀ ସ୍ମିତ ହାସ ସେ ପ୍ରକାଶି
ବୋଲେ କେତେ କଥା ତୋତେ ଆସେ ଲୋ ମୋହିନ !
କିବା ଭାବିଅଛୁ ଚିତ୍ତେ ପୁଚ୍ଛିବାକୁ ମୋତେ
କହ କହୁଁ କହେ ତହୁଁ ମୋହିନୀ ଏସନ
ବୁଭୁକ୍ଷିତ ଭ୍ରମରଲୋ ପଦ୍ମିନୀର ମଧୁ
ଚୁମ୍ବନେ ପେଶିଛି ଦୂତ ଧୀର ସମୀରଣେ
ଆନେ ନ ମାନଇ ମନ ମନ ତହିଁ ମାତ୍ର
ଯେହ୍ନେ ମୀନ ଜୀବନର ଗତି ଜୀବନ ହିଁ
କିଂ କର୍ତ୍ତବ୍ୟ ଆସିଅଛିଁ ପୁଚ୍ଛିବାକୁ ତାହା
କହ ସଖି ! କି ବିଚାର ଉପଚାର ତାର
ହେଉଛି ଉଚ୍ଛୁର ଯିବି ଉଦନ୍ତ ମୁଁ ଘେନି
ତୋ କୃପା ଉପରେ ସିନା ନିର୍ଭର ଉତ୍ତର
ଶୁଣି ଭାଷେ ଅପସରୀ ଭାବୁ ବିପରୀତ
ବିପରୀତ ବୁଦ୍ଧି କି ସେ ଭ୍ରମର ପାମର
ପଦ୍ମିନୀର କି ଶକତି ଭାବ ଲୋ ମୋହିନି !

ସୁରବର କର ଗ୍ରହି ସିନା ଆହ୍ଲାଦିତା
ସୁଧାକର ହେଲେ ସୁଦ୍ଧା ଲଭେ କି ହରଷ
ଉକାର ଭେଦ ଶବ୍ଦ ଲୋ ନାହିଁ ଏଥି ଆଦ୍ୟ
ବୁଝିବାକୁ ହେବ ଭାବ ଶ୍ଳେଷୋକ୍ତି ରୀତିରେ
ଏହି ଯେ ଉତ୍ସବ କାଳ ଭାଳ କାଳସମ
ବାଳ ଧରିଅଛି ଫିଟିଯିବ ବାରବଳ
ଦେଖ ଯୋଟିଛନ୍ତି ଦେବଗୋଷ୍ଠୀ ସିନ୍ଧୁସମ
ଅଶ୍ୱତରୀ ପରେ ପାରି ହୋଇ ଯା ସ୍ୱପୁରେ
ଏତେ କହି ବସି ତାର ମଧୁସ୍ୱରୀ ବୀଣା
ବାହାରନ୍ତେ ନାରୀରୂପୀ ପୁଂସ ଚିତ୍ରମଣି
ପୁଚ୍ଛିଲା ଏମନ୍ତ ବୀଣା ଦେଖି ନାହିଁ କାହିଁ
କେଉଁ ଶିଳ୍ପକାର ଏହା କରିଛି ନିର୍ମାଣ
ସୁସମ ମସୃଣ ଅଷ୍ଟରତନେ ଜଡ଼ିତ
ମନୋମୁଗ୍ଧକର, ସ୍ୱର କି ନଥିବ ତାର
କି ରୂପେ ଲଭିଲୁ କହି ପାରିବୁ ନା ସଖି !
କୃପା କରି ଏତେବେଳେ ଶୁଣିବାକୁ ଇଚ୍ଛା
କହ ବା ନ କହ ଭାର କରୁଣା ଉପରେ
କହେ ଅପସରୀ ତାକୁ ବୀଣାଜିଣାସ୍ୱରେ
ଯିବାକୁ ଉଦ୍ୟତ ଥିଲି ସଖି ! ନୃତ୍ୟସ୍ଥାନେ
କହିଲେ ସେ କଥା ପୋଥା ହୋଇବ ସଜନି !
ନ କହିଲେ ମନୋବ୍ୟଥା ହେବ ଲୋ ତୋହର
ତେଣୁ କହୁଛି ସଂକ୍ଷେପେ ଶୁଣ ଗୁଣମଣି !
ଶୁଣିଥିବୁ ମୋହିନି ! ତାଣ୍ଡବ ନୃତ୍ୟ କଥା
କରନ୍ତି ଯେ ଅନୁଷ୍ଠାନ ଦେବକୁଳ ମିଳି
ଆନନ୍ଦ ଉତ୍ସବେ, ତାର କଥା ଶୁଣ ଆଗେ
ଅପରୂପ ନର୍ତ୍ତନ ଲୋ ତ୍ରିଭୁବନ ମଧ୍ୟେ
ଧରନ୍ତି ମୁରଜ ବ୍ରହ୍ମା, ଗଣେଶ ମର୍ଦ୍ଦଳ,
ବିଷ୍ଣୁଦେବ ତାଳ, ବିଷ୍ଣୁ ବହନ୍ତି ମଞ୍ଜିରା,
କୁମାର ପଟହ, ଅଶ୍ୱୀ-କୁମାର ଖଞ୍ଜରୀ,

ନାରଦ ତୁମ୍ବୁରୁ ବୀଣା, ବଂଶୀ ଶଶଧର
ବୈଶ୍ୱାନର ରସକାଠି, ନୈର୍ଋତ ଝର୍ଝରା,
ରବି ରବା, ଏକସ୍ୱର ବହେ ଚିତ୍ରରଥ,
ସୂର୍ଯ୍ୟ-ସୂନୁ, ଇନ୍ଦ୍ରସୂନୁ, ବହେ ଭେରୀ, ତୂରୀ,
ଧର୍ମଦେବ ଶଙ୍ଖ, ଚନ୍ଦ୍ରସୁତ ତାନପୂରା,
ବରୁଣ ଅଧାଟି ପୁଣି କୁବେର ସାରଙ୍ଗ,
ଶିଙ୍ଗାଧରେ ନନ୍ଦୀ, ଭୃଙ୍ଗୀ ବହଇ ଘୁମୁରା,
ମରୁତ ଦୁନ୍ଦୁଭୀ, କଡ଼ା ବହେ ଯମରାଜା,
ରାହୁ ବିନିଘୋଷ, କେତୁ ବହଇ ଟମକ,
ଦେବର୍ଷି ବ୍ରହ୍ମର୍ଷି ପିତୃଋଷି ଆଦି କରି
ତହିଁରେ ମିଶନ୍ତି ନିଜ ନିଜ ବାଦ୍ୟକରେ
ବସୁ ବିଶ୍ୱ ସିଦ୍ଧ ସାଧ୍ୟ ଗନ୍ଧର୍ବ କିନ୍ନର
ଯକ୍ଷ ବିଦ୍ୟାଧର ପୁଣି ବାଦ୍ୟ ଧରି ମିଶି
ବଜାଇ ନାଚନ୍ତି ସର୍ବେ ହର୍ଷମଦେ ଭରି
ତାନ, ମାନ, ଲୟ, ସ୍ୱରେ ବିଭୁ ଗୁଣଗାନେ
ଶିର, ବକ୍ତ୍ର, ନେତ୍ର, କର, ପଦ, ରଙ୍ଗ ଭଙ୍ଗେ
କମ୍ପଇ ବ୍ରହ୍ମାଣ୍ଡ ଖଣ୍ଡ ଦଳ ଦଳ ହୋଇ
ଡମ୍ବରୁ ବଜାଇ ତହିଁ ସଦାନନ୍ଦ-ଯୋଗୀ
ଉନ୍ମଦେ ନାଚନ୍ତି ବିଭୁନାମ ରସ ପାନେ
ଜରଜର ଦେହୁଁ ଝାଳ ବହେ ଝର ଝର
ଜଟାଜୁଟ ଫିଟି ଆସି ଚୁମ୍ବଇ ଚରଣ
ଦମଦମ ପାଦେ ପୁଣି ଡିବି ଡିବି ନାଦେ
କମ୍ପେ ସ୍ୱର୍ଗଭୂମି ପୁଣି ଚମକେ ତ୍ରିଦିବ;
ଦଣ୍ଡ ଧରି ଖଣ୍ଡ ଗୀତ ଗାଆନ୍ତି ନାରଦ
ନାଚନ୍ତି ଭୂଭଙ୍ଗେ ପୁଣି ବାହୁ ଉର୍ଦ୍ଧ୍ୱେ ଟେକି
ବିଷ୍ଣୁପ୍ରେମେ ମାତି, ନିଜଜ୍ଞାନ ପରିହରି
ଆଜନ୍ମ ବ୍ରହ୍ମଚାରୀ ଯେ ଚିର ବିଷ୍ଣୁଭକ୍ତ;
ପୁଣି ସାଥେ ଗଣନାଥ ବଜାଇ ମର୍ଦ୍ଦଳ
ଗଜମୁଣ୍ଡ ହଲାଇ ପିଚିଣ୍ଡ ଦୋହଲାଇ

ଶିରେ ଧୂଳି ବୋଳି ପୁଣି ଶୁଣ୍ଡ ଊର୍ଦ୍ଧ୍ୱେ ଟୋଳି
ନାଚନ୍ତି ପ୍ରଚଣ୍ଡ ପଦେ କମ୍ପାଇ ବ୍ରହ୍ମାଣ୍ଡ:
ଏହି ମତେ କେତେ କେତେ ରଙ୍ଗ ଭଙ୍ଗି ମାନ
କରୁଥାନ୍ତି ଦେବତାଏ କେ କରେ କଳନା,
ଏହା ଲୋ ତାଣ୍ଡବ ନୃତ୍ୟ ବିଖ୍ୟାତ ତ୍ରିପୁରେ
ଦରଶନେ ଦର୍ଶକର ତାପ ପାପ ନାଶେ,
ଏକଦା ତାଣ୍ଡବ ନୃତ୍ୟେ ଦେବର୍ଷି ତୁମ୍ବୁରୁ
ବୀଣା ଥୋଇ ଶ୍ରମଘର୍ମ ପୋଛୁଥିଲେ ମୁଖୁ
ଏ ସମୟେ ବିଭୁପ୍ରେମେ ମର ଦିଗମ୍ବର
ଦ୍ରିମି ଦ୍ରିମି ନାଦେ ପାଦ ଖେମଟାର ଛନ୍ଦେ
ପକାନ୍ତେ ପଡ଼ିଲା ଦେବରଷି ବୀଣାଯନ୍ତ୍ରେ
ହେଲା ଧୂଳିମୟ, ଯେଉଁ ଶିବପଦ ଭାରା
ନ ସହେ ତ୍ରିଦିବ, ଛାର ବୀଣା କେତେ ମାତ୍ର,
ଦେଖି ହେଲା ଦେବର୍ଷିଙ୍କ ଚିତ୍ତ ସ୍ତବ୍ଧ କ୍ଷୁବ୍ଧ
ଜାଣିଲେ ତା ଭୂତନାଥ ଅନ୍ତର୍ଗତଜ୍ଞାତା
ତକ୍ଷଣେ ଡକାଇ ସୁରଶିଳ୍ପୀ ବିଶ୍ୱକର୍ମା
କହିଲେ ହେ ଶିଳ୍ପୀରାଜ ! ଗଢ଼ ଏକବୀଣା
ନାହିଁ ନଥିଲା ନଥିବ ଯାହା ସେ ତ୍ରିଲୋକେ
ମୋର ପାଇଁ ନଷ୍ଟ ବୀଣା ତୁମ୍ବୁରୁ ରଷିଙ୍କ
ତାଙ୍କ ମନଃ କଷ୍ଟ ନଷ୍ଟ କରିବି ତା ଦେଇ
ଚାଣ୍ଡେ କର ଦଣ୍ଡେ ମାତ୍ର ନ ସହେ ବିଳମ୍ବ
ଭୂତେଶ ଆଦେଶ ପାଳି ବିଶ୍ୱକର୍ମା ଚଳି
ଗଢ଼ିଲା ବିଚିତ୍ର ବୀଣା ତାଙ୍କ ମତ ମତେ,
ଆଣି ଦେଲା ଖର ଦେଖି ପ୍ରଶଂସନ୍ତି ହର
ଅର୍ପିଲେ ସେ ବୀଣା ତହୁଁ ତୁମ୍ବୁରଙ୍କ କରେ
ନାମ ମଧୁସ୍ୱରୀ ତାର ଅଷ୍ଟରତ୍ନେ ଗଢ଼ା;
ହିରଣାକ୍ଷାସୁର ଯେବେ ସ୍ୱର କଲା କୁହ
ହରିଣାକ୍ଷ ଦୈତ୍ୟ ଯେବେ ସ୍ୱର୍ଗ କଲା ଜୁର
ସେ କାଳେ ସେ ବୀଣାଗୋଟି ହରିସ୍ୱର୍ଗକୋଷୁଁ

ଦେଇଥିଲା ନେଇ ତାର ପଟ୍ଟମହିଷୀକି
କେତେକାଳ ପରେ ହରି ଧରି କୋଳରୂପ
ବଧିଲେ ସେ ସୁରଶତ୍ରୁ ରାକ୍ଷସେ ସଂଗ୍ରାମେ
ହୃତ ଦ୍ରବ୍ୟସହ ସେହି ବୀଣାକୁ ଅଣାଇ
ଦେଲେ ସଚୀ କରେ ତାହା ଥିଲା ତାଙ୍କ ଠାରେ
ଅପସରା ନୃତ୍ୟକାଳେ ମୋର ନୃତ୍ୟ ଚାହିଁ
ମୋହିତ ମହେନ୍ଦ୍ର, ତେଣୁ ପୁରସ୍କାର ରୂପେ
ଅର୍ପିଛନ୍ତି ଏହି ବୀଣା ମୋତେ କୃପାକରି,
ଏହା ଗୁଣ ଶୁଣ ସଖି ! କଲେ ଏ ଝଙ୍କାର
ପଲ୍ଲବଇ ଶୁଷ୍କତରୁ, ପ୍ରାଣୀ ପ୍ରାଣ କେତେ
ଏତେ ଭାଷି ଚାରୁକେଶୀ ସେହି ଚିତ୍ରରେଖା
ବାହାରିଲା ନୃତ୍ୟସ୍ଥାନେ ଧରି ବୀଣାବର
ବଳି ତାକୁ ନାରୀରୂପୀ ପୁଂସ ତରତରେ
ବିଦାୟ ହୋଇଲା ଯିବା ପାଇଁ ନିଜସ୍ଥାନେ
ପଥେ ବେନିମିତ୍ର ସହ ସେ ବିଚିତ୍ରରଥେ
ଚଉଟି ବଟିଲା ଯାବତ ବିବରଣଜାତ,
କାମେ ମତ୍ତ ଜ୍ଞାନ ହତ ସେ ବିଚିତ୍ରରଥ
ଶୁଣି ଶିରଝୁଣି ରୋଷେ ଗମେ ତରତରେ
ଧାଏଁ ମତ୍ତଭୃଙ୍ଗ ଯେହ୍ନେ ପଦ୍ମିନୀର ପାଶେ
ମଧୁଆଶେ ମୁଖ ପକ୍ଷ ପୁଚ୍ଛ ପୁଚ୍ଛ ଚାଳି
ନୃତ୍ୟ ସ୍ଥାନେ ଚାହିଁ ସେହି ଚିତ୍ରରେଖା ବାଳା
ଚିତ୍ରରେଖା ଭଳି କ୍ଷଣେ ସ୍ତମ୍ଭୀଭୂତେ ଉଭା
ପରେ ବୀଣା ଉଚ୍ଛୁଡ଼ି ତା କରୁ ଅତି ଖରେ
କଚାଡ଼ିଲା ବେନିବାର ସ୍ୱର୍ଗତଳ ଦେଶେ
ବେନିଫାଳ ହେଲା ବୀଣା ତୁମ୍ବିକା ଯୁଗଳ;
ତହୁଁ ବଳାତ୍କାରେ କର ଝିଙ୍କନ୍ତେ ସେ ଆଣ୍ଡେ
ରାବ ଦେଲା ଚିତ୍ରରେଖା ଆତଙ୍କ ଆରାବେ
ତରକ୍ଷୁ ଭକ୍ଷିତା ହେଲେ ଯଥା ବତ୍ସତରୀ,
ପାଖେ ରହି ମିତ୍ରଦ୍ୱୟ ଦେଖୁଁ ଏ ଘଟନା

କମ୍ପିଲା ହୃଦୟ ତାଙ୍କ ଆତଙ୍କେ ସର୍ବଦା
ବାଣଘାତେ କମ୍ପେ ଯଥା ରମ୍ଭାତରୁ ପତ୍ର
ନାରୀ ଆର୍ତ୍ତରବ ଶୁଣି ଶକ୍ରାଦି ତ୍ରିଦଶ
ଆଶୁ ଆସି ପ୍ରବେଶିଲେ ଚିତ୍ରରେଖା ପାଶେ
ଗବେଷଣୁଁ ଅବଗତ ସର୍ବ ବିବରଣ;
ଏଧୃଷଟ ରୀତିକି ଦେଖି କୋପି ସୁରପତି
ଅଭିଶାପ ସମର୍ପିଲେ କର୍କଶ ବଚନେ
ରେ ଦୁଷ୍ଟ ପାପିଷ୍ଠ ଧୃଷ୍ଟ ଏ ପୁଣ୍ୟ ଉତ୍ସବେ
ଦୁଷ୍କର୍ମ ଆଚରୁ ତିଳେ ନ ରଖି ଭୀତିକି
ସୁରପୁରବାସୀ ହୋଇ ଅସୁର ସମାନ
ସମ୍ମାନ ବିହୀନ କର୍ମ କରୁ ଲଜ୍ଜାହୀନେ
ସୁରପୁର କୁଳାଙ୍ଗାର ରେ ବିଚିତ୍ରରଥ
ଯାଅରେ ମାନବଜନ୍ମ ଲଭ ମର୍ତ୍ତ୍ୟଧାମେ
ଅସୁର ସ୍ୱଭାବ ବହ ନିଜକର୍ମ ଦୋଷେ
ଆରେ ରେ ବିଚିତ୍ରରଥ ! ଫଳୁ ଆତ୍ମବାଣୀ;
ପୁଣି ଚାହିଁ ମଧୁସ୍ୱରୀ ବୀଣାର ବିଧ୍ୱଂସ
ଦାବାନଳ ତୁଳ କ୍ରୋଧେ ଉଠିଲେ ପ୍ରଜ୍ୱଳି
ଦ୍ୱିଫାଳ ଦ୍ୱିଫାଳ୍ ବେନିବାରେ ସେ ଉଚ୍ଚାରି
କହି ନ ପାରିଲେ ଆଉ ଘୋର ରୋଷ ବଶୁଁ
କିଛି କ୍ଷଣ ପରେ ଆଳ ତିନିଙ୍କୁଂ ହକାରି
କହିଲେ ଲଭରେ କର୍ମ ଅନୁକ୍ରମେ ଫଳ
ଆରେ ଜୟସେନ ! ନାରୀରୂପେ ବହୁ ଭାଷୁ
ନାରୀ ଲିଙ୍ଗେ ଜଡ଼ବସ୍ତୁ ହୁଅ ଯାରେ ମର୍ତ୍ତ୍ୟେ
ଆରେ ସତ୍ୟସେନ ! ବହୁ କଣ୍ଟକର ଦଣ୍ଡ
ହୁଅ ଯା ଶୁଷ୍କ କଣ୍ଟକ ତରୁ କର୍ମଦୋଷେ
ଆରେ ବୃନ୍ଦସେନ ଅଶ୍ୱତରୀରେ ତୋ ସ୍ନେହ
ଖର ରୂପ ବହି ଖରେ ଯାଅ ମର୍ତ୍ତ୍ୟପୁରେ
ରୋଷବଶେ ଚରଣ ତୋ ସ୍ପର୍ଶିଲେ କେ ଜାଣ
ପରିତ୍ରାଣ ଲଭିବୁ ତୁ ପରାଣ ବିସର୍ଜ୍ଜି ୮

ଏ ରୂପେ ଚାରିଙ୍କୁ ଶାପ ଦେଇ ସୁନାସୀର
ବୋଧିଲେ ଚିତ୍ରରେଖାକୁ କର ସମାର୍ଜନେ
ପଦ୍ମିନୀ ଶରୀରେ ଯଥା ବାଳରବି କର;
ଶୁଣି ସୁରମଣି ବାଣୀ ବ୍ୟଥିତ ହୃଦୟ
ସଙ୍ଗ ତିନିମିତ୍ର ସହ ସେ ବିଚିତ୍ରରଥ
ଯେହ୍ନେ ଚାରୁତରୁ ପରେ ଅଶନି ପ୍ରପାତ
ଅବା କୀଟ ଦଂଶେ ପଶି ସୁସମ କୁସୁମେ
ତେହ୍ନେ ତା ସରସ ହୃଦେ ବିରସତା ବେଶ;
ତହୁଁ ଦୈନ୍ୟେ କରଯୋଡ଼ି ସେ ବିଚିତ୍ରରଥ
ନିବେଦିଲା କ୍ଷମା ଇନ୍ଦ୍ରେ ସ୍ତୁତିବାକ୍ୟମୁଖେ
ମହତଜନର ରୋଷ କ୍ଷଣିକ ମାତର
ନ ରହଇ ଚିର ଯଥା ନୀରପୃଷ୍ଠେ ରେଖା
ତାର ଦୈନ୍ୟ ଚାହିଁ କୃପା ବହି ସୁରପତି
କହିଲେ ବିଚିତ୍ରରଥେ ଶୁଣ ତୁମ୍ଭେମାନେ
ଆମ୍ଭ କଥା ଅନ୍ୟଥା ନ ଭଜେ କଦାଚନ
ଦ୍ୱିରଦ-ବଦନରଦ ନସଂକୋଚେ ଯଥା;
ଅବଶ୍ୟ ଭୋଗିବ ତୁମ୍ଭେ ଦୁଷ୍କର୍ମର ଫଳ
ପ୍ରତିକାର ମାତ୍ର ଦେବୁଁ ଦୟାଜାତ ବର୍ଣ୍ଣ
ଦ୍ୱାପରେ ଜନ୍ମିବେ ହରି ନର ଅବତାରେ
କଂସାଦି ଦୁଷ୍ଟରାକ୍ଷସ ବିନାଶ ସକାଶେ
ସେ କାଳେ ଜନ୍ମିବୁ ମଗଧାଖ୍ୟ ରାଜ୍ୟେ ତୁରେ
ବହିବୁ ରାକ୍ଷସଭାବ ନରଜନ୍ମ ବହି
ରହିବେ ଏ ମିତ୍ରତ୍ରୟ ସଙ୍ଗତେ ତୋହର
ଖର ଭେରୀ ଶାଳ୍ମଳୀ ପାଦପ ରୂପଧରି
କରିବେ ଅଦ୍ଭୁତ କାର୍ଯ୍ୟ ତୋର ହିତହେତୁ
ହୋଇବୁ ଅବନୀଭାଗେ ରାଜଚକ୍ରବର୍ତ୍ତୀ
ଯୁଦ୍ଧେ ନ ଯୋଟିବେ ତୋତେ ମହାମହାରାଜା
ଜନମେ ଦ୍ୱିଫାଳ ପୁଣି ମରଣେ ଦ୍ୱିଫାଳ
ହୋଇବୁ ଶାପର·ଗୀର ଦ୍ୱିବାର କଥନେ

ସେ ଯୁଗେ ବିଷ୍ଣୁଙ୍କୁ କଷ୍ଟଦେଇ ତୁ ଅପାର
ତାଙ୍କ ଯୋଗେ ନଷ୍ଟ ହୋଇ ଆସିବୁ ଏଥିକି
ତୋର ସାଥେ ହତ ହୋଇ ଏ ତୋ ତିନିମିତ୍ର
ଆସିବେ ଏସ୍ୱର୍ଗେ ଏଥେ ନକର ସଂଶୟ
ବର୍ତ୍ତମାନ କିଛି ଦିନ ଯାପ ସ୍ୱର୍ଗପୁରେ
ଆସିବ ସମୀପେ ତୁମ୍ଭ ଶାପରୁ ସମୟ
ଏହାଶୁଣି ପଦବନ୍ଦି ସେ ଇନ୍ଦ୍ରଦେବଙ୍କ
ଚଳିଲା ଉତ୍ସବ ସ୍ଥାନୁ ମିତ୍ରତ୍ରୟ ସହ
କାମେ ମତ୍ତ ହୋଇ ଯେବା ଜ୍ଞାନ କରେ ହତ
ଧନ ମାନ ନାଶି ଭୁଞ୍ଜେ ବିପଦାପମାନ

ଇତି ଶ୍ରୀ ଜରାସନ୍ଧବଧ କାବ୍ୟେ ଜରାସନ୍ଧ ପୂର୍ବଜନ୍ମ କଥନେ ନାମ
ତୃତୀୟଃ ସର୍ଗଃ ।

—

## ଚତୁର୍ଥସର୍ଗ

ବିରାଜଇ ଜମ୍ବୁଦ୍ୱୀପ ମଧ୍ୟେ ରାଜ୍ୟ ଏକ
ମଗଧ ନାମେ ଯା ଯଶଃ ଘୋଷନ୍ତି ମାଗଧ
ସଦାଭିରାମ ଯା ଭୂମି ସଜଳା ଶ୍ୟାମଳା
ଫୁଲେ ଫଳେ ତରୁଲତା ନିତ୍ୟ ନତଭର
ବହୁଶସ୍ୟ ରତ୍ନପୂର୍ଣ୍ଣ ବୀର ପ୍ରସବିନୀ
ଅମର-ବାଞ୍ଛିତା ପୁଣି ଭାରତେ ପ୍ରଥିତା
ତା ମଧ୍ୟେ ସୁନ୍ଦର ଗିରିବ୍ରଜ ନାମେ ପୁର
କନକର ହାରେ ଯେହ୍ନେ ହୀରକ-ନାୟକ
ଦୁର୍ଗମ ଦୁର୍ଭେଦ୍ୟ ପୁନଃ ଶତ୍ରୁଭୀତିପ୍ରଦ
ଭୀଷଣ ପର୍ବତ ଶ୍ରେଣୀ ଗିରିଦୁର୍ଗ ଯାର
ଅଚ୍ଛ-ସମ ସ୍ୱଚ୍ଛ ଊର୍ମିମାଳା ଘେନି ଉରେ
ବହେ ସୁରନଦୀ ଯାର ଚାରୁ-ହାର ସମେ
ବନ ଉପବନ କୂପ ବାପି ଜଳାଶୟ
ରାଜପଥ ପୁରପଥେ ଦିଶଇ ରୁଚିର
ରମ୍ୟ ହର୍ମ୍ୟ ଅଟ୍ଟାଳିକା ରାଜେ ଶ୍ରେଣୀ ଶ୍ରେଣୀ
ଧରଣୀରାଣୀରେ ରୌପ୍ୟ-କିରୀଟ ସ୍ୱରୂପେ
ଧନଦ ସମାନ ଧନବନ୍ତ ସର୍ବେ ତହିଁ
ଭୋକୀ ଦୁଃଖୀ ହୋଇ କେହି ନାହିଁ ଜନ ପ୍ରଜା
ଅତୁଳ ଶୋଭା ସମ୍ପଦ ଆସ୍ପଦ ସେ ପୁରେ
ରାଜଧାନୀ କରି ତହିଁ ବସନ୍ତି ନୃନାଥ
ବୃହଦ୍ରଥ ମହାରଥ ଗଣଙ୍କ ଅଗ୍ରଣୀ
ଗୁଣେଥିଲା ଅବଗୁଣ ଏତେକ ମାତର
ତେବେ ଗୁଣଖ୍ୟାତି ତାଙ୍କ ରଟଇ ଏ କ୍ଷିତି
ସେ ଚୋରଙ୍କବର, ଯେଣୁ ପ୍ରକୃତି-ପୁଞ୍ଜର
ହରଣ କରନ୍ତି ଚିତ୍ତବିତ୍ତ ଅକାତରେ,
ଅସତାପ୍ରବର, ଯେଣୁ ନଦିଅନ୍ତି ତିଳେ
ଶତ୍ରୁ ପ୍ରତି ଆପଣାର ସୁଖରିଷ୍ଟ-ପୃଷ୍ଟ,
ଲୋଭିଙ୍କ ଶେଖର, ଯେଣୁ ଆକଣ୍ଠ-ଭୋଜନ

ନ କରି କରନ୍ତି ନିତି ପରିମିତାହାର,
ଗୁଣ ସେ କୃପଣ, ଯେଣୁ ଅନ୍ୟଜନ୍ମ ପାଇଁ
ରଖାଇ ଥାଆନ୍ତି ଧନ ଦେଇ ଦୀନ ଜନେ,
ବିବେକ ବିହୀନ, ଯେଣୁ ନିଜ ସ୍ୱାର୍ଥ ତେଜି
ଅବିରତ ରତ ହୋଇଥାନ୍ତି ପରିହିତେ,
ବଡ଼ ସେ ଅନ୍ୟାୟୀ ଯେଣୁ ଦୁର୍ଜନେ ନ ଦଣ୍ଡି
କରନ୍ତି ମିଳନ ନେଇ ସୁଜନ ସଙ୍ଗତେ,
ଦୁର୍ବଳସ୍ୱଭାବ ଯେଣୁ ବିଜିତ ଶତ୍ରୁକୁ
ଭାଗୁଁ ଶରଣ କରନ୍ତି ରାଜ୍ୟ ପ୍ରତ୍ୟର୍ପଣ,
ପୁଣି ଷଣ୍ଢବର, ଯେଣୁ ନିଜଜାୟା ବିନେ
ଆନେ ନ ସ୍ପର୍ଶନ୍ତି ସ୍ୱାହାନାହା କାୟା ପରା,
ବଡ଼ ସେ ଭୟାଳୁ ଯେଣୁ ଅଧର୍ମ କରମ
ସମ୍ମୁଖେ ନ ଯାନ୍ତି ମୁଖ ପଶ୍ଚାତେ ନିକ୍ଷେପି,
ଅଳ୍ପଭାଷି ପୁଣ ଯେଣୁ ବହୁତ ଭାଷଣ
ଅସତ୍ୟର ମୂଳାଧାର ଚିନ୍ତିଥାନ୍ତି ଚିତ୍ତେ
ନିତାନ୍ତ କପଟୀ ଯେଣୁ ଗୁପତମନ୍ତ୍ରଣା
ନକରନ୍ତି ପ୍ରକଟ ସେ ହୃଦପଟେ ରଖି,
ନିଷ୍ଠୁର ମାନସ ଯେଣୁ ଉଚିତ ଆଦେଶ
ପ୍ରତ୍ୟାହାର ନକରନ୍ତି ନିଜ ପ୍ରାଣପଣେ,
ପୁଣି ସେ ନିର୍ଦ୍ଦୟ ଯେଣୁ ଦସ୍ୟୁ ତସକର
ଘାତୁକାଦି ଜନେ ଦଣ୍ଡୁଥାନ୍ତି କ୍ଷମା ବିନେ,
ବଡ଼ ଅସମର୍ଥ ଯେଣୁ ସ୍ୱକୀୟ ସଙ୍ଗତେ
ଚତୁରଙ୍ଗ ସେନା ରଖିଥାନ୍ତି, ନିରନ୍ତର,
ଏ ଭାବେ ରହନ୍ତି ରାଜ୍ୟ କରି ସୁଶାସିତ
ନିମନ୍ତି ସୁଯୋଗ୍ୟ ମନ୍ତ୍ରୀ ରଖିଥାଇ ପାଶେ
ମଧୁପ ନାମେ ସେ ଦେଶେ ବସଇ ଭ୍ରସଳ
ବୃକ୍ଷନାମେ ବିଟପୀ ଜାଣନ୍ତି ନରେ ତହିଁ
ଅକ୍ଷବୋଲି ନେତ୍ରେ ପୁଣି ବନ୍ଦିକୁ ସ୍ତାବକେ
ବିଚାରନ୍ତି, ରାଜ୍ୟଜନେ ଆନ ନ ବିଚାରି

କଳି. ଲତା ଦେହୁଁ ଲୋକେ କରନ୍ତି ଚୟନ
ମନ୍ଦଭାବ ବହେ ଶୀତ ସମୀରଣ ମାତ୍ର;
ବିଭା ହୋଇଥିଲେ ଅଷ୍ଟୋତ୍ତରଶତ ରାଣୀ
ସର୍ବେ ଏକୁଁ ଏକ ଗୁଣବତୀ ରୂପବତୀ
ମିଶି ରହିଥାନ୍ତି ଏକ ପ୍ରାଣ ପରକାରେ,
ତହୁଁ ପଟ୍ଟ ଅଟନ୍ତି ସୁମତୀ ଚାରୁମତୀ;
ଏ ଭାବେ ସୁଖ ସମ୍ପଦ ପଦ ଅଧିକାର
ଥିଲେ ହେଁ ବୃହଦ୍ରଥଙ୍କ ନଥିଲା ସନ୍ତାନ
ତେଣୁ ନୃପନାଥ ହୋଇ ଅଥିର ହୃଦୟ
ଆରମ୍ଭିଲେ ବହୁ ଯାଗ ଯଜ୍ଞ କଷ୍ଟତରେ
ତଥାପି ନୁହନ୍ତେ କାର ଗର୍ଭୁଁ ପୁତ୍ରଜାତ
ପୋଡ଼ିଲା ହୃଦୟବନ ଚିନ୍ତାନଳେ ସଦା,
ତେଣୁ ଉଦାସୀନ ହୋଇ ସମସ୍ତ କରମେ
ନିଜ ମନ୍ତ୍ରୀ ହସ୍ତେ ରାଜା ରାଜ୍ୟ ନିୟୋଗାଇ
ତପଶ୍ଚର୍ଯ୍ୟା ଆଶେ ଗଲେ ବଦରିକାଶ୍ରମେ
ମହାଶ୍ରମେ ବିଂଶଦିନେ ଦୂରପଥ ବାହି
ଶ୍ରଦ୍ଧା ଥିଲେ ଇଷ୍ଟ କର୍ମେ ନିଦ୍ରା କ୍ଷୁଧା ବାଧା
ନ ବାଧେ ସାଧକେ କେବେ ଭାବ ହେ ମାନବ;
ଅହୋ କି ଭୀଷଣାରଣ୍ୟ ଘୋର ଅନ୍ଧକାର
ତରୁଲତା ବ୍ରତତୀରେ ନିବିଡ଼ ନିଘଞ୍ଚ
ନ ସହି ଭାସ୍କର ଖରକର ପାଇ ତ୍ରାସ
ଅନ୍ଧକାର ରାଣି ଆସି ଠୁଳ କିବା ତହିଁ
ବହେ ନିର୍ଝର ନିକର ବନପ୍ଲାବି ନୀରେ
କାନନ ଝଙ୍କାରି ଭୃଙ୍ଗ ଝିଙ୍କାରୀଙ୍କ ସଙ୍ଗେ
ଆସାର ସମାନ ହେଉଁ ତୁଷାର ପତନ
ଗାତ୍ର କମ୍ପକାରୀ ଦୁର୍ବିସହ ଶୀତ ତହିଁ
ଉତ୍ତୁଙ୍ଗ ମସ୍ତକ ତରୁବ୍ରାତ ନଭଶ୍ଚୁମ୍ବି
ସୁସ୍ଥିର ଅଟଳ ସଦା ମହୋଯୋଗୀ ସମେ
ବିହରନ୍ତି ବନ୍ୟଜୀବେ ଦଳ ଦଳ ହୋଇ

ଶାନ୍ତ ଭାବ ବହି ତହିଁ ବିବାଦ ବିସର୍ଜି
କଳରୁତ କରେ ପକ୍ଷୀ ଶ୍ରୁତିପ୍ରୀତି ସ୍ୱରେ
ବିଚରି ସ୍ୱଇଛାମତେ ବୃକ୍ଷୁଁ ବୃକ୍ଷାନ୍ତର
ଜପୀତପୀ ବ୍ରହ୍ମଚାରୀ ଆଦି ଋଷିଗଣ
ସମାଧି ଅଛିରେ ମଗ୍ନ ଭିନ୍ନ ଭିନ୍ନ ସ୍ଥାନେ
କାହିଁ ଉଠେ ହୋମ ଧୂମ କାହିଁ ଘୃତବାସ
ରଖା କାହିଁ କଷାବାସ ତରୁଶାଖା ପରେ
ନିରେଖି ଏ ମନୋହର ବନ ବୃହଦ୍ରଥ
ଭାବନ୍ତି ଏ ସ୍ଥାନେ ହେବ ମନୋରଥ ପୂର୍ଣ୍ଣ
ନିର୍ଝର ନିକଟେ ସ୍ଥିତ ଏକ ତରୁବର
ସୁରଦାରୁ ନାମ ତାର କୁଞ୍ଚିତ ପଲ୍ଲବ
ତା ତଳେ ରହିଛି ଏକ ସୁସମ ଉପଳ
ଦେଖି ତହିଁ ଉପବିଷ୍ଟ ହେଲେ ନୃପଶ୍ରେଷ୍ଠ
ନିଶ୍ଚଳ ଆସନେ ମନଃପ୍ରାଣ କରି ସ୍ଥିର
ଆରମ୍ଭିଲେ ସମାଧିକୁ ନିଦ୍ରା କ୍ଷୁଧା ତେଜି
ଦ୍ୱାଦଶ ବରଷ ଲୟ ରଖି ଦୁର୍ବାସାରେ
ନିଶ୍ଚଳ ନିଷ୍କମ୍ପ ଯଥା ଗାଧ ହୀନ ସରଃ,
ଅଗ୍ନିପ୍ରଭ-ତନୁ ଜଟାକଳାପ-ଶିରସ୍କ
କଷା ବାସ ପରିହିତ, କମଣ୍ଡଳୁକର
ଯୋଗୀଶ୍ୱର ସମ ଯୋଗୀ ଭୀମସମକ୍ରୁଦ୍ଧ
ପ୍ରବେଶିଲେ ଆସି ବୃହଦ୍ରଥ ସନ୍ନିଧାନେ
ଦେଖନ୍ତେ ନିର୍ଜୀବପିଣ୍ଡ ତହିଁ ତାହାଙ୍କର
କମଣ୍ଡଳୁ ଜଳସିଞ୍ଚି କଲେ ଜୀବନ୍ୟାସ
ନୀର ସ୍ପର୍ଶେ ସଂଜ୍ଞା ସ୍ପର୍ଶି ତେଣୁ ନୃପବର
କହିଲେ ଏ ଗୀର ତପିବର ଦେଖି ଅଗ୍ରେ
ନିଦ୍ରାମଗ୍ନ ଜନ ଯେହ୍ନେ ଚେତି ଉଠିଭାଷେ
ହେ ମହାତ୍ମା କି କାରଣେ ତପଃ ଭଗ୍ନକର
ତପସ୍ୟାର ଫଳ ମୋର ହୋଇନାହିଁ ପୂର୍ଣ୍ଣ
ଶୁଣି ଋଷିମଣି ହସି ତାହାଙ୍କୁ ଭାଷିଲେ

ଯାକୁ ଭାବୁ-ସେହି ଆମ୍ଭେ ମାଗ ଇଚ୍ଛାବର
ଉଠି ତହୁଁ ପଦ ବନ୍ଦି ଶିରେ ଯୋଡ଼ି ହସ୍ତ
କହିଲେ ଗଦ୍‌ଗଦେ ସ୍ୱାମୀ ! ନିସ୍ତରିଲି ମୁହିଁ
ବିଭା ହେଲି ମୁଁ ସେ ଅଷ୍ଟୋତ୍ତର ଶତ କନ୍ୟା
କାହାଠାରୁ ନ ଉପୁଜେ ପୁତ୍ର କେଉଁ ପାପେ
ତ୍ରାହିକର ସ୍ୱାମୀ ! ମୋତେ ଦେଇ ସୁସନ୍ତାନ
ଶୌର୍ଯ୍ୟବୀର୍ଯ୍ୟ ପ୍ରତାପ ଯା ବ୍ୟାପିବ ମହୀରେ
ଶୁଣି ଋଷି ଚକ୍ଷୁବୁଜି ଧ୍ୟାନମଗ୍ନ ଭଜି
ଜାଣି ଗଲେ ଶକ୍ରଶାପ ଦେବା କଥା ସର୍ବ
ତହୁଁ ବୃହଦ୍ରଥେ ଆଜ୍ଞା ଦେଲେ ତପିନାଥ
ହେବ ବାଞ୍ଛାସିଦ୍ଧ ରାଜା ଯାଅ ଏହା କର
ଅଦୂରେ ରହିଛି ଦେଖ ହରଙ୍କ ଉଦ୍ୟାନ
ତହୁଁ ଫଳ ଏକଗୋଟି ଆଣ ଆମ୍ଭବାକ୍ୟେ
ମହର୍ଷି ଆଦେଶେ ହର ଉଦ୍ୟାନେ ପ୍ରବେଶି
ଦେଖନ୍ତି ସେ ସ୍ଥାନେ ଅପରୂପ ନିକେତନ
କୃଷ୍ଣବର୍ଣ୍ଣ ପିଣ୍ଡ ତାର କୃଷ୍ଣବର୍ଣ୍ଣଚୂଡ଼ା
ଚୂଡ଼େ ଉଡ଼େ କୃଷ୍ଣକେତୁ ଗୃଧ୍ରପକ୍ଷୀ ଚିହ୍ନେ
ଚିତ୍ରମଣି ନରମଣି ଖରେ ପଦକ୍ଷେପି
ପ୍ରବେଶନ୍ତେ ପୁରେ ତହୁଁ ବାହାର ରାକ୍ଷସୀ
କରାଳ-ବଦନା ପୁଣି କରାଳ ରଦନା
ଘୋର-ସ୍ୱନା କୃଷ୍ଣବର୍ଣ୍ଣା ରୂକ୍ଷ ପିଙ୍ଗକେଶୀ
ସ୍ଥୂଳୋନରା ସ୍ଥୂଳମଧ୍ୟା ବୃଦ୍ଧା ରକ୍ତନେତ୍ରା
ଲୋଳଜିହ୍ୱା ସମୁଦ୍ଧତା ଭୟଙ୍କରୀ ମୂର୍ତ୍ତି
ଏମନ୍ତ କି ଅବାରେ ଦୁର୍ବାର କିଙ୍କରୀ
ପ୍ରବେଶ ସମ୍ମୁଖେ ମୁଖେ ଭାଷି ଏହିଭାଷା;
କାହିଁର ମାନବ ତୁ ରେ ଏଥେ ଆସି ପଶୁ
ସୁପ୍ତବ୍ୟାଳବିଳେ ବଳେ ପଶେ ଯେହ୍ନେ ପ୍ଲବ
ନାହିଁ କିରେ ହୃଦେ ଦର ଉରସୁ-ସେ ଲାଗି
ଶୁଭକ୍ଷଣେ ବିହି ଜଣେ ଯୋଗାଇଲା ଆଣି

ବହୁଦିନ ପରେ ଏବେ ପାଇଲି ପାରଣା
ନରମାଂସ, ଗ୍ରାସି ଆଶେ ଆକର୍ଷନ୍ତେ ନୃପେ
ଶଶା ଶିଶୁ ଗ୍ରାସେ ଯେହ୍ନେ ମହାବଳବ୍ୟାଘ୍ରୀ
ଡାକିଲେ ରଖ ଦୁର୍ବାସା ଋଷି ଆସି ଖରେ
ଋଷିନାମ ଶୁଣି ନୃପେ ଛାଡ଼ିଲା ତକ୍ଷଣି
ଛାଡ଼େ ଯଥା ବିଭୁ ନାମେ ଗାତ୍ରର ପାତକ
ବିହିଲା ଭାଷଣ ତହୁଁ ମଧୁର ନିସ୍ୱନେ
ଭାଷେ ଯଥା ପିକବଧୂ ସାଧୁ ମଧୁକାଳେ
ଆକୃତିରୁ ଜଣା ତୁମ୍ଭେ ଅଟ ବଡ଼ଜନ
କିଏ ତୁମ୍ଭେ କି ନିମନ୍ତେ ଆସିଲ ଏସ୍ଥାନେ
କହ ସତ୍ୱର ଯାଉ ମୋ ହୃଦୟ ସନ୍ଦେହ
ଏତେ ଭାଷି ସେ ରାକ୍ଷସୀ ବହି ସୌମ୍ୟ ମୂର୍ତ୍ତି
ନୃପ ଅଗ୍ରେ ଉଭା ଯେହ୍ନେ ସ୍ୱର୍ଗ ଅପସରୀ
ତେଣୁ ନିର୍ଭୟେ ସେ ଭୂପ କହିଲେ ସ୍ୱକଥା
ସୌମ୍ୟେ ! ଶୁଣ ମୋର ଗୀର ଦୁଃଖୀ ମୁଁ ଅପାର
ମଗଧନାଥ ମୁଁ ନାମ ମୋର ବୃହଦ୍ରଥ
ସନ୍ତାନ ବିହୀନେ ଆସି ତପେ ବସୁଁ ବନେ
ଦ୍ୱାଦଶ ବରଷେ ବର ଦେଲେ ସେ ଦୁର୍ବାସା
ଫଳ ଆଣିବା କାରଣେ ଏଣେ ଥିଲେ ପେଷି
ମନାସିଥିଲ କିପାଇଁ ଗ୍ରାସିବାକୁ ମୋତେ
'ଦିଅ ଆତ୍ମପରିଚୟ ହେତୁ ସହ ବାଳି !
ଶୁଣି କହେ ସେ ସୁନ୍ଦରୀ ମୁଁ ରାକ୍ଷସନାରୀ
ହର ଉଦ୍ୟାନେ ବସଇଁ ନାମ ମୋର ଜରା
ପୁତ୍ର ପତି ନାହିଁ ମୋର ଏକାକିନୀ ଗୃହେ
ଅଟେ ମୁଁ କାମରୂପିଣୀ ପୁଣି ମାୟାବିନୀ
ଏ ଉଦ୍ୟାନେ ଯେବା ପଶେ ତାକୁ କରେଁ ଗ୍ରାସ
ଦେଖ ଫଳ କାହିଁ ନାହିଁ ସର୍ବ ବୃକ୍ଷ ଶୁଷ୍କ
ପଶୁପକ୍ଷୀ ରହିବେ ବା ଏଠାବେ କିପାଇଁ
ଏହା କହି କୁହୁକିନୀ ତହିଁ ଦେଖାଇଲା

ବନେ ନାହିଁ ବୃକ୍ଷ ଏକ ସଞ୍ଜୀବିତ ହୋଇ
ବିବର୍ଣ୍ଣ ବିଶୀର୍ଣ୍ଣ ସର୍ବ ପତ୍ରଶୂନ୍ୟ ଭାବେ
ପଶୁ ପକ୍ଷୀ ଶୂନ୍ୟ ପୁଣି ନୀରବ ନିସ୍ତବ୍ଧ
ଦେଖି ନୃପନାଥ ଚିତ୍ତ ହୋଇଲା କ୍ଷୋଭିତ
ଯେହ୍ନେ ଶୁଷ୍କ-କଣ୍ଠ ପଶେ ଶୁଷ୍କ ମରୁଦେଶେ
ପୁଣି କହେ ସେ ସୁନ୍ଦରୀ ଫେରିଯାଅ ଭୂପ !
ମନସ୍ତପ୍ତ କରିବାର ନୁହଇ ଉଚିତ
ଇଷ୍ଟ ଲାଭ ନୋହିଲେହେଁ ଶ୍ରେଷ୍ଠଜନମନ
ବିହସ୍ତ ନୁହଇ କେବେ ବ୍ୟସ୍ତ ତୁମ୍ଭେ କିପାଁ
କହନ୍ତି ନରେଶ ତାକୁ ଦୁର୍ବାସା ଆଦେଶ
ମେଣ୍ଟିବାର ନୁହେ ପ୍ରାଣନାଶ ହେଲେ ହେଉ
ଫଳନେବି ବହି ରହି ଫଳହେଲେ ବୃକ୍ଷେ
ନିଷ୍ଠା ଦେଖି ନୃପଙ୍କର ମାୟାବିନୀ ଜ୍ୟେଷ୍ଠା
କହିଲା ତାହାଙ୍କୁ ମୋର ବାକ୍ୟ କଲେ ରକ୍ଷା
ଫଳ ଆଣି ଦେବି ହସ୍ତେ ନ ହୁଅ ବିହସ୍ତ;
ରାଜା ବୋଲୁଁ କହ ଜରା କହିଲା ଏରୂପେ
''ମୋତେ ଘେନି ଯାଅ ରାଜ୍ୟେ ରହିବି ଶ୍ମଶାନେ
ରାତ୍ରେ ଭ୍ରମି ନଗର ରକ୍ଷିବି ଶବ ଭକ୍ଷି
ସାଧବି ତୁମ୍ଭର ହିତ ଅହିତ ବରଜି
ସତ୍ୟ ମୁଁ କହୁଛି ନଭୁ ତଡ଼ି ବନା ରାଜ୍ୟୁଁ''
ଏ ଉଦ୍ୟାନେ ମିଳେ ନାନା ସ୍ୱାଦୁ ଫଳମାତ୍ର
ମାଂସେ ପ୍ରିୟ ହେତୁ ତାହା ମୋ ପକ୍ଷେ ଗରଳ
ତାର ବାଣୀ ଶୁଣି ରାଜା ମନେ ମନେ ଗୁଣି
ଅଙ୍ଗୀକାର କରୁଁ ଗଲା ଉଦ୍ୟାନ ଭିତରେ.
ଆଣି ସମର୍ପିଲା ଏକ ଚୂତଫଳ ହସ୍ତେ
ଫଳ ଦେଖି ରାଜା ହେଲେ ଆନନ୍ଦ ଅପାର
ଦୀନ ହସ୍ତେ ନ୍ୟସ୍ତ କିବା ଅମୂଲ୍ୟ ରତନ
ତହୁଁ ଫଳକରେ ଖରେ ଗଲେ ପୂର୍ବସ୍ଥାନେ
ଦୁର୍ବାସା ଆଦେଶି ବସିଥିଲେ ଯେଉଁଠାରେ
ଋଷିପଦେ ପ୍ରଣମି ତଦନ୍ତେ ନୃପରାଣ

ଜଣାଇଲେ ବିବରଣ ଜରା ରାକ୍ଷସୀର
ଗ୍ରାସୁଥିବା ଶୁଣି ଋଷି ରୋଷେ-ଦେଲେ ଶାପ
ଯାରେ ଜରା ହୁଅ ନୃପସୁତ ହାତେ ହତ
ନୃପହସ୍ତେ ଫଳ ଦେଖି ଋଷିସ୍ପର୍ଶ କରି
କହିଲେ ଭୂପାଳେ ପାଳ ଆମ୍ଭ ଉପଦେଶ
ନେଇ ଦିଅ ତୋ ସତୀକି ପ୍ରିୟବତୀ ଯେବା
ଖାଉ ସେ ଅବଶ୍ୟ ସୁତ କରିବ ପ୍ରସୂତ
ଏତେ କହି ଅନ୍ତର୍ହିତ ହେଲେ ତପୋବନ୍ତ
ଏଥୁଅନ୍ତେ ଫଳ ଧରି ଧରିତ୍ରୀ ଈଶ୍ୱର
ନିଜ ପୁରେ ଆସି ଦେଲେ ସୁମତୀସତୀକି
ଏକାନ୍ତେ ଡକାଇ ତାକୁ ପୁତ୍ର କଥା କହି
ସୁମତୀ ଫଳ ଭୁଞ୍ଜିବା କାଳେ ସେ ଅଜାଗେ
ଆସିଗଲା ଚାରୁମତୀ ଚାରୁରୂପବତୀ
ଦେଖି ତାକୁ ପ୍ରୀତି ବଶେ ବେନିଫାଳ କରି
ତା ହସ୍ତେ ଅର୍ପିଲା ଭକ୍ଷିବାକୁ ଏକଫାଳ
ତଦନ୍ତେ ଭକ୍ଷିଲେ ଦୁହେଁ ଫଳେ ଫାଳେ ନେଇ
କେତେ ଦିନ ଅନ୍ତେ ଦୁହେଁ ହେଉଁ ଅନ୍ତଃସତ୍ତ୍ୱା
ଦୋଷ ବାଣ୍ଟିନେଲେ ଅଙ୍ଗ ପ୍ରତ୍ୟଙ୍ଗାଦି ତାଙ୍କ
ବମଥୁ ବହିଲା କଣ୍ଡୁ କ୍ଷବଥୁ ନାସିକା
ଜୃମ୍ଭଣ ବଦନ ପୁଣି ହୃଲ୍ଲାସ ହୃଦୟ
ଆଳସ୍ୟ କୃଶତା ଦୁଇ ବହିଲା ଶରୀର
ନେତ୍ର ବକ୍ତ୍ର ଦୁହେଁ ବାଣ୍ଟିନେଲେ ସଜଳପ
କଟି ପୃଥୁଳତା ପଦଯୁଗ ବହେ ସ୍ଫୀତି
ଅଧର ଚୁଚୁକ ଦୁହେଁ ବହିଲେ କାଳିମା
ଘେନିଲା ଅରୁଚି ଜିହ୍ୱା ମାନସ ଔଦାସ୍ୟ
ଗରଭ ଗୁରୁତା ପୁଣି ଶିଥିଳତା ହସ୍ତ
ଅଧିକେ ବହିଲା ପିଣ୍ଡ ପାଣ୍ଡୁତାକୁ ଆଣି
ସବୁଠାରୁ ବଡ଼ବୋଲି ବଡ଼ିମା ପ୍ରକାଶି
କନକ ପ୍ରତିମା ପରେ ପାରଦ ରସ...
ଉପମା ପାଇଲା ତେଣୁ ପୁରସ୍କାର...

ବାଈଆ ଯେବେ ଲୋଡ଼ି ଆଣେ ସ୍ୱାଦୁ ସ୍ନିଗ୍ଧ ଦ୍ରବ୍ୟ
ତୁଣ୍ଡ ତୁଚ୍ଛ ମଣି କରେ ମୃତ୍ତିକା କବଳ
ତୁଣ୍ଡ ପକ୍ଷଧରି ପିଣ୍ଡ ତେଜି ମୃଦୁଶଯ୍ୟା
ମୃତ୍ତିକା ତଳେ ସେ ବଳେ କରଇ ଶୟନ
ଏହି ମତେ କେତେ ମାସ ଶେଷ ହୋଇଯାନ୍ତେ
ଏହି ଦୁହିଙ୍କର ହେଲା ବିବାଦ ଆରମ୍ଭ
ଗର୍ଭ ବୋଲେ ଆରେ ଧଡ଼ ବୋଲାଉ ତୁଁ ବଡ଼
ଦେଖ ମୋର ସ୍ୱରୂପ ବଢ଼ିବି ଆଉ କାଳେ
ଧଡ଼ ବୋଲେ ବଡ଼ବଡ଼ ଆରେ ଗର୍ଭମୂଢ଼
କାଳେ ହେବୁ ଲଡ଼ବଡ଼ ଗର୍ବ ଯିବ ଭାଜି
ମହିଷୀଙ୍କ ଗର୍ଭବାସ ଦେଖି ସେ ନରେଶ
ଅପାର ଆନନ୍ଦ ଯେହ୍ନେ ରଙ୍କ ଗୁପ୍ତଧନେ
ଯେବେ ଯା ଇଚ୍ଛନ୍ତି, ଦୁହେଁ ଆଣି ତା ତକ୍ଷଣେ
ନିବେଶନ୍ତି କରେ ପୂର୍ବଠାରୁ ଅତି ସ୍ନେହେ
ଏଭାବେ ହୁଅନ୍ତେ ଦଶମାସ ଦଶଦିନ
ଜନ୍ମିଲେ କୁମାରଦ୍ୱୟ ଉଭୟ ଗରଭୁଁ
ଏକ କାଳେ ଫାଳେ ଫାଳେ ଉଭୟ ରାଣୀର
ଏକ କର ପଦ କର୍ଣ୍ଣ ନେତ୍ର ଏକ ଏକ
ନିଷ୍ଫଳ ନିଶ୍ଚଳ ପ୍ରାଣ ଅଛି କିବା ନାହିଁ
ଭୃତ୍ୟମାନେ ଜଣାଇଲେ ପୁତ୍ର ଜନ୍ମକଥା
ବେନିରାଣୀଙ୍କର ଯାଇ ରାଜାଙ୍କ ଗୋଚରେ
ଲଭିଲେ ପ୍ରଭୂତ ଧନ ବସ୍ତ୍ର ଅଳଂକାର
ରାଜା ଅନ୍ତଃପୁରେ ଆସି ପ୍ରବେଶିଲେ ଖରେ
ଦେଖିଲେ କୁମାର ଦ୍ୱୟ ଅର୍ଦ୍ଧ ଅର୍ଦ୍ଧ ଦେହୀ
ହେଲେ ବିରସ ମାନସ ଶୁଷ୍କମୁଖ ପୁଣି
ନୀରବ ନିଶ୍ଚଳ ଜଡ଼ ଯଥା ଶୁଷ୍କତରୁ;
କିଛିକ୍ଷଣ ପରେ କ୍ଷୀଣ ସ୍ୱରେ ଆଦେଶିଲେ
ଯଥା ତାରଚ୍ଛିନ୍ନ ବୀଣା ଅବା ଶ୍ୱାସ ରୋଗୀ
ନିବେଶ ଶ୍ମଶାନେ ନେଇ ମୃତ ଶିଶୁଦ୍ୱୟ
ନିଷ୍ଫଳ ମୋ ଯାଗ ଯଜ୍ଞ ତପସ୍ୟା ସକଳ

ଆଶା ଭରସା ମୋ ପୁଣି ନିର୍ମୂଳ ସମସ୍ତ
ଯଥା ଫଳୋନ୍ମୁଖ ବୃକ୍ଷେ ଅଶନିପତନ
ହାୟବଧି କିବା ସିଦ୍ଧି ହେଲାରେ ତୋହର
ବିଫଳ କଲୁ ତୁଁ ମୋର ମନୋରଥ ଫଳ
ହେ ଦୂର୍ବାସା ଋଷିବର ତୁମ୍ଭଦେବା ବର
ହୋଇଲା ଅନ୍ୟଥା ସିନା ମୋ ଦୂଷ୍କର୍ମ ଫଳେ
ଏପରି ଅନେକ ଶୋକ କଲେ ନୃପମଣି
ସଂତୃପ୍ତ ହୃଦୟ ହେଲ ଶୋକେ ସନ୍ତାପିତ
ତାପଇ ଆତପେ ଯଥା ସ୍ନିଗ୍ଧ ଶିଳାଖଣ୍ଡ
ରାଣୀ ଅନ୍ତଃପୁରେ ଶୋଭେ କ୍ରନ୍ଦନର ରୋଳ
କୁରରୀ ନିକଣ୍ଡ କିରେ ରାବେ ଏକମେଳେ,
ରାଜା ଦୁଃଖେ ସମଦୁଃଖୀ ହୋଇ ପୁରବାସୀ
ରୁଦିନ୍ତେ ନିରବେ ନେତ୍ରୁ ଅଶ୍ରୁ ବରଷାଇ
ଯଥାରେ ନିଃଶବ୍ଦେ ଉଷ୍ଣ ଭୂମିବର୍ଷୁ ଝରେ
ତହିଁ ଅନ୍ତେ ମୃତଶବଦ୍ୱୟ ଘେନି ଭୃତ୍ୟେ
ଶ୍ମଶାନେ ନିବେଶେ ନେଇ ନୃପାଦେଶ ପାଳି
ନଗର ବାହାରେ ଜରା ଭ୍ରମୁଥିଲା ରାତ୍ରେ
ଶ୍ମଶାନ ଭୂମିରେ ରହି ଶବ ଅନ୍ୱେଷଣେ
ଭ୍ରମି ଭ୍ରମି ଆସି ଦେଖେ ଶିଶୁ ଶବଦ୍ୱୟ
ପଡ଼ିଅଛି ସେ ଶ୍ମଶାନେ ଅବିକୃତ ଭାବେ
ହରଷେ ଗୋଟାଇ ଦେନି ଶବ ଏକାବେଳେ
ଗର୍ଭେ ନିକ୍ଷେପିଲା କ୍ଷୁଧାନଳ ଶାନ୍ତି ଲାଗି
କେତେକାଳ ଅନ୍ତେ ଗର୍ଭେ ଶବ ବେନି ଫାଳ
ଯୋଡ଼ି ହୋଇ ଜୀବନ ପାଇଲା ତତକ୍ଷଣେ
ଯୋଟେ ସୁହାଗାରେ ଯେହ୍ନେ ସ୍ୱର୍ଣ୍ଣବେନିପଟ
ଅସମ୍ଭାଳେ ଭ୍ରମେ ତେଣୁ ଜରାର ଉଦରେ
ହେବାକୁ ବାହାର ତାରେ ମାର୍ଗ ଅନୁସରି
ମାତ୍ର ଅଧି ନ ପାଇ ସେ ହୋଇ କ୍ରୁଦ୍ଧମତି
ପଦାଘାତେ ବିଦାରିଲା ରାକ୍ଷସୀ ଉଦର
ବିଦାରି ଆର୍ଦ୍ର ମୃତ୍ତିକା ପିଣ୍ଡ ଅତ ତାଣ୍ଡେ

କଳିକତରାଖ୍ୟା କୀଟ ନିଃସଭଇ ଯଥା
ବଳବନ୍ତ ଶିଶୁ ତହୁଁ ଶବର ଉପରେ
ପଡ଼ି କୁଆଁ କୁଆଁ ରାବେ ରାବିଲା ଅପାର
ଭାଷେ କିରେ ଗିରିଶିରେ ଅଣ୍ଡିର କୋକିଳ
ପୁରଜନେ ଶୁଣି ତାର କ୍ରନ୍ଦନ ନିସ୍ୱନ
ଚିତ୍ରମଣି ଜଣାଇଲେ ନରେଶ ସବେଶେ
ମଣିମା ଶ୍ମଶାନେ ଶୁଭେ ବାଳକ ରୋଦନ
ଆଶ୍ଚର୍ଯ୍ୟ ଘଟନା ଆଦି ନିରେଖନ୍ତୁ ନିଜେ
ଶୁଣି ନିଜେ ବୃହଦ୍ରଥ ହୋଇଲେ ବାହାର
ପାତ୍ର ମିତ୍ର ସହକାରେ ଦ୍ୱିତୀୟ ପ୍ରହରେ
ହୁଳା ବାଳି ଦେଖେ ତହିଁ ରାକ୍ଷସୀର ଦେହେ
ଅପୂର୍ବ କୁମାର ଶୋଇ ରାବେ ଉଚ୍ଚରବେ
ଜରାମୃତ୍ୟୁ ଦେଖି ରାଜା ମନେ ହେଲେ ସୁଖୀ
ଜଣା ଯାଉଁ ନିଜସୁତ, ଆଣିଲେ ଘେନାଇ
ଦେଲେ ରାଣୀକୋଳେ ଲଭି ଅପାର ଆନନ୍ଦ
ଯେସନେ ଚକୋର ପୂର୍ଣ୍ଣ-ଚନ୍ଦ୍ର-କର ଲଭେ
ପୁରେ ଉତ୍ସବ କହିଲେ ରାଜା ପ୍ରଜା ମିଳି
ଆନନ୍ଦ ଶବଦ ନାଦେ କମ୍ପେ ଚଉଦିଗ
ପାଳିଲେ ଯତନେ ପୁତ୍ର ନିଜ ପ୍ରାଣ ସମେ
ରାଣୀବୃନ୍ଦ କୋଳେ କୋଳେ ଘେନି ଅବିରତ
କଳନାଦୀ ଯନ୍ତ୍ର ଯଥା ଯାଏ କୋଳୁଁ କୋଳ
ବାଦକଗଣର ମନଃପ୍ରାଣ ନିମଜ୍ଜାଇ
ସନ୍ଧିଥିଲା ଜରା ବୋଲି ବିଚାରି ମାନସେ
ଜରାସନ୍ଧ ନାମ ତାର ରଖିଲେ ସାର୍ଥକେ
ହୋଇପାରେ ପଛେ ରବି ପଶ୍ଚିମେ ଉଦୟ
ସାଧୁଜନ କଥା କେବେ ନୁହଇ ଅନ୍ୟଥା

ଇତିଶ୍ରୀ ଜରାସନ୍ଧ ବଧ କାବ୍ୟେ ଜରାସନ୍ଧ ଜନ୍ମବର୍ଣ୍ଣନେ ନାମ
ଚତୁର୍ଥଃ ସର୍ଗଃ ।

——

## ପଞ୍ଚମସର୍ଗ

ଶୁକ୍ଳପକ୍ଷ ଦ୍ୱିତୀୟାର ଶଶାଙ୍କ ସଂକାଶ
ବଢ଼ିଲା କୁମାରବର ଦିନୁଁଦିନ ତହିଁ
ବୟସର ସଙ୍ଗେ ଅଙ୍ଗଦେଶେ କଲେ ବାସ;
ରୂପ ଘେନି ଶୋଭାନାରୀ ପୁଣି କନ୍ୟାକାନ୍ତି,
ବଳ ଘେନି ଅଭିମାନ କ୍ରୋଧ ଗର୍ବ ସଖା
ବାକ୍ୟ ଘେନି ମଧୁର କର୍କଶ ଓଜ ତିନି
ଗତି ଘେନି ଦଣ୍ଡ ଖଣ୍ଡ ଚାଣ୍ଡ ଆଦି କରି,
ଏହା ପରେ ଯୌବନ ଆସିଲା ମହାଦର୍ପେ
ଅଧିକାର କଲା ତାର ସର୍ବ ଅଙ୍ଗଦେଶ
ଦାନ କଲା ପାତ୍ର ମିତ୍ରେ ତହୁଁ ଏହି ମତେ;
ଶିରକୁ ସୀମନ୍ତ ଭୁଜଦ୍ୱୟକୁ କାର୍କଶ୍ୟ
ମାନସକୁ ଆହାଲାଦ ଚର୍ମକୁ ସୌଷ୍ଠବ
ବଦନକୁ ହାସ ଗୁଣି ନାମାକୁ ସୁବାସ
ନେତ୍ରକୁ ଭ୍ରୂଭଙ୍ଗ ରଙ୍ଗ ହୃଦକୁ ପଦକ
କଣ୍ଠକୁ ରତନହାର କରକୁ ବଳୟ
ଆନ ଆନ ମାନେ ନେଲେ ବସନ ଭୂଷଣ;
ହୃଷ୍ଟପୁଷ୍ଟବଳିଷ୍ଠ ହୁଅନ୍ତେ ରାଜସୁତ
ବହୁଯୋଷା ଯୋଗାଇଲେ ତା ପାଶେ ନରେଶ
କରିଣୀ ଆୟତ୍ତ ଜାଣି ମଦମତ୍ତକରୀ
ବିଭା ବିଧିରେ ଅଣାଇ ମହାମହୋତ୍ସବେ
ଦେଲେ ରାଜ୍ୟଭାର ହେଲେ ସ୍ୱସ୍ତ୍ରୀକେ ବନସ୍ଥ;
ସେହି ଦିନୁ ତେଜଓଜ ପ୍ରତାପ ଦେଖାଇ
ପାଳିଲେ ସେ ରାଜ୍ୟ ଜରାସନ୍ଧ ହୋଇ ରାଜା
ଗଢ଼ାଇଲେ ନବସଞ୍ଚେ ଆପଣା ନବର
ନାନାବର୍ଣ୍ଣ ଶିଳା ସ୍ୱର୍ଣ୍ଣ ଉପାଦାନ ଦାନେ
ମଣି ରତ୍ନ ଦନ୍ତୀଦନ୍ତ ଯତନେ ଜଡ଼ାଇ

ମହାମନୋହରେ ଶତ୍ରୁ-କଣ୍ଟକ ଆଖ୍ୟାରେ
ରଖି ତହିଁ ଚାରିଦ୍ୱାର ଚତ୍ୱର ସହିତେ
ମେଢ଼ ମଣ୍ଡପ ଜଗତୀ ଆଦି ଛନ୍ଦବନ୍ଧେ
କାହିଁ ସଞ୍ଚ ମଞ୍ଚ କାହିଁ ପର୍ଯ୍ୟଙ୍କ ରାଜିତ
କାହିଁ ଦୋଳେ ଦୋଳି କାହିଁ ଲମ୍ବେ ଚନ୍ଦ୍ରାତପ
କାହିଁବା ଶାଣିତ ଅସ୍ତ୍ର ଶସ୍ତ୍ର ରାଶି ରାଶି
ଜନ ମନ ନେତ୍ର ତ୍ରାସକର ତେଜେ ଝଳେ
କାହିଁ ରତ୍ନ ବସ୍ତ୍ର କାହିଁ ବାଦ୍ୟଯନ୍ତ୍ରମାନ
କାହିଁ ଛତ୍ର ଚାମର କାହିଁବା ଗଜବାଜୀ
ରକ୍ଷିତ ଯତନେ କକ୍ଷମାନଙ୍କ ସୁବକ୍ଷେ
ପୋତିଲେ ବିଜୟ ସ୍ତମ୍ଭ ପୁର ଅଗ୍ରଭାଗେ
ଶତ୍ରୁଞ୍ଜୟ କେତୁ ଚୂଡ଼େ ଉଡ଼ାଇ ପ୍ରଖରେ
ମହାବଳବନ୍ତ ବଜ୍ରତୁଲ ତାଙ୍କ ହିଆ
ସିଂହ ବ୍ୟାଘ୍ର କର୍ଣ୍ଣଧରି ଓଟାରନ୍ତି ପାଶେ
ଶକ୍ତ ଶିଳାଖଣ୍ଡ ପାଦେ କରନ୍ତି ଖଣ୍ଡନ
ମୁଷ୍ଟିରେ ଚୂରନ୍ତି ଲୌହ ଯଷ୍ଟି ମସୀ ସମେ
ଦଣ୍ଡ ପ୍ରଚଣ୍ଡତା ତାଙ୍କ ଚାହିଁ ଦଣ୍ଡଧରେ
ଶଙ୍କି କମ୍ପି ରହିଥାନ୍ତି ଭୃତ୍ୟଜନ ବତ
ଗିରିବ୍ରଜ-ପୁର ପ୍ରାନ୍ତେ ଚନ୍ଦ୍ରଚୂଡ଼ ନାମେ
ବିରାଜଇ ଗିରିରାଜ ନେତ୍ର ଅଭିରାମ
ନାନା ତରୁଲତା ଫୁଲ ଫଳେ ମଣ୍ଡିହୋଇ
ଆନତ ସତେ, ବାସ ପ୍ରସାରି ଚୌଦିଗେ
ସିଂହ ଶାର୍ଦ୍ଦୂଳାଦି ବହୁ ଶ୍ୱାପଦ ଆସ୍ପଦ
ହେବାରୁ ସେ ଗିରି ପୁଣି ବିଶେ ଭୟଙ୍କର
ଦେବୀଧାରା ନାମେ ତହୁଁ ଝରଇ ପ୍ରପାତ
ଗିରିପାଦ ଦେଶେ କରି ଭୀଷଣ ନିନାଦ
ନିତ୍ୟ ଶୀତ ହେତୁ ସେହି ଜନଶୂନ୍ୟ ସ୍ଥଳୀ
ଶୈତ୍ୟର ଆବାସ ଭୂମି ଆଭାସେ ମାନସ

ଯୁଗାନ୍ତର ଦ୍ରୁମାବଳୀ ନଭେ ତୋଳି ଶିର
ରହିଛନ୍ତି ଗିରିଜୟସ୍ତମ୍ଭ ପରକାରେ
ତହିଁ ନିବସନ୍ତି ଦେବୀ ମହାଭଇରବୀ
ଶତ୍ରୁ ନିକୃନ୍ତନୀ ଖଡ୍ଗ ଖର୍ପର ଦ୍ୱିଭୁଜେ
ଆନ ବେନି ଭୁଜେ ଶୋଭେ ବରାଭୟ ବେନି
ନବଯୌବନ ସମ୍ପନ୍ନା ପୂର୍ଣ୍ଣାନନ୍ଦମୟୀ
ଗଳିତ ଶୋଣିତ ସିକ୍ତା ସୃକ୍କଣୀ ଧାରିଣୀ
କ୍ୱଣିତ କିଙ୍କିଣୀ ମଧ୍ୟା ସିଦ୍ଧା ପୀତାମ୍ବରୀ
ନୃମୁଣ୍ଡମାଳିନୀ ମଦବିଘୂର୍ଣ୍ଣିତ ନେତ୍ରା
ଭୈରବ ରୂପିଣୀ ପୁଣି ଭୈରବନାଦିନୀ;
ନିତି ନିତି ଯାଇ ଜରାସନ୍ଧ ନୃପବର
ପୂଜନ୍ତି ଦେବୀଙ୍କୁ ତହିଁ ଇଷ୍ଟରୂପେ ବରି
ମେଷ ମହିଷ ମନୁଷ୍ୟ ଛାଗ ବଳି ଭୁଜା
ମଦ୍ୟମାଂସ ଆଦିକରି ବିବିଧ ଉପଦେ
ଗନ୍ଧପୁଷ୍ପ ଧୂପଦୀପ ସିନ୍ଦୂର କଜ୍ଜଳ
କୁଙ୍କୁମ କର୍ପୂର ପୁଣି ବସ୍ତ୍ର ଭୂଷା ଦାନେ
ତୋରଣା ପତାକା ଛତ୍ର ଚାମର ଉଭାରି
ଭେରୀ ତୂରୀ ଘଣ୍ଟୀ ଘଣ୍ଟା ନାନାବାଦ୍ୟନାଦେ;
ଯନ୍ତ୍ର ମନ୍ତ୍ର ଜପ ହୋମ କରି ତନ୍ତ୍ରମତେ
ରାକ୍ଷସ ସ୍ୱଭାବ ବଶୁଁ ସାତ୍ତ୍ୱିକ ବରଜି
ରାଜସ ତାମସ ଭରା ଦୃଢ଼ ଭକ୍ତି ଥୋଇ;
ତୋଷେ ଜଗ୍ରସନ୍ଧେ ଦେବୀ ଦେଉଥାନ୍ତି ବର
ଯେବେ ଯାହା ଇଚ୍ଛନ୍ତି ତା ମନୋରଥ ପୂର୍ଣ୍ଣେ
ମାତା ନାନାଫଳ ଦେଇ ତୋଷେ ଯେହ୍ନେ ପୁତ୍ରେ
ଦେଇଛନ୍ତି ଥରେ ତାଙ୍କୁ ଶତ୍ରୁଘାତୀ ଗଦା
ଯା ପ୍ରହାରେ ସୁରାସୁର ମରେ ନର କିବା
ପୁଣି ଦେଇଛନ୍ତି, ବାରେ ବିଶ୍ୱଜୟୀ ଖଡ୍ଗ
କରେ ଥିଲେ ଜିଣି ନ ପାରନ୍ତି ହରବ୍ରହ୍ମା

ଧନୁର୍ବେଦ ବିଶାରଦ ହେଲେହେଁ ସେ ଭଲେ
ମଲ୍ଲଯୁଦ୍ଧେ ପ୍ରୀତି ତାଙ୍କ ଥାଏ ଅବିରତ
ପୁଷ୍ପଚୁମ୍ବୀ ମିଳିନ୍ଦର ମାକନ୍ଦେ ଯେସନ;
ସୁକାନ୍ତ ବସନ୍ତ ଅନ୍ତେ ନିଦାଘ ସମୟ
ବାଘ ସମ ପ୍ରବେଶିଲା ପ୍ରଖରେ ମହୀରେ
ଘୂର୍ଣ୍ଣୀ ବାୟୁ ପଦ ଘଷି ରୋଷେ ଭୂମିତଳେ
ସିଞ୍ଚିଲା ପଦବୀ ଧୂଳି ବିଷ୍ଣୁପଦ ଦେଶେ
ଗର୍ଜିଲା ପ୍ରଚଣ୍ଡେ ଥରେ ଥରେ ବାତ୍ୟାନାଦେ
ତପ୍ତବାତ ଲାଙ୍ଗୁଳ ଖେଳାଇ ଇତସ୍ତତେ
ପୁଣି ମରୀଚିକା ଚକ୍ଷୁ ଉନ୍ମେଷି ଭୀଷଣେ
ରବି ରଶ୍ମିରସନା ସଂଚାଳେ ଉଗ୍ରତେଜେ
ଜୀବନ ଶୋଷନ୍ତେ ଆସି ଜଳାଶୟଙ୍କର
ହୋଇଲେ ଆକୁଳ ଜଳଚର ଜୀବକୁଳ
ଦେଖି ପ୍ରାଣିବର୍ଗ ଲୁଚେ ଇତସ୍ତତଃ ହୋଇ
ତ୍ରାସ ବଶେ ବହେ ଦେହୁଁ ଘର୍ମ ଗମଗମ
ଲୋକେ ଲୋକାଳୟେ ପକ୍ଷୀ ଲୁଚନ୍ତି କୁଳାୟେ
ପଶୁଏ ଲୁଚନ୍ତି ଯାଇ ଗହ୍ୱର ବିବରେ
ଜଳଯନ୍ତ୍ର-ପୁରେ ଧନୀ ଲୁଚଇ ଗୋପନେ
ସଦରେ ଦରିଦ୍ର ଲୁଚେ ଉଦକ ଉଦରେ
ରଚେ ଅଶ୍ୱନୃତ୍ୟ ଛଟା ପଥିକର ପଦ
ତା ପ୍ରଖର ତେଜ ଚାହିଁ ଚାଲୁଥିବା ପଥେ
ଶୁଷ୍କକଣ୍ଠେ ଘର୍ମ ପୋଛି ଉତପ୍ତ ଲଲାଟୁଁ
ବିକଳେ ଲୋଡ଼ଇ ତରୁ ଆଶ୍ରା ତ୍ରାସବଶେ;
ଏକାଳେ ଦିନେ ସେ ରାଜା ନାବକେଳି ଆଶେ
ସଜାଇଲେ ତରୀ ଏକ ବିଚିତ୍ର ସଜାରେ
ଉର୍ଦ୍ଧ୍ୱେ ବସନରବାସ ଶୋଭେ ନାନାବର୍ଣ୍ଣେ
ବିବିଧ ରତନ ଝରା ଝୁଲି ପୁଞ୍ଜ ପୁଞ୍ଜ
ଉଡ଼ଇ ତା ଚୂଡ଼େ ଧ୍ୱଜ ପତାକା ନିକର

ମନ୍ଦ ସମୀରଣ ଯୋଗେ ଫରହର ହୋଇ
ଛିଡ଼ି ପଡ଼ିଛି କି ଇନ୍ଦ୍ରଧନୁ ଖଣ୍ଡେ ଆସି
ଖସୁଥିବା ଉଲ୍କାରାଶି ଗ୍ରହ ବ୍ୟୋମ ଦେଶୁଁ
ସୁରନଦୀତୀରେ ଆଣି ଲଗାଇଲେ ତରୀ
ଥୋଇଲେ ତହିଁରେ ବୀଣା ରବା ଆଦି ବାଦ୍ୟ
ସଙ୍ଗୀତ ଆଳାପେ ଯେବା ହୁଏ ପ୍ରୟୋଜନ
ଚାରି ପଟ୍ଟମହିଷୀଙ୍କୁ ସଙ୍ଗେ ଘେନି ବସି
ରୂପବତୀ ଚାରୁଧାରା ପୁଣି ହାରାବତୀ
ଭାନୁମତୀ ସାନୁମତୀ ବହନ୍ତି ଯେ ନାମ
ଆଷାଢ଼ାନକ୍ଷତ୍ରାନ୍ୱିତ ତାରାପତି ବତ
ବାହିଲେ କ୍ଷେପଣୀ ବହି ନୃପଣୀ ଏକାକୀ
ଖରତର ସ୍ରୋତ ଅଭିମୁଖେ ମନଃ ସୁଖେ
ହାସ ରସ କଉତୁକେ ଚଳିଯାନ୍ତି ଧୀରେ
ଏକାଳେ ପ୍ରବଳଝଡ଼ ପ୍ରବେଶି ସେ ସ୍ଥଳେ
ଘୋର ଘୋଷେ ଚକ୍ରାକାରେ ବହିଲା ପ୍ରଖରେ,
ତମସେ ଗରାସି ଦିଶ ରଜୋରାଶି ଘେନି
ଭାଙ୍ଗିଲା ପୁର ପ୍ରାଚୀର " " " ମଣ୍ଡପ
ବୃକ୍ଷଲତା ବନ ଉପବନ କାହିଁ କେତେ
ଘାତ ପ୍ରତ୍ୟାଘାତେ ପୁଣି ଜଳ ଉଦ୍ବେଳାଇ
ମଜ୍ଜାଇଲା ତରୀ ରାଜାରାଣୀଙ୍କ ସହିତେ
ଆର୍ତ୍ତନାଦ କରି ସର୍ବେ ମଜ୍ଜିଲେ ସେ ଜଳେ
ତୀରେ ରହି ଚରୁଥିଲା ତହିଁ ଖର ଏକ
କରେ ଯେବା ରଜକର ବସନ ବହନ
ତାହିଁ ସେ ଗର୍ଦ୍ଦଭ ପଶିଗଲା ନଦୀ ଗର୍ଭେ
ରାଜା ମଗ୍ନ ସ୍ଥାନେ ଯାଇ ମିଳିଲା ଝଟିତି
କହିଲା ଭୋ ନୃପ : ତିଷ୍ଠ ମୋର ପୃଷ୍ଠ ପରେ
ବହି ନେଇ ଯିବି ଝଟ ଏତଟ ପ୍ରଦେଶେ
ବହୁକାଳ ତୁମ୍ଭ ଅବଧିରେ ଥିଲି ରହି

ବିଧି ଘଟାଇଲା ଆଣି ଆଜି ମିତ୍ରସଙ୍ଗ
ରାଜା ବୋଲେ ବଡ଼ଭାଗ୍ୟ ଥିଲା ଆଜି ମୋର
ଖର ରୂପେ ପ୍ରାଣରକ୍ଷା କଲ ବୃଦ୍ଧସେନ
ମାତ୍ର କହୁଛଁ ହେ ମିତ୍ର ! ବଞ୍ଚିଲେ ଏକାକୀ
ତହିଁରେ କି ଫଳ, ରାଣୀମାନେ ଯେବେ ମଲେ
ପରାଣ ନ ଥିଲେ ପିଣ୍ଡେ କିବା ପ୍ରୟୋଜନ;
ଶୁଣି କହେ ଖର ତହୁଁ ଶୁଣ ମିତ୍ରବର !
ବିଶୀର୍ଣ୍ଣ ଶାଳ୍ମଳୀ ତରୁ ରୂପେ ସତ୍ୟସେନ
ରହିଛନ୍ତି ନଦୀ ବକ୍ଷେ ତୁମ୍ଭ ପ୍ରତୀକ୍ଷାରେ
ଅଚିରେ ସେ ବଞ୍ଚାଇବେ ତବ ଚାରିରାଣୀ
ଶୁଣି ହର୍ଷଭରେ ନୃପ ନୀରେ ନିରେଖନ୍ତେ
ଦେଖନ୍ତି ଚାରିଙ୍କୁ ତହିଁ ପାଦପ ଉପରେ
ବୃକ୍ଷ ଉପୁଡ଼ଇ ରହି ବହି ଚାରିବାଳୀ
ଦ୍ୱିତୀୟ ତରୀରେ ତରୁଥିବା ପରକାରେ
ତହୁଁ ତଟେ ଝଟିତିରେ ମିଳି ଏକକାଳେ
ପରସ୍ପର ମୁଖ ଦେଖି ମନେ ହେଲେ ସୁଖୀ
ଚତୁର୍ଥ ଦ୍ୱାର ସମ୍ମୁଖେ ଖର ରଖି ଯତ୍ନେ
କହିଲେ ହେ ମିତ୍ର ! ରହି ଏହି ଦ୍ୱାର ଦେଶେ
କରୁଥିବ ଶତ୍ରୁ ଉପଗତେ ଭୀମ ରୁତ
ପୁରେ ପଶି ନ ପାରିବେ ଧରିଏ ଯେସନେ
ତହୁଁ ସେ ଶାଳ୍ମଳୀ ପିଣ୍ଡ କୁଣ୍ଢାଇ ଯତନେ
ପୋତାଇଲେ ନିକେତନ ତୃତୀୟ ଦୁଆରେ
କହିଲେ ହେ ମିତ୍ର ! ଶତ୍ରୁ ଉପଗତ ହେଲେ
ଅକସ୍ମାତେ ପଲ୍ଲବିବ ପୁଷ୍ପଜାତ ସହ
ଏତେ ଭାଷି ପଶିଗଲେ ସ୍ୱପୁର ଭିତରେ
ରାଣୀମାନଙ୍କ ସଙ୍ଗତେ ଆନନ୍ଦିତ ଚିତ୍ତେ
ବ୍ୟାଘ୍ରୀ ବ୍ୟୂହ ସହ ବ୍ୟାଘ୍ର ପଶେ କି ଗହ୍ୱରେ
କିଛି ଦିନ ଅନ୍ତେ ପୁଣି ମୃଗୟା ନିମନ୍ତେ
ବାହାରିଲେ ମହାରଣ୍ୟେ ସଙ୍ଗେ ଅନୁଚର

ମୃଗୟାକୁଶଳ ଶ୍ୱାନ ପୋଷାବାଦପକ୍ଷୀ
ଜାଲହସ୍ତ ବ୍ୟାଧ ପୁଣି ବର୍ଚ୍ଛାହସ୍ତ ସାଦୀ
ଯାଏ ପ୍ରେତପତି ଯେହ୍ନେ ଜୀବନାନୟନେ
ଦୁର୍ବାର କିଙ୍କର ସହ ଗତାୟୁଜଗତେ,
ବନେ ପଶି ଏକ ପାର୍ଶ୍ୱେ ଜାଳି ଦେଉଁ ବହ୍ନି
ଚଡ଼ଚଡ଼େ ଯୋଡ଼େ ବନ ଧୂମ ଉଦଗାରି
ଶିଖା ଟେକି ବିହାୟସେ ଭୟଙ୍କର ତେଜେ
ଜୀବ ଜାତ ତ୍ରସ୍ତେ ବ୍ୟସ୍ତେ ଧାଏଁ ଇତସ୍ତତେ,
ଅନ୍ୟପାର୍ଶ୍ୱେ ନିବେଶିଲେ କୁକ୍କୁର କିରାତ
କାଳଗର୍ଭ ଜାଲ ଯେବା ବିସ୍ତାରି ପୁରତେ
ବସିଛନ୍ତି, ତହିଁ ପଛେ ଧନୁର୍ବାଣ କରେ
ସଙ୍ଗେ ରହିଛନ୍ତି ଶ୍ୱାନ ବଦନ ବ୍ୟାଦାନେ
କାଳର ରସନା ପରି ରସନା ବିସ୍ତାରି
ଚଳପୃଷ୍ଠ ଲକ୍ଷ୍ୟ-ଦକ୍ଷ ପୁଣି ବାଜବ୍ରଜ;
ତିରଶ୍ଚାରେ ବର୍ଚ୍ଛାଧରି ସାଦିଏ ମୁରାଟେ
ଜଗିଲେ ଆକଟେ ଆନପଟେ ଦୃଷ୍ଟିଦେଇ
ଆଖେଟ କୁହାଟେ ଚେଟେ ତଡ଼ିଦେଲେ ଜୀବ;
ଗୋଡ଼ାରେ ପଡ଼ନ୍ତେ ଜନ୍ତୁ ମାରନ୍ତି ଅପାର
ଭଲ୍ଲଧରି ମଲ୍ଲମାନେ ଭୁଷି ଭଲ୍ଲ ଦେହେ
ଯାଷ୍ଟିକର ଗୋଷ୍ଠି ଯଷ୍ଟି ପିଟି କିଟି ମୁଣ୍ଡେ
କୁନ୍ତ ଫିଙ୍ଗି କୌନ୍ତିକେ ଶକୁନ୍ତପନ୍ତି ପରେ
ସରଭସେ ଶରପେଶି ଶରଭେ ଧାନୁଷ୍କେ:
ଗଣ୍ଡାର ମହିଷ ଗୟ ହରିଣ ଶଶକ
ଶବୟାଦି ବନ୍ୟ ଜୀବଜନ୍ତୁ ଅକଳନା
ଜାଲ ଜ୍ୱଳନେ କେତେହେଁ ପଡ଼ିଲେ ପୋଡ଼ିଲେ
ଶ୍ୱାନ ବର୍ଚ୍ଛା ମୁଖାଘାତେ କେତେ ହେଲେ ହତ
ଆବର ବାଜବରଜ ନାଶିଲେ କେତେକ
ପିଣ୍ଡ ରହେ ପଡ଼ି ମାତ୍ର ପ୍ରାଣ ଯାଏ ଉଡ଼ି
କର୍ପଟ ନିବଦ୍ଧ ଯଥା କର୍ପୂର କଣିକା;

ଏହି ଅବସରେ ତହୁଁ ଏକ କୃଷ୍ଣସାର
ପଳାଇଲା ଗୋଡ଼ା ମଧ୍ୟେ ପ୍ରାଣର ବିକଳେ
ପ୍ରାଣୁଁ ବଳି ପ୍ରିୟବସ୍ତୁ କି ଅଛି ଜଗତେ,
କର୍ଣ୍ଣ ଶୃଙ୍ଗ ଊର୍ଦ୍ଧ୍ୱେ ଟେକି ପୁଚ୍ଛ ସଂକୁଚାଇ
ଚାରିପାଦେ ଲମ୍ଫଟ ଝମ୍ପି ଖରତର ବେଗେ
ଦେଖି ନୃପବର ଧନୁଃଶର କରେ ଘେନି
ଅଶ୍ୱ ଧୂଆଇଲେ-ତାର ମାର୍ଗ ଅନୁସରି
ଗଲେ ବହୁଦୂର ମାତ୍ର ଶ୍ରମ ହେଲା ସାର
ତୃଷା ଆସି ଆଶ୍ରାକଲା ତାଙ୍କ କଣ୍ଠଦେଶେ
ପିପାସା ନିବାସେ ଯଥା ତ୍ରିଦୋଷିର ଆସ୍ୟେ
ତେଣୁ ଅଶ୍ୱ ବାନ୍ଧିଦେଇ ଏକ ତରୁମୂଳେ
ବସିଗଲେ ଏକ ଶାଳତରୁ ତଳେ ନିଜେ
ବିଞ୍ଚିହେଲେ ଶାଳତାଳ ଘର୍ମ ନିବାରଣେ
ତୃଷା ବଢ଼ନ୍ତେ ବିଶେଷ ଚାହିଁଲେ ଚୌପାଶେ
ସମୀପେ ରହିଛି ଅପରୂପ କୂପ ଏକ
ଜଳଥିବ ଭାଳି ମନେ ଯାଇ ସନ୍ନିଧାନେ
ଅନାଇଲେ କୂପର ଭିତରେ ତରତରେ,
ତହିଁ ଶୁଣିଲେ ଶବଦ 'ତ୍ରାହି ମିତ୍ର ରବେ
ଡାକେ କିରେ ପାଣିଗ୍ରସ୍ତ ତ୍ରାସେ ପାଶ ଲୋକେ
ନାହିଁ ନୀର ଲତାପତ୍ରଗୋତ୍ର ମାତ୍ର କୂପେ
ବିସ୍ମୟମାନସେ ରାଜା ତହିଁ ହେଉଁ ଉଭା
ପୁଣି ତ୍ରାହି ମିତ୍ରରବ ପୁନଃ ପୁନଃ ଶୁଣି
ପୁଛିଲେ ମହାତ୍ମା ତୁମ୍ଭେ କିଏ ସେ ଏ ସ୍ଥାନେ
କିପାଁ ପଡ଼ି ସଡ଼ି ରହ ଏହି ସଢ଼ା କୂପେ
ପାପୀ ନିରୟର କୁଣ୍ଡେ ଦଣ୍ଡ ଲଭେ ଯେହ୍ନେ
କହେ ତହିଁ ଜୟସେନ ଭେରୀ ରୂପଧାରୀ
ବହୁଦିନୁଁ ରହିଅଛି ଏରୂପେ ଏକୂପେ
ତୁମ୍ଭ ଅପେକ୍ଷାରେ ମାତ୍ର ମିତ୍ର ! ଶୁଭଦିନେ

ଭେଟିଲି ତୁମ୍ଭକୁ ଯାହା ସୌଭାଗ୍ୟ ପ୍ରକାଶ
ଘେନି ଯାଅ ସଙ୍ଗେ ଏଥୁଁ ସାଧିବି ମଙ୍ଗଳ
ରାଜା ବୋଲେ ମିତ୍ର ! ମୁଁତ ଭାଷାରେ କାତର
ଉଦ୍ଧରିବି କି ଉପାୟେ କୂପୁଁ କେଉଁ ରୂପେ
ଭେରୀ ବୋଲେ ମୋତେ ଯେବେ ଚୁମ୍ବିବ ଭୂପାଳେ
ତୃଷାଶାନ୍ତି ହେବ ତୁମ୍ଭ ଅବିଳମ୍ବେ ଜାଣ
ତେଣୁ ଚକ୍ଷୁବୁଜି କୂପେ ପଶ ଦେଇ ଲମ୍ଫ
ନୋହିବ ଆୟାସ କିମ୍ବା ଆପଦ ଆବେଗ
ଶୁଣି ରାଜା ଚକ୍ଷୁବୁଜି କୂପେ ଦେଉଁ ଝାମ୍ପ
ଭେରୀ ଭରା ଦେଇ ନେଇ ଓହ୍ଲାଇଲା ତଳେ
ତୃଷାର କାତରେ ଭେରୀ ଚୁମ୍ବନ୍ତେ ଆତୁରେ
ତୁମ୍ଭେ ଯଥା ମାତୃସ୍ତନ ତୃଷାର୍ତ୍ତେ ନନ୍ଦନ
ବିନାଶିଲା ତୃଷା ଅଙ୍ଗେ ବାସ କଲା ବଳ
ତହୁଁ ଭେରୀଧରି ରାଜା ସେ କୂପୁଁ ବାହାରି
ଯଥାବାଳ ପକ୍ୱତାଳ ଘେନଇ ସ୍ୱକୋଳେ
ଅଶ୍ୱେ ଚଢ଼ି ଉପସ୍ଥିତ ଗିରିବ୍ରଜପୁରେ
ଦ୍ୱିତୀୟ ଦୁଆରେ ବରି ତାକୁ ସଯତନେ
କହିଲେ ହେ ମିତ୍ର ! ତୁମ୍ଭେ ଏହି ସ୍ଥାନେ ରହ
ରାବିବ ଘୋର ଆରବେ ଶତ୍ରୁ ଉପଗତେ
ଭୟେ ନ ପାରିବେ ପଶି ପୁରେ ସୁରେ ନରେ
ଏହି ଭାବେ ତିନିଦ୍ୱାରେ ରଖି ତିନିମିତ୍ର
ଶତ୍ରୁ ଉପଦ୍ରବ ଚିନ୍ତା ନ ଚିନ୍ତନ୍ତି ବୀର
ବନ୍ଧୁତା ବନ୍ଧନ କରିଥିଲେ ଲୋକ ତୁଳେ
ବିପଦୁଁ ଉଦ୍ଧାର ମିଳେ ଜାଣ ବିଜ୍ଞନର !
କେତେ କାଳ ଅନ୍ତେ ତାଙ୍କ ସହଦେବ ନାମେ
ଉପୁଜେ କୁମାର, ତେଜେ ଅଭିନବ କାମ
ପୁଣି ବେନି କନ୍ୟା ରୂପଗୁଣେ ସୁଶୋଭିତା
ନାମ ରଖେ ନୃପ ହେତି ପ୍ରହେତି ତାଙ୍କର

କାଳେ ହେଉଁ ବେନିଙ୍କର ବିବାହ ବୟସ
ଯୋଗ୍ୟ ପାତ୍ରେ ଯୋଗ୍ୟ ଗୋତ୍ରେ ବାଛି ଗଛି ବର
ମଥୁରା ନରେଶ କଂସ କରେ ସମର୍ପିଲେ
ରାକ୍ଷସ ସ୍ୱଭାବ ବଶୁଁ ରକ୍ଷେ ରଖି ପ୍ରୀତି;
ନରବଳିର ସନ୍ଧାନେ ଜରାସନ୍ଧ ଚାର
ନାନା ବେଶେ ଭ୍ରମୁଥାନ୍ତି ଦେଶେ ଦେଶେ ଯାଇ
ପୁର ନଗର ପାଟଣା ବାଟ ହାଟ ଘାଟ
ବନ ଖାଲ ଝିଲ ଆଦି ନ ଛାଡ଼ନ୍ତି ତିଳେ
ସୁନ୍ଦର ସୁରୂପ ପୁଣି ତରୁଣ ଯୌବନ
ଜନଙ୍କୁ ଆଣନ୍ତି ଧରି ବାଛି ଗଛି କରି
ନିବେଶନ୍ତି କାରାପୁର ଗୁପତ ଭବନେ
କୁବେଣୀରେ ଭରେ ଆଣି ମତ୍ସ୍ୟଜାଳ ଯଥା
ମତ୍ସ୍ୟଘାତୀ ଜାଲ ପାତି ଜଳାଧାର ମଧ୍ୟୁଁ
ତହିଁ ପାଇଁ ବିନିର୍ମିତ ପୁର ଅତି ସଞ୍ଚେ
ସୁଦୃଢ଼ ପାଷାଣ ଖଣ୍ଡ ଲୌହପିଣ୍ଡ ଯୋଗେ,
ବିଶାଳ ବିସ୍ତାର ତାର ଗିରିସମକକ୍ଷ,
ଭୈରବୀ ଦେବୀଙ୍କ ବାମଦିଗେ ଗିରିପଦେ;
ଘୋର ଅନ୍ଧକାର ଯେବା ବନଜନ୍ତୁଶୂନ୍ୟ.
ସୂର୍ଯ୍ୟ ଦୃଷ୍ଟି ପଡ଼ିନାହିଁ ତହିଁ, ସୃଷ୍ଟିକାଳୁଁ;
ବିବିଧ ତରୁ ବ୍ରତତୀ ବେଢ଼ି ଚଉପାଶେ
ରହିଛି ଦ୍ୱିତୀୟ ବପ୍ର ପରକାରେ ତହିଁ
ରହିଥିଲେ ହେଲେ ତହିଁ ଦ୍ୱାର ବାତାୟନ
ନିରାଟ କପାଟ ପଟେ ନିରତ ନିରୁଦ୍ଧ
କିବା ସେ ଅନ୍ଧତାମିସ୍ର ନରକର ବାସ
ହୃଦକମ୍ପକାରୀ ସେହି ଭୟଙ୍କର ସ୍ଥାନେ
କେତେ କେତେ ନରବଳି ସଙ୍କଳିତ ହୋଇ
କଲେଣି ଶୋଣିତେ ଦେବୀ ରସନା ତୃପତି
ମହାତ୍ମା କର୍ଣ୍ଣିକା ବ୍ରହ୍ମଋଷି ପ୍ରିୟସୁତ

ନାମ ଯା ରୋଚିସ ବେଦ ବେଦାଙ୍ଗେ ପାରଗ
ଯାଉଥିଲେ ଦିନେ ତୀର୍ଥାଟନେ ଏକା ହୋଇ
ଗଙ୍ଗାତଟ ସନ୍ନିକଟ ମନୋହର ବନେ
ନାମୁ ଯେ ସୁନ୍ଦର, ଶୋଭା କି ବର୍ଣ୍ଣିତ କବି
ଗୁପ୍ତଚରେ ଭେଟିଲେ ସେ ବ୍ରହ୍ମର୍ଷି କୁମାରେ
ଆଜନ୍ମ ବ୍ରହ୍ମଚାରୀ ଯେ ବୟେ ନବଯୁବା
କାମ ଅଭିରାମ ଆତ୍ମଦର୍ଶୀ ସିଦ୍ଧ ଯତି
ଗୌରଅଙ୍ଗୁଁ ବିକୀରଇ ପ୍ରଭା ତାରତରେ
ନବୋଦିତ ଅଂଶୁମାଳୀ ଦେହୁଁ ଯଥାଦ୍ୟୁତି
ଋଷିବେଶଧାରୀ ସେହି ଗୁପ୍ତଚରମାନେ
କହିଲେ ତାହାଙ୍କୁ ନମି ବିନୀତ ଉକ୍ତିରେ
ହେ ଋଷିତନୟ ! ତୁମ୍ଭେ କେଉଁ ତୀର୍ଥେ ଯାଅ
ଆମ୍ଭେମାନେ ମଧ୍ୟ ତୀର୍ଥଯାତ୍ରା ଅଭିଳାଷୀ
କହିଲେ ସେ ତହୁଁ ବହୁ ତୀର୍ଥାଟନେ ଇଚ୍ଛା
ତୁମ୍ଭେ କି ଆମ୍ଭ ପଶ୍ଚାତେ ଯିବା ଇଚ୍ଛାକର
ଚିରେ ହେଉଁ ଅଙ୍ଗୀକୃତ ଚଳିଲେ ଏକତ୍ର
କେତେତୀର୍ଥ ଭ୍ରମିଲା ଉତ୍ତାରେ ଚରମାନେ
ଭାଷିଲେ ସେ ଋଷିଚାଟେ ଏରୂପେ କପଟେ
ମହାତୀର୍ଥ ରାଜେ ରାଜସ୍ଥଳୀ ନାମ ରାଜ୍ୟେ
ଦେଖି ନାହିଁ ତାକୁ ଯେବା ବ୍ୟର୍ଥ ଜନ୍ମ ତାର
ମହାକାଳ ମନ୍ଦିର ସେ ଚନ୍ଦ୍ରଚୂଡ଼େଯୁତ
ବିନାୟାସେ ବ୍ୟକ୍ତି ମୁକ୍ତି ଖରେ କରେ ପ୍ରାପ୍ତି
ଦେହୀ ଦେହ ବହେ ନାହିଁ, ଆଉ ଏ ମହୀରେ
ଇଚ୍ଛା ହେବେ ଯିବାଚାଲ, ଏକସଙ୍ଗେ ମିଶି
ଶୁଣି ଉତ୍ସୁକ ହୁଅନ୍ତେ ସେହି ଋଷିଦସ୍ୟ
ବାହାରିଲେ ଇଷ୍ଟସିଦ୍ଧି ହେବା ଭାବି ମନେ
ଅଚିରେ ସେ ଗୁପ୍ତଚରେ ତାଙ୍କୁ ସଙ୍ଗେ ଧରି
ଦେଖାଇଲେ ପଥେ ନାନା ତୀର୍ଥସ୍ଥାନ ମାନ:

କେତେ ଦିନ ଗତେ ହେଲେ ମଗଧେ ଆଗତ
ଗିରିବ୍ରଜେ ରଜନୀରେ ମିଳି ସେ ଝଟିତି
ବନ୍ଦୀଶାଳେ ନେଇ ତାଙ୍କୁ ଭରିଲେ କୌଶଳେ
ନିରାଟେ କପାଟ ପାଟି ରୋଧି ପୁରଦ୍ୱାର
ନିପାତେ କିରାତ ଯଥା ନିଜଜାଲ ମଧ୍ୟେ
ଘେରାଇ ଫେରାଇ ଖେଳା ଲୋଳ ମୃଗବାଳେ,
ନୁହନ୍ତି ସେ ବନ୍ଦୀ ପୂରାଇଲେ ବନ୍ଦି ଆଣି
ଜରାସନ୍ଧ ତଳ୍ପତଳେ କାଳବ୍ୟାଳ ମାତ୍ର
ଘୋର ବିଷଜ୍ୱାଳେ ହୃଦ ଜାଳିବ ନା କାଳେ,
ଏକାକୀ ନିର୍ଜନ ଆଉ ଘୋର ତମୋମୟ
ପୁଣି ଦ୍ୱାରରୁଦ୍ଧ ଗୃହେ ରହୁଁ ଋଷିସାର
ବୁଝିବାକୁ ନରହିଲା ତାଙ୍କୁ ଆଉ କିଛି
ତେଣୁ ଯୋଗାସନେ ବସି ଧ୍ୟାନେ ସେ ରୋଚିସ
ଜାଣି ଗଲେ ଛନ୍ଦବନ୍ଧ ସେ ଜରାସନ୍ଧଙ୍କ
ଥିବାରୁ ସେ ସିଦ୍ଧଯୋଗୀ ପୁଣି ଆତ୍ମଦର୍ଶୀ
ପରିହରି ଭୟ ଭ୍ରାନ୍ତି ରହିଲେ ତହିଁରେ
ପିଞ୍ଜରା ମଧ୍ୟେ ନିବନ୍ଧ ଯଥା କୁଞ୍ଜରାରି;
ପଶିଅଛି ଦିନମଣି ଅସ୍ତଗିରିଗର୍ଭେ
ଖସିଅଛି କୋକ ପଦ୍ମ ଆନନ୍ଦ ଉଲ୍ଲାସ
ଘଷିଅଛି ତମାଞ୍ଜନ ପେଚକ ଲୋଚନେ
ଆସିଅଛି ଗୋଷ୍ଠ ଘେନି ଗୋପ ସ୍ୱନିବାସେ
ଫୁଟିଅଛି କୋଟି ପୁଣ୍ଡରୀକ ନଭଃ ସରେ
ତୁଟିଅଛି କୁମୁଦିନୀ ବିରହ ବେଦନା
ଖଟିଅଛି ଦେବଙ୍କ ସ୍ୱଦେବ ସନ୍ନିଧାନେ
ରଚିଅଛି କମ୍ବୁ ଅମ୍ବୁନିଧି ବିଧି ଘୋଷେ
ବହୁଛି ମନ୍ଦାନିଳ ଧୀରେ ଧୀରେ ହୋଇ
ଦହୁଛି ତାପ୍ର ହୃଦବନ କାମାନଳ
ଚାହିଁଛି ଚନ୍ଦ୍ରକାନ୍ତି ଉଦୟ ତାହାରି

ବୋଳିଛି ଧରଣୀମୁଖ ଗାଢ଼ କାଳିମାରେ,
ଶଯ୍ୟା କ୍ରୋଡ଼େ ସୁପ୍ତ ଶିଶୁ ମାତା କ୍ରୋଡ଼ ବର୍ଜି
ନୀଡ଼େ ସୁପ୍ତ ପକ୍ଷୀ ପୁଣି ପଶୁଏ ଗହ୍ୱରେ
ଏକେ ଥିଲା ଗିରିଦରୀ ଅନ୍ଧକାର ସ୍ଥଳୀ
ତହିଁରେ ନିର୍ମିତ ମାର୍ଗରୋଧୀ କାରାପୁର
ପ୍ରବେଶନ୍ତେ ତହିଁ ପୁଣି ତାମସୀମେଳା
ଅନ୍ଧକାର ସୀମା ତାର କେ କରେ କଳନା
ଅନ୍ଧ ତାମିସ୍ର ନରକ ପ୍ରାୟେ ଭୟଙ୍କର
ଖଦ୍ୟୋତର ଦ୍ୟୁତି ମାତ୍ର ଥରେ ଥରେ କାହିଁ
ଦିଶୁଥାଏ ନିଶାନେତ୍ର ଉନ୍ମେଷ ପରାଏ
ଝିଙ୍କାରୀ ଝଙ୍କାରୀ ଶୁଭେ ନିଭୃତ ନିକୁଞ୍ଜେ
ବାଜେ ଯାମିନୀକାମିନୀ ପଦମଞ୍ଜୀରୀ କି
ସେଦିନ ସାନ୍ଧ୍ୟ ବନ୍ଦନା ସାରି ଜରାସନ୍ଧେ
ବାହୁଡ଼ି ଅଛନ୍ତି ପୁରେ ଅନୁଚର ଘେନି
ତେଣୁ ଚରେ ପୁରେ ଯାଇ ଭେଟି ନୃପବରେ
ଜଣାଇଲେ ସପ୍ତବଳି ଆଣିଥିବା କଥା
ଶୁଣି ଆନନ୍ଦିତ ହୋଇ ଜରାସନ୍ଧ ଭୂପ
ଦେଲେ୍ ବହୁ ଧନରତ୍ନ ଗୁପ୍ତଚର କରେ
ଋଷି ମିଶି ସପ୍ତଜଣ ଥିବାରୁ ସେ ଗୃହେ
ଋଷିଙ୍କ ପଡ଼ିଲା ପାଳି ସପ୍ତମ ଦିବସେ
ହଠାତେ ଶଠେ ବିଶ୍ୱାସ କରଇ ଯେ ଜନ
ଲଭଇ ବଧ ବନ୍ଧନ ସାଧୁ ହେଲେ ମଧ୍ୟ

ଇତିଶ୍ରୀ ଜରାସନ୍ଧ ବଧକାବ୍ୟେ ରୋଚିଲା କାରାବାସେ ନାମ
**ପଞ୍ଚମଃ ସର୍ଗଃ ।**

---

# ଷଷ୍ଠ ସର୍ଗ

ଅନନ୍ତର ସେ ରୋଚିସ କାରାବାସେ ରହି
ଭାବିବାକୁ ଲାଗିଲେ ଏ ଭାବେ ମନେମନେ
ସ୍ବରେ କିରେ ବଦ୍ଧ ପକ୍ଷୀ ନାନା ବୃକ୍ଷଶାଖା
କୁଞ୍ଜକାନନ ବିହାରୀ ପକ୍ୱ ଫଳାହାରୀ,
ଧିକ ଜରାସନ୍ଧ ତୁରେ ନିଜ ସ୍ୱାର୍ଥପାଇଁ
କି ଦୁଷ୍କର୍ମ ହିଂସାକର୍ମ କରୁ ମୂଢ଼ପଣେ
ପାଇନାହୁଁ କିରେ ଗୁରୁଠାରୁ ଉପଦେଶ
ଗାଇନାହୁଁ କିରେ ଶାସ୍ତ୍ର ପୁରାଣ ସଂହିତା
ଜଣାନାହିଁ ପରା ଉଣା ! ଧରମର ପଥ
ବଣା ହେଉ ସେଥିପାଇଁ ଅନ୍ଧକଣା ପରି
ଶୁଣା ଗୁଣା ଥାନ୍ତା ଯେବେ ଧର୍ମରୀତିମାନ
ଫୁଲାନ୍ତୁ କି ତେଣାମାନେ ବେଣାବାଣ ପରା
ଛଣା ସୁଧା ପଣା ପରି ଲାଗେ ଜୀବହିଂସା
ପଡ଼ିଲେ ଯମଘଣାରେ ଜଣା ହେବ ତେବେ
ଜୀବହିଂସାଠାରୁ ବଳି ପାପ ନାହିଁ ଆଉ
ଜାଣିନାହୁଁ କିରେ ମୂଢ଼ ନରଜନ୍ମ ବହି
ମାୟାମୟ ଏସଂସାର ନାହିଁ କିଛିସାର
କେତେ ଦିନ ଲାଗି ହୀନ କର୍ମେ ଦେଉ ମନ
ସବୁଠାରୁ ସାର ବିଶ୍ୱେ ପରାତ୍ପର ହରି
ତାଙ୍କ ପାଦେ ମନ ଦୃଢ଼ ନ ରଖୁରେ ମୂଢ଼ !
ଧନ ଜନ ଦାରା ଗୃହ ନିଶାର ସ୍ୱପନ
କେହି ନୋହିବେରେ ସାହା ତୋ ମହାପ୍ରୟାଣେ
କାଳ ଧରିଅଛି ବାଳ ଉବୁରିବ କେବା
ବଳେ ଝିଙ୍କି ନେବ ମତ୍ସ୍ୟେ ମତ୍ସ୍ୟରଙ୍କ ପରା
ଭାବୁ କିରେ ଚିରଦିନ ରହିବୁ ଏ ଦେହେ
ରାଜତ୍ୱ ପଦ ସମ୍ପଦ ଥିବ ଚିରକାଳ

ଇଷ୍ଟମିତ୍ର ଥିବେ ତୋର ସଙ୍ଗେ ନିରନ୍ତର
ବୃଥା ଏ ଭାବନା, ଦଣ୍ଡେ ନ ହେଇ ସମୟ
ନେବ ସ୍ୱସଦନେ ଚାହୁଁଥିବୁ ସ୍ୱବଦନେ
ଚର୍ମପାଶେ ବାନ୍ଧି ଗଳେ ଗଳଥା ଲଗାଇ;
କେତେ କେତେ ନିର୍ଦ୍ଦୋଷ ପ୍ରାଣିଙ୍କୁ-ହତ୍ୟାକରି
ଧର୍ମ ନାମେ ଅଧର୍ମ ଆଚରୁ ପ୍ରୀତି ବହି
ହାୟ ଜରାସନ୍ଧ ମୂର୍ଖ କେଉଁ ସୁଖ ଆଶେ
ଆତ୍ମ ପର ଭେଦ ରଖୁ ନିଜର ହୃଦୟେ
କୀଟୁ ବ୍ରହ୍ମଯାଏ ଯେତେ ଜନ୍ମିଛନ୍ତି, ଜୀବ
ସମସ୍ତେ ସମାନ କିପାଁ ମାନୁନାହୁଁ ମନେ
ଅହୋ କି ଆଶ୍ଚର୍ଯ୍ୟ ? ନରଶ୍ରେଷ୍ଠ ଜନ୍ମ ଲଭି
ସାରାସାର ନ ବୁଝୁରେ ସ୍ୱାର୍ଥ ମୋହେ ପଡ଼ି;
ଦୀନବନ୍ଧୋ ! ତୁମ୍ଭେ ପରା ଧରା ଭାରା ହରା
ସହିଛ କି ଏଦୁଷ୍କର୍ମ ପାମର ନୃପର :
କେଉଁ ଦେବୀ ଏ ପାମର ରାଜା ରାଜ୍ୟେ ରହି
କରେ ବଳି ଭକ୍ଷଣ, ତା ଜାଣେ କିନା ଆଜ
ଏତେ କହି ସେହି ରାତ୍ରେ ଉଠି ତରତରେ
ଦ୍ୱାରଦେଶେ ଉପସ୍ଥିତ ବିହସ୍ତ ମାନସେ
କପାଟେ ହସ୍ତବିନ୍ୟସ୍ତ କରୁଁ ତତକ୍ଷଣି
ଫିଟିଲା କପାଟ କଟ୍‌କଟ୍ ନାଦହୀନେ
ତହୁଁ ବାହାରି ତ୍ୱରିତେ ଅନ୍ଧକାର ପଥେ
କଲେ ଚନ୍ଦ୍ରଚୂଡ଼ ଗିରି ସବେଶେ ପ୍ରବେଶ
ଦେବୀ ଥିବା କନ୍ଦରମନ୍ଦିରେ ଯାଇ ପଶି
ଉଭା ହୋଇ ଦେବୀଙ୍କି ଦେଖିଲେ ଏହିଭାବେ
ରକ୍ତେ ଜରଜର ଦେହ ଗରଗର ଭାଷେ
ରଟମଟ ଦନ୍ତପାଟି ଲହଲହ ଜିହ୍ୱା
ତପ୍ତ ତାମ୍ର ଚକ୍ର ପ୍ରାୟ ଭ୍ରମଇ ଲୋଚନ
ସିନ୍ଦୂରେ ମଣ୍ଡିତ ମୁଖ ଭ୍ରୂକୁଟି କୁଟିଳ
ମନ୍ଦାର କୁସୁମମାଳା ଦୋଳେ ଉରସ୍ଥଳେ

ନରମୁଣ୍ଡମାଳ ସହ ଇତସ୍ତତଃ ଭାବେ
ମଦଭରେ ଝୁଲେ ଯେହ୍ନେ ମତ୍ତ ମାତଙ୍ଗିନୀ
ତେହ୍ନେ ସେ ଝୁଲନ୍ତି ପୀଠେ ମଦ୍ୟବିକ୍ଷେପକାରି
ନରବଳି କଟାମୁଣ୍ଡ ପଡ଼ିଛି ନିକଟେ
ବିକଟେ ତରାଟି ନେତ୍ର ଜିହ୍ୱା ପ୍ରଲମ୍ବନେ
ପଡ଼ିଛି ତଣ୍ଡୁଳ କୁଣ୍ଡ ଭାଣ୍ଡ ପେୟ ପାତ୍ର
ଦଗ୍ଧ ଧୂପ ଦୀପାଧାର ଅର୍ଘ୍ୟାଧାର ସହ
ପତ୍ର ପୁଷ୍ପ ରାଶି ରାଶି ରକ୍ତେ ଜର୍ଜରିତ;
ମହିଷ ଛାଗଳ ଆଦି ଶତ ଶତ ଜୀବ
ମୁଣ୍ଡ ଗଣ୍ଡି ରୁଣ୍ଡ ଧରାତଳ କରି ସିକ୍ତ
ଆମଗନ୍ଧ କରେ ତହିଁ ନାସାରନ୍ଧ୍ର ରୁଦ୍ଧ;
ନିରେଖି ଭୀଷଣ ପୁଣି ଏକଉଦ୍ଭକାଣ୍ଡ
ଜଡ଼ ପିଣ୍ଡବତ ତହିଁ ହେଲେ ଋଷିଚାଟ
ତହୁଁ ସ୍ୱକୀୟ କରକସ୍ଥିତ ତୀର୍ଥୋଦକ
ମେଳ ଯହିଁ ଅଳା ବିଲ୍ୱ ତୁଳସିର ଦଳ
ଦେବୀ ଶିରେ ନିବେଶିଲେ ତନ୍ଦ୍ରାନାଶ ଆଶେ
ଶୀତ ପୂତ ତୀର୍ଥୋଦକ ପଡ଼ନ୍ତେ ମସ୍ତକେ
ତନ୍ଦ୍ରା ହେଲା ହତ ତାଙ୍କ ମତ୍ତତା ସହିତ
ଚିଆଇଁ ଉଠିଲେ ଦେବୀ ବେନି ଚକ୍ଷୁ ମଳି
ପ୍ରସନ୍ନ ବଦନେ ପୁଣି ବିଶଦ ନୟନେ
ଚାହିଁଲେ କର୍ଣ୍ଣିକା ଚାଟେ କୃପା ଦୃଷ୍ଟିଦେଇ;
ତହୁଁ ସେହି ଋଷିପୁତ୍ର ସ୍ତୁତି କଲେ ତାଙ୍କୁ
ପଦ ବନ୍ଦି ଭକ୍ତିଭରେ ଶିରେ କର ଯୋଡ଼ି
ଅୟିମାତଃ ଜଗଦମ୍ବେ ରକ୍ଷିଣି ଭକ୍ଷିଣି
ଅଯୋନି ସମ୍ଭବେ ଆଦ୍ୟାଶକ୍ତି ସୁରେଶ୍ୱରି
ଜଗତଶରଣ୍ୟେ ମାତଃ ଜଗତବରେଣ୍ୟେ
ଦୁଷ୍ଟଦାନବସଂହର୍ତ୍ତ୍ରି ଚରାଚରକର୍ତ୍ତ୍ରି
ଭକତ ବତ୍ସଳେ ଭବ ସନ୍ତାପନାଶିନି

ନମସ୍ତେ ନମସ୍ତେ ବିଶ୍ୱମ୍ଭରେ ଶିବପ୍ରିୟେ
ଅତି ତୃଷ୍ଟ ହୋଇଦେବୀ କହିଲେ ମଧୁରେ
ହୁଅ ବତ୍ସ ! ଦୀର୍ଘଜୀବୀ ପୂରୁ ମନୋରଥ
ସାତ୍ତ୍ୱିକୀ ପୂଜାରେ ତବ ହେଲି ସଂଜ୍ଞାବତୀ
ମଦ୍ୟମାଂସ ଜ୍ୱାଳାରେ ମୁଁ ଥିଲି ହତଚେତା
ପରହିତ ସାଧେ ଯେବା ନିଜ ସାଧ୍ୟ ମତେ
ସୁମଙ୍ଗଳ ଘଟେ ତାର ଅମଙ୍ଗଳ ହଟି;
ତହୁଁ ବ୍ରହ୍ମରଷି ଶିଷ୍ୟେ ସ୍ୱପାଶେ ବସାଇ
ପୁଚ୍ଛନ୍ତି ସ୍ୱାଗତବାର୍ତ୍ତା ପରିଚୟ ସହ
ଶିରେଯୋଡ଼ି ପାଣି ତେଣୁ କହେ ଋଷିସୂତ
ମୁଁ ସେ ରୋଚିସ ଗୋ ମାତଃ ! କର୍ଣ୍ଣିକାକୁମାର
ତୀର୍ଥାଟନେ ଯିବା କାଳେ ରାଜା ଗୁପ୍ତଚରେ
ଆଣିଛନ୍ତି, ଛଳି ମୋତେ ବଳି ଦେବେ ଭାଳି
ରୁକ୍ଷ ଭକ୍ଷ ଭାର ତୋର କୃପାର ଉପରେ;
କହନ୍ତି ଭୈରବୀ ବତ୍ସ ! ଶୁଣ ମୋର ବାଣୀ
ଅପତ୍ୟେ ଭକ୍ଷଇ ମାତା କେବେ କେଉଁଠାରେ
ଶୁଣି କହେ ଋଷିପୁତ୍ର ମନେ ନାହିଁ କି ଗୋ
ମଦ୍ୟମାଂସେ ମତୁଆଳୀ ହେବାରୁ ତୁ ମାତଃ !
ହୃଦ କମ୍ପକାରୀ ଜରାସନ୍ଧ ଜୀବହିଂସା
ନିର୍ଦ୍ଦୟ ନିର୍ମମ ଭାବେ କରେ ଯା ପାମର
ମେଷ ମହିଷ ମନୁଷ୍ୟ ଛାଗ ଆଦି କରି
ବଳି ଦେଇ ଜୀବଶୂନ୍ୟା କଲାଣି ଧରଣୀ
କରିବ କେ ସଂଖ୍ୟା ତାର ଯଥା ସିନ୍ଧୁରଜଃ
ନିଜେ ଖାଅ ବୋଲି କି ଉପେଖ ତାର ଦୋଷ
ଅବା କି ଦେଇଛ ତାକୁ ଚିରନ୍ତନୀ ଲେଖ
କରିବାକୁ ନାନା ଅନାଚାର ମନୋମତେ
ହାୟ ତା ବିଭତ୍ସକାଣ୍ଡ ସ୍ମରିଲେ ମାନସେ
ଅନୁତାପ ସଙ୍ଗେ ତନୁ ହୁଏ ରୋମାଞ୍ଚିତ;

ଶୁଣି ଋଷିପୁତ୍ର ଗୀର ଦେବୀ ମଧୁସ୍ୱରେ
କହିଲେ ରେ ବତ୍ସ ! କିପାଁ ଦୋଷହୀନ ଜନେ
ବୃଥାଦୋଷ ଆରୋପଣ କରୁ ଗୁରୁଭାବେ
କୃତକର୍ମ ଦୋଷ କର୍ତ୍ତା ବହେ ସ୍କନ୍ଧଦେଶେ
ଆନ ସର୍ବେ ସାକ୍ଷୀମାତ୍ର ଚିନ୍ତ ହୃଦଗତେ
ପଙ୍କ ଯୁକ୍ତ ହ୍ରଦେ ପଦ୍ମ ରହେ କରି ସଦ୍ମ
ପଙ୍କିଳ ନ ହୁଏ ସେ ରେ ହ୍ରଦ ସେ ପଙ୍କିଳ
ନଭକ୍ଷେ ମୁଁ ଜୀବଜାତ ସର୍ବେ ପୁତ୍ରବତ
ଶାକ୍ତ ଜିହ୍ୱା ତୃପ୍ତି ମାତ୍ର କରେ ମୋର ନାମେ
ଭକ୍ତିରେ ପ୍ରୀତ ମୁଁ ସୁତ ! ଚିତ୍ତ ନାହିଁ ତହିଁ
ମୋ ନାମେ ଯେ ହତ୍ୟା କରେ ତାର ସେ ଦୁଷ୍କୃତ
ତେଣୁ ମୁଁ ନୁହଇଁ ଦୋଷୀ ପାଶେ ଥିଲେ ହେଲେ
ବଧିଛି ଯେ ଜୀବଜାତ ସେହି ଅପରାଧୀ;
ଖାଦ୍ୟ ଖାଦକ କଳ୍ପନା ପୁଣି ସତ୍ୟ ନୁହେ
କର୍ମଫଳ ନିଯୋଗାଏ ବଳେ ତାକୁ ଆଣି
ଯେହ୍ନେ ତରୁ ଉର୍ଦ୍ଧ୍ୱେ ସ୍ଥିତ ଫୁଲ ଫଳ ଦଳ
ସ୍ୱୟଂ ଆସି ପ୍ରବେଶଇ ସିନା ଭୂମି ତଳେ
କର୍ମାର୍ଜିତ ଫଳ ପୁଞ୍ଜ ଭୁଞ୍ଜନ୍ତି ଜଗତେ
ଜନ୍ମ ମୃତ୍ୟୁ ସୁଖ ଦୁଃଖ ରୂପେ ପ୍ରାଣୀ ଯେଣୁ;
ସତ୍ୟ ମୋର ଅଦୃଶ୍ୟ ଅରୂପ କାଳମୂର୍ତ୍ତି
ବାଳଧରି ଚରାରେ ଗ୍ରାସଇଁ ସତତ
ନାରୀରୂପେ ପୁଂସକୁଳ କରଇଁ ନିର୍ମୂଳ
ହସାଇ ରସାଇ ପ୍ରେମ ଭାବେ ମୋହି ଚିତ୍ତ
ମାତା ରୂପେ ପୁଣି କରେଁ ସୃଜନ ପାଳନ
ରୋଗ ରୂପେ କୋପେ ଭୋଗି ପ୍ରାଣିବର୍ଗ ଭୋଗ
କାଳ ଜାଣି ନିବେଶଇଁ କାଳର ଆଳୟେ;
ଏହି ମତେ ନାନାମୂର୍ତ୍ତି ସୃଷ୍ଟି ଆତଯାତେ
ଧରଇଁ କର୍ମସାଧନେ ଯେବା ପ୍ରୟୋଜନ;

ସମୁଦ୍ର ମନ୍ଥନେ ଯେବେ ଜନମି ଗରଳ
ବିଶ୍ୱଧ୍ୱଂସ କରିବାକୁ ବସିଲା ତା ବିଷେ
ସେକାଳେ ବଲ୍ଲଭ ମୋର ସୃଷ୍ଟିରକ୍ଷା ଲାଗି
ଭକ୍ଷିଲେ ଗରଳ ନିଜ ରକ୍ଷାକୁ ନ ଭାଳି
ସେହି ଦିନୁ ସ୍ୱାମୀ ମୁହିଁ ଆୟଗଣମାନେ
ବିଷ ଭୋକ୍ତା, ବୋଲି ଖ୍ୟାତ ହେଲୁଁ ଏଜଗତେ
ସର୍ପ ବିଷ ଏକା ନୁହେ ତାର ସହ ସୁରା
ଗଞ୍ଜା ଅହିଫେନ ଭଙ୍ଗ ଭାଙ୍ଗ ଦୁଦୁରାଦି
ସର୍ବ ବିଷମୟ ଦ୍ରବ୍ୟ ଭୋକ୍ତା ବୋଲାଇଲୁଁ;
ସେହି ଭାବେ ସିନା ଆମ୍ଭେ ଦେବ ଦେବୀମାନେ
ମାଂସାଶୀ ଅସୃକପାୟୀ ଅଟୁଁନା ନିକର;
ଧରା ଧ୍ୱଂସକାରୀ ଦାନବଙ୍କ ଉପଦ୍ରବେ
ହେଲା ଯେବେ ଜୀବହୀନେ ଏଧରା ଅଧୀରା
ସେ ସମୟେ ଭୀମା ରୂପେ ଅସ୍ତ୍ର ଶସ୍ତ୍ର କରେ
ବଧିଲି ରାକ୍ଷସେ ରଣେ ସୃଷ୍ଟିର ରକ୍ଷଣେ
ହେତୁ ବଶେ ସିନା ରକ୍ତମାଂସ କଲି ଗ୍ରାସ
ସ୍ୱକର୍ମେ ସ୍ୱଧର୍ମେ ବହି ଭୟଙ୍କରୀ ମୂର୍ତ୍ତି;
ଶୁଣିଥିବୁ ରକ୍ତବୀର୍ଯ୍ୟ ଦନୁଜର ବୀର୍ଯ୍ୟ-
ଶୁଣି ନ ଥିଲେରେ ଶୁଣି ଆଶ୍ଚର୍ଯ୍ୟ ଭଜିବୁ
ଶମ୍ଭୁ ରାକ୍ଷସର ଯେବା ମୁଖ୍ୟ ହିତକାରୀ
ଯୁଦ୍ଧେ ସେ ଅବଧ୍ୟ ପୁଣି ତ୍ରିପୁରେ ଅବାଧ୍ୟ;
ତା ସଙ୍ଗେ ସଙ୍ଗର ଯେବେ ହୋଇଲା ମୋହର
ମାଇଲି ବିବିଧ ଅସ୍ତ୍ର ନ ମଲା ଅସ୍ତ୍ର ତା
ବିନ୍ଦୁଏ ରକତ ଯଦି ପଡ଼େ ଗାତ୍ରୁଁତାର
ଶତ ଶତ ରକ୍ତବୀର୍ଯ୍ୟ ଉପୁଜନ୍ତି ତହୁଁ
ଦଗ୍ଧ ତିନ୍ଦୁକ-ଜନ୍ମନେ ଆଘାତିଲେ ଯେହ୍ନେ
ଶତ ଶତ ଅଗ୍ନିକଣା ଜନ୍ମଇ ତକ୍ଷଣେ
ତା ତାହିଁ ହୋଇଲି ତହିଁ ଚକିତ-କ୍ଷୋଭିତ,

ରୋଷ ବଶେ ତେଣୁ ମୁହିଁ ଭୀମା ବେଶ ବହି
ଅସ୍ର ମାଂସ ଭକ୍ଷି ତାର ହରିଲି ଜୀବିତ;
ମାତ୍ର ସେହି ଦିନୁ ମେଷ ମହିଷ ମନୁଷ୍ୟ
ପଶୁ ପକ୍ଷୀ ଆଦିଙ୍କର ଭକ୍ଷକ ହୋଇଲୁଁ
ମୁଁ ଯେ ଏକା ନୁହେଁ ଆଉ ବହୁ ଦେବଦେବୀ
କରି ଜଗତର ହିତ ଏହିତ ତା ଫଳ
ଦୋଷୀ କେ ସେ ଭାବ ବସ ! ଶୁଣି ଅନ୍ତର୍ଗତେ
ଅବିଶ୍ୱାସ ଯେବେ ଯାଅ ସଂଜୀବନୀପୁରେ
ଚିତ୍ରଗୁପ୍ତର ପଞ୍ଜିକା ଦେଖି ଆସ ଥରେ
ଆଦେଶିଲି ବସ ! ଶୁରେ ଯେଣୁ ମୋର ପ୍ରିୟ;
ପୁର ଗତି ରୀତି ବସ ! କହିଥାଏଁ ଶୁଣ
ଦକ୍ଷିଣେ ସେ ଯମବାସ ପାପିଙ୍କ ନିବାସ
ବିକୃତ ବିଭସ ଯେବା ପୂତିଗନ୍ଧମୟ
ଘୋର ଅନ୍ଧକାର ପୁଣି ଘୋର ଭୟଙ୍କର
ପଦେ ପଦେ ବିପଦରେ ପଦେ ପଦେ ତହିଁ
ନିଅ ସଙ୍ଗେ ତେଣୁ ଏହି ଜୟନ୍ତକ ମଣି
ଶରଦ ପୂର୍ଣ୍ଣିମାଚନ୍ଦ୍ର ପ୍ରାୟେ ଯେ ଭାସ୍ୱର
ସେସ ବିନ୍ଧାଣୀ ଯେବା ବାଧା ବିଘ୍ନନାଶୀ
ଶୋକ ଦୁଃଖ ଜରା ବ୍ୟାଧି ବିନାଶକ ପୁଣି
ଏହା କହି ସେହି ମଣି କାଢ଼ିଦେଲେ ଶିରୁଁ,
ପୁଣି ଯବାନ୍ତକ ଛୁରୀ କଟିରୁ ଫିଟାଇ
କୋଷୁଁ କରି ନିଷ୍କୋଷିତ ମୁଣ୍ଡମାଳେ ଘଷି
କଲେ ଖରଧାର ତାକୁ ଦେଲେ ତାଙ୍କ କର
ବିରାଜଇ ତେବେ ଯେବା ଇରମ୍ମଦ ବିଣି
କହିଲେ ଯେ ବାଧା ଦେବେ ଦେଖିଲେ ଆୟୁଧ
ତେଜ ବର୍ଜି ପଳାଇବେ ବିରୋଧେ କି କାର୍ଯ୍ୟ
ଯଥା ଦାବାନଳ ଦେଖି ବନ ଜୀବଜନ୍ତୁ
ପୁଣି ଗୁଣି କଲେ ସ୍ଥିର ନରଦେହ ବହି

କେହ୍ନେ ଯିବୁ ବତ୍ସ ! ତୁରେ ଯମରାଜା ଗନ୍ୟେ
ଦିଶଇ ଅଦୂରେ ଦେଖ ମୋନାମେ ଯେ କୁଣ୍ଡ
ତହିଁ ଅବଗାହି ଦେବଦେହ ଲଭ ତାଣ୍ଡେ;
ଦେବୀ ଆଜ୍ଞା ପାଳି ଖରେ ସେ ବିଜ୍ଞକୁମାର
ଭଇରବୀ କୁଣ୍ଡେ ସ୍ନାନ କରନ୍ତେ ତଦ୍ଦଣ୍ଡେ
ବହେ ଦେବଦେହ କାନ୍ତି ଝଲକେ ଚୌଦିଗେ
ଝଳେ ସୌର-କର ଯଥା ବରଷାର ଶେଷେ
ତହୁଁ ଆସି ଦେବୀପଦେ ଭକ୍ତିଭାରେ ବନ୍ଦି
ଦେବୀ ଦର ମଣି ଛୁରୀ ଧରି ନିଜ ହସ୍ତେ
କହିଲେ ଗୋ ମାତଃ ! ମୋର ଦୋଷ କ୍ଷମାକଲେ
ପୁଛନ୍ତି ଦ୍ୱିଚାରି କଥା ଯାହା ମୋ ସନ୍ଦେହ
କହ କହୁଁ କହେ ଋଷିପୁତ୍ର ହସ୍ତଯୋଡ଼ି
ଏ ପାମର ଜରାସନ୍ଧ ଅପବିତ୍ର ରନ୍ଧ୍ରେ
ମାଗୋ ତୁମ୍ଭେ କେଉଁରୂପେ ଆସି ନିବସିଲ
କିଭାବେ ଆଣିଲା ଅବା ଜରାସନ୍ଧ ଭୂପ
ପୁଣି ଏହି ମଣି ଛୁରୀ ଲଭିଲ କି ରୂପେ
ଶୁଣିବାକୁ ଇଚ୍ଛାମୋର କହ କୃପା ବହି;
ଉତ୍ତରିଲେ ଦେବୀ ଶୁଣ ବତ୍ସ ! ପୂର୍ବକଥା
ଏ ଜରାସନ୍ଧର ତାର ସଙ୍ଗେ ମୋ ବୃତ୍ତାନ୍ତ
ମଣି ଛୁରୀ ପ୍ରାପ୍ତି କଥା କହିବି ତଦନ୍ତେ;
ବସନ୍ତ ଉତ୍ସବକୃତ୍ୟ କଲେ ସୁରମଣି
ଯେବେ ସ୍ୱର୍ଗପୁରେ ସର୍ବ ସୁପର୍ବାଣେ ବରି
ପୂଜିଲେ ଆସନେ ନେଇ ରମା ରମେଶ୍ୱରେ
ସର୍ବଦେବଠାରୁ ଶ୍ରେଷ୍ଠ ଗଣ୍ୟ ସର୍ବଦେବେ
ସ୍ୱର୍ଗୀୟ ବାଦିତ୍ରନାଦେ ଷୋଡ଼ଶୋପଚାରେ
ସ୍ୱର୍ବେଶ୍ୟାଙ୍କ ନୃତ୍ୟଗୀତ କରାଇ ପ୍ରମୋଦେ
ସେକାଳେ ଗନ୍ଧର୍ବରାଜ ଚିତ୍ରରଥାନୁଜ
ବିଚିତ୍ର ରଥ ତା ନାମ ନିତାନ୍ତ ଦୁର୍ଦ୍ଦାନ୍ତ

ତିନିମିତ୍ର ସହ ରହି ସୁଧର୍ମା ସଭାରେ
ଦେଖୁଥିଲା ସ୍ୱର୍ବେଶ୍ୟାଙ୍କନୃତ୍ୟ କଉତୁକେ
ଚିତ୍ରରେଖା ନୃତ୍ୟ ଚାହିଁ କାମେ ହୋଇ ମୁଗ୍ଧ
ତାକୁ ଲଭିବାର ପାଇଁ ବିହିଲା କୌଶଳ
ମିତ୍ରମାନଙ୍କ ସଙ୍ଗତେ ନୋହୁଁ ପୂର୍ଣ୍ଣକାମ
କାମଆସକତେ ବୁଦ୍ଧି ବାମ ହେଲା ତାର
ହରି ବଳାକ୍ରାରେ ତାକୁ ଘେନି ଯିବା ପାଇଁ
କର ଧରନ୍ତେ ରାବିଲା ତହିଁ ଚିତ୍ରରେଖା
ତରକ୍ଷୁ-କ୍ଷୁଭିତା ଧେନୁବତ୍ସତରୀ ଯଥା
ଦେଖି ଶକ୍ର ଭଙ୍ଗି ବକ୍ର ଦେଲେ ଅଭିଶାପ
ମାନବଯୋନିରେ ଜନ୍ମିବାକୁ ମର୍ତ୍ତ୍ୟପୁରେ
ଶପ୍ତ ହେଉଁ କ୍ଷିପ୍ତ ଭାବେ ଅଥୟ ହୃଦୟେ
ଭ୍ରମୁଁ ଭ୍ରମୁଁ ପଥେ ଭେଟିଲା ସେ ବିଶ୍ୱନାଥେ
ସୁଧର୍ମା ସଭାର ମଧ୍ୟୁ ବାହୁଡ଼ିବା କାଳେ
ବେନିଙ୍କି ବୃଷଭାରୂଢ଼ ଦେଖି ସେ ଗନ୍ଧର୍ବ
ପାଦେ ପଡ଼ି ଶୋଇଲା ସାଷ୍ଟାଙ୍ଗ ପ୍ରଣିପାତେ
ରୋଦିଲା ବିକଳେ ତାର କାତର ନ ସହି
ମନଃ ଶାନ୍ତି ଅର୍ଥେ ତେଣୁ ସାନ୍ତ୍ୱନା ବିହିଲି
ସ୍ୱଭାବେ ଅବଳା ହୃଦ କୋମଳ ତରଳ
ଦୟା ବିଗଳିତ ହୁଏ ପର ଦୁଃଖ ଦେଖି
ସେହି ଦିନୁଁ ନିତି ନିତି କୈଳାସେ ପ୍ରବେଶି
କରୁଥାଏ ପୂଜା ମୋର ମାତୃସମ ସ୍ନେହେ
ସାତ୍ତ୍ୱିକ ସ୍ୱଭାବେ ମଦ୍ୟମାଂସ ପରିହରି
ଭକ୍ତିରେ କେବଳ, ତୁଷ୍ଟହୋଇ ତାର ପ୍ରତି
କହିଲି ତମ ସଙ୍ଗେ ଥିବି ଶାପ ମୁକ୍ତି ଯାଏ
ଯଥା ଆୟୁଃ ଶେଷଯାଏ ରହେ ପ୍ରାଣବାୟୁ
ତେଣୁ ଏଥେ ଆସିଅଛି ଭକ୍ତିବଶ ହୋଇ
ଏହି ଜରାସନ୍ଧ ଅଟେ ସେ ବିଚିତ୍ରରଥ

ଏବେ ତାର ଭକ୍ତି ଦେଖେଁ ବିପରୀତ ଭାବେ
ଜ୍ଞାନହୀନେ ପୂଜି ମୋତେ କରେ ଜ୍ଞାନହୀନା
କପି ହସ୍ତେ ନ୍ୟସ୍ତ ଯଥା ଶାଳଗ୍ରାମ ଶିଳା
ପୂର୍ବେ ନଥିଲା ତାର ଏହି ଆଚରଣ
ମର୍ତ୍ତ୍ୟେ ଜନ୍ମ ଲଭିହେଲା ହତଜ୍ଞାନ ସିନା
ଯେହ୍ନେ ଭିନ୍ନ କୀଟ ଜନ୍ମି ଘଟୀକୀଟ ବାସୁଁ
ଶାକ୍ତ ଶିରୋମଣି ଜରାସନ୍ଧ ନୃପମଣି
ରାଜସ ତାମସ ଭାବେ କରି ମୋର ପୂଜା
ନିତି ନିତି ଖାଦ୍ୟ ପାନ ବାଲାକାର ଦାନେ
ମଦ୍ୟମାଂସ ଜ୍ୱାଳାରେ ମୁଁ ଥିଲି ହତଚେତା
ତୀର୍ଥବାରି ଯୋଗେ ବତ୍ସ ! କଲୁରେ ଚେତନ;
ଏବେ ଶୁଣ ମଣି କଥା ମନଃ କରି ସ୍ଥିର
ଅହଲ୍ୟା ହରଣେ ଶପ୍ତ ଦେବ ଆଖଣ୍ଡଳ
ସ୍ୱଭୋଗେ ସହସ୍ର-ଭଗ ବହିଲେ ଯେ କାଳେ
ଲଜ୍ଜାରେ ରହିନପାରି ସୁମନସ-ବାସେ
ଯାଇ ବସେ ମାନସରେ ମାନ୍‌ସେ ବିଚାରି
ରହସ୍ୟେ ସେ କମଳର ମୃଣାଳ ଭିତରେ
ସୂକ୍ଷ୍ମ ରୂପଧରି, କାମରୂପୀ ଅଟେ ଯେଣୁ
ପରାତ୍ମା ନିବସେ ଯଥା ଦେହୀ ଦେହ ମଧ୍ୟେ;
ଖୋଜିବିଶ୍ୱ ନିରାନନ୍ଦ ହେଲେ ଦେବବୃନ୍ଦ
ନ୍ ପାଇସେ ସୁରବୃନ୍ଦ ଚିରାନନ୍ଦକାରୀ
ନାରଦ ଜଣାନ୍ତେ ତହୁଁ ନିଶ୍ଚିତ ବାରତା
ଗଲେ ଦେବବୃନ୍ଦ ଆଣିବାକୁ ପୁରନ୍ଦରେ
ଲଜ୍ଜାଆବେଶେ ବିବଶ ସୁରଈଶ ଭାଷେ
ମୋ ପକ୍ଷେ ମରଣ ଶ୍ରେୟଃ ସ୍ୱର୍ଗେ ବସେ କେ'ବା
ଯାଅ ଫେରି ନିଜବାସେ ବନ୍ଦ୍ୟ ବୃନ୍ଦାରକେ !
ଶୂନ୍ୟ ସ୍ୱର୍ଣ ସିଂହାସନ ଶୂନ୍ୟ ରାଜଦଣ୍ଡ
ମୁହୁଃ ଆକ୍ରମଣ ପୁଣି ପ୍ରଚଣ୍ଡ ଶତ୍ରୁର

ଭାବି ନିବେଦନ୍ତେ ସୁରେ ବ୍ରହ୍ମାଙ୍କ ଗୋଚରେ
ସୁଧର୍ମା ସଭାରେ ମିଳି ସର୍ବେ କଲେ ସ୍ଥିର
ବ୍ରହ୍ମା ବିଷ୍ଣୁ ମହେଶ୍ୱର ପ୍ରମୁଖ ଏଭାବେ;
ଶାପ ବିମୋଚନ କରି ଲୋଚନ ବିହିବା
ମଣାଇବା ଜୟନ୍ତକ ମଣି ତାଙ୍କୁ ଦେଇ
ପୂର୍ବବତ ସ୍ୱର୍ଗେ ଆସି ବସନ୍ତୁ ସ୍ୱବାସେ
ସଂକ୍ରନ୍ଦନ କ୍ରନ୍ଦନକୁ ବନ୍ଦନ ନ କରି
ସୁରବୃନ୍ଦ ସାନନ୍ଦ ମାନସେ ମାନସରେ
ସ୍ଥିରୀକୃତ ମତେ ଶକ୍ର ସବେଶେ ପ୍ରବେଶି
ଶାପ ବିମୋଚନ ମନ୍ତ୍ରେ ମନ୍ତ୍ରି କୁଶୋଦକ
ସିଞ୍ଚନ୍ତେ ଶକ୍ର ଶରୀରେ ସେ ସହସ୍ର ଭଗ
ସହସ୍ର ଲୋଚନେ ହୋଇଗଲା ପରିଣତ
ସ୍ପର୍ଶମଣି ସ୍ପର୍ଶେ ଲୌହ ଭଜେ ଯେହ୍ନେ ସ୍ୱର୍ଣ୍ଣ
କଣ୍ଠେ ଭରୁଁ ତେଜୋବନ୍ତ ଜୟନ୍ତକ ମଣି
ଅନନ୍ତ ସର୍ପେଶ ଶିରୋଭୂଷା ଅଟେ ଯେବା
ବିରସତା ନାଶି କଲା ହରଷ ଉଦୟ
ତେଣୁ ସ୍ୱର୍ଗେ ଆସି ବସି ଦେବ ପୁରନ୍ଦର
ପୂର୍ବ ସଦୃଶ ଶାସିଲେ ଶତ୍ରୁଙ୍କୁ ନିଃଶଙ୍କେ
ବହି ଉରେ ତରତର ଜୟନ୍ତକ ମଣି;
ସମୟେ ରାବଣ ସ୍ୱର୍ଣ୍ଣଲଙ୍କା ଅଳଂକାର
ଶୌର୍ଯ୍ୟ ବୀର୍ଯ୍ୟ ପ୍ରତାପେ ଯା କମ୍ପେ ତ୍ରିଜଗତ
ଦଶଶିର ବିଂଶକର ବିଂଶନେତ୍ର ତା'ର
ସୁରାସୁର ଅବଧ୍ୟ ଅଜେୟ ରଣରଙ୍କ
ସୁରପୁର ଜୁର କରୁ ତା ସଙ୍ଗେ ସଙ୍ଗରେ
ହାରି ସନ୍ଧିବାନ୍ଧି ଦେଲେ ସେ ରାବଣହସ୍ତେ
କଣ୍ଠୁ କାଢ଼ି ଜୟନ୍ତକ ଜୟନ୍ତଙ୍କପିତା
ସେହି ଦିନୁ ଶୋଭିଲା ସେ ଦଶାସ୍ୟ ଉରସେ:
ଲଙ୍କା ସଂଗ୍ରାମେ ଆବର ରାମଚନ୍ଦ୍ରଙ୍କର

ପତ୍ର ନେଇ ଯାତ୍ରା କରୁଁ ଅଙ୍ଗଦ କପୀନ୍ଦ୍ର
କିଷ୍କିନ୍ଧ୍ୟାର ଯୁବରାଜ ଓଜଃ ଉର୍ଜ୍ଜସ୍ୱଳ
ଦଶାସ୍ୟ ସଦେଶେ ତହିଁ ତତ୍‌କ୍ଷଣେ ତାହାକୁ
କ୍ରୋଧେ ଛିଣ୍ଡାଇ ସେ ମଣି ଦଶଶିର ହୃଦୁଁ
ଆଣି ସମର୍ପିଲା ନେଇ ରାମଚନ୍ଦ୍ର ପାଣି;
ପୁଣି ବୀର ରାମଚନ୍ଦ୍ର ରାବଣ ବଧାର୍ଥେ
ଆରାଧିଲେ ଯେବେ ମୋତେ ବାରି ଘଟ ସ୍ଥାପି
ସେ କାଳେ ମୁଁ ଆସି ଉଭା ହୋଇ ଦେଉଁ ବର
ଭକ୍ତି ଭରେ ଦେଇଥିଲେ ମୋର କରେ ଆଣି
କରିଥିଲି ମଥାମଣି ଅନ୍ଧକାର ବାସେ
ଏହି ସେହି ଜୟନ୍ତକ ମଣି ଆରେ ବତ୍ସ !
ତ୍ରିପୁରେ ଦୁର୍ଲ୍ଲଭ ଯେବା ଶୋକ ଦୁଃଖ ନାଶୀ;
ଏବେ ଶୁଣ ଛୁରୀ କଥା ହେଉଛି ଉତ୍ତର
ତୋହର ଗମନେ ଯେଣୁ ବହୁଦୂରମାର୍ଗ
ମାତ୍ର ଅଟୁ ସିଦ୍ଧଯତି ତେଣୁ ଇଚ୍ଛାଗତି
ଅଛି ତୋର, ସେ ସକାଶୁ ନୋହିବ ବିଳମ୍ବ,
ବହୁ ପୁରାତନ ତାହା ସ୍ମରିଲେ ମାନସେ
ନଆସେ, ପଣେରେ ବତ୍ସ ! ବିସ୍ମୃତି ସାଗରେ
ଥିଲା କାଳେ ଯବାଗୃଷ୍ଟ ଆଖ୍ୟାରେ ରାକ୍ଷସ
ମହା ଶୂରବୀର ରଣେ ପୁଣି ରଣରଙ୍ଗ
କଲା ସୁକଠୋର ତପଃ ବହୁ ସମ୍ବତ୍ସର
ନିଦ୍ରା କ୍ଷୁଧା ପରିହରି ପ୍ରାଣେ ମଣି ତୁଚ୍ଛ
ଏକାସନେ ଏକମନେ ରୁଦ୍ରେରଖି ପ୍ରୀତି
ଜାଳିଲା ଅନଳ ପିଣ୍ଡେ ତୁଣ୍ଡେ ମନ୍ତ୍ର ପଢ଼ି
ଅଙ୍ଗୁ ରକ୍ତ କାଢ଼ି ବାଢ଼ି ଆଜ୍ୟ ରୂପେ ତାହା
ଆରୋପିଲା ବୀତିହୋତ୍ରେ ଆହୁତି ସ୍ୱରୂପେ;
ଦେଖି ତା କଠୋର ତପଃ ଚନ୍ଦ୍ରାର୍ଦ୍ଧମଉଳି
ପ୍ରବେଶି ସମ୍ମୁଖେ ମୁଖେ ଭାଷିଲେ ଏସନ

କିପାଇଁ ଦୁଃସହ ଦୁଃଖ ସହୁରେ ରାକ୍ଷସ
ଶରୀର ପ୍ରଜ୍ୱାଳି, କିବା ଇଚ୍ଛାମାଗ ବର
ମୁଁ ସେ ଆଶୁ ବରଦାତା ଦିଗମ୍ବର ଶିବ
ଶୁଣି ପଦେ ପଡ଼ି ପୁଣି ଉଠି କରି ଯୋଡ଼ି
କହିଲା ହେ ହର ! ତେବେ ଦିଅ ଏହି ବର
ନଛିଡ଼ିବି ଅସ୍ତ୍ରେ ଶସ୍ତ୍ରେ ନ ବୁଡ଼ିବି ନୀରେ
ନ ଉଡ଼ିବି ଅନିଳେ ନ ପୋଡ଼ିବି ଅନଳେ
ଇନ୍ଦ୍ର ଚନ୍ଦ୍ର ରୁଦ୍ର ବ୍ରହ୍ମା ବିଷ୍ଣୁ ଆଦି କରି
କାହାରି ହାତେ ମୁଁ କେବେ ନୋହିବି ନିହତ
ତ୍ରିପୁରେ ହୋଇବି ଏକଛତ୍ରୀ ଭୁବୀଶ୍ୱର
ସୁରସୁର ନାଗ ସର୍ବେ ହେବେ ବଶୀଭୂତ
ପୁରୁଷମାତ୍ରକେ କେହି ନ ଯୋଟିବେ ରଣେ
ଯାବତ ଯୁଦ୍ଧାସ୍ତ୍ର ମୋର ଗାତ୍ରେ ହେବ ଚୂର
ବିରୋଧ ବିଧିରେ କେହି ନ ପାରିବେ ବଧି
ଦୁର୍ବାର ଅଜେୟ ପୁଣି ହୋଇବି ଜଗତେ
ଶୁଣି ପଞ୍ଚମୌଳି ଅସ୍ତୁ କହି ଚଳିଗଲେ
ବର ଲଭି ହର୍ଷେ ରକ୍ଷଃ ସ୍ୱପୁରେ ଆସିଲା
ହରବରେ ଯୁଦ୍ଧ କରି ସାଧିଲା ତ୍ରିପୁର
ପରବିତ୍ତ ପରନାରୀ ହରିଲା ସେ ବଳେ;
ଯାଗ ଯଜ୍ଞ ନାଶି ଋଷି ବିପ୍ର ଜପୀ ତପୀ
ଜନଙ୍କୁ ଖାଇଲା ପୋଡ଼ି ତାଙ୍କ ଅଗ୍ନିକୁଣ୍ଡେ
ଅଲେଖ ଭାବେ ସେ ଦୁଃଖ ଦେଲା ଲେଖ-ବୃନ୍ଦେ
ତାର ଭୟେ ଚରାଚର ହେଲେ ତ୍ରସ୍ତ ସ୍ତବ୍ଧ
ଦୁର୍ଦ୍ଧର୍ଷ କେଶରୀ ବନେ ପଶିଲେ ଯେସନ
ହୋଇଯାନ୍ତି ଜୀବକୁଳ ଆକୁଳ ହୃଦୟେ
ଆଗେ ପାଦେ ପଡ଼େ ପଛେ କାମୋଡ଼ଇ ଗୋଡ଼େ
ଦୁଷ୍ଟର ସ୍ୱଭାବ ଏହା ଭାବ ହେ ମାନବ
ଦେଖି ଦେବେ ତାର ରୀତି ହୋଇ କ୍ଷୁବ୍ଧମତି

ଉପାୟ ଚିନ୍ତିଲେ ବରି ଅମରନିକର
ସୁଧର୍ମା ସଭାରେ ବସି ତ୍ରିଦେବ ସହିତ;
ଇନ୍ଦ୍ର ଉଠି କହେ ଶୁଣ ବନ୍ଦ୍ୟ ଦେବବୃନ୍ଦ !
ଯବାଘୃଷ୍ଟ ରାକ୍ଷସର ଦୁରାଚାର ବଶୁଁ
ରହି ନ ପାରିଲୁଁ ସ୍ୱର୍ଗେ ହରଷେ ତ୍ରିଦଶ,
ଗଲାଧନ ଗଲାମାନ ଜୀବନ ଭବନ
ପଦ ଆସ୍ପଦ ରମଣୀ ରତନ ସହିତ
ଦେବବନ୍ଦ୍ୟା ଚିରାନନ୍ଦା ଅମରାବତୀର
ଛାରଖାର ଦେଖି ହୃଦ ଦହେ ଦୁଃଖାନଳ
ମେଢ଼ ମଣ୍ଡପ ଜଗତ ପୁର ଅଟ୍ଟାଳିକା
ସ୍ତମ୍ଭ ତୋରଣାଦି ତାର କରିଛି ବିଂ୍ଂସ
ହରିଛି ରତନ ପୁଣି ଯୁବତୀରତନ
ଯତନେ ସେ ବାଛି ଗଛି ବାଧାପ୍ରାପ୍ତବିନା
ଜୟନ୍ତପାଳକ ବଇଜୟନ୍ତ ଦୁର୍ଦ୍ଦଶା
କଳ୍ପାନ୍ତ ପର୍ଯ୍ୟନ୍ତ ଚିତ୍ତୁଁ ନୋହିବ ବିସ୍ମର
ନନ୍ଦନକାନନ ଦେଖି ଆସୁଛି କ୍ରନ୍ଦନ
ହତଶ୍ରୀ କରିଛି ଏତେ ଭଳି ସେ ଦୁରାତ୍ମା
ମହା ମହୌଷଧି ପୁଣି ମୂଲ୍ୟବାନ ବୃକ୍ଷ
କରିଅଛି କ୍ରୂର ରକ୍ଷଃ ସମୂଳେ ବିନାଶ
ସହସ୍ର ସହସ୍ର ଯକ୍ଷ ଗନ୍ଧର୍ବ କିନ୍ନର
ରତ୍ନ ଆଳବାଳ ରଚି ପାଳିଥିଲେ ଯାକୁ
ବହି ରତ୍ନକୂଟ ଗିରିଝର ସ୍ୱଚ୍ଛନୀର
କନକଝରୀରେ ଭରି ଢାଳି ଯାର ମୂଳେ,
ଭାଗ୍ୟେ ପଞ୍ଚଦେବତରୁ ନ କଲା କର୍ତ୍ତନ
ଜଣା ଥିଲେ ହଣା ହୋଇଥାଆନ୍ତା ଅବଶ୍ୟ
ସ୍ୱର୍ଗର ଏ ଦଶା ଯଦି ଭାବ ଦେବଗଣ !
ଆଉ ପୁରମାନଙ୍କର କି ନ ଥିବ ହୋଇ
କିଂ କର୍ତ୍ତବ୍ୟ ଭାବ ଯାହା ମାନସେ ଯା ଆସେ

ମହାପରାକାନ୍ତ, ଦୈତ୍ୟ ହର ବର ବଳେ
ତ୍ରିପୁରେ ଦୁର୍ଜ୍ଜୟ ଅସ୍ତ୍ରେ ଶସ୍ତ୍ରେ ନୁହେ ସାଧ୍ୟ
ଅବାଧ୍ୟ ପୁଣି ସେ ଦୁରାଚାର ଆଚରଣେ
ଶୁଣି ଶୂଳପାଣି ରୋଷେ ପଞ୍ଚଶିର ଝୁଣି
ଭାଲ ନେତ୍ରୁ ବରଷାଇ ତୀକ୍ଷ୍ଣ ଅଗ୍ନିକଣା
ଭାଷିଲେ ପାପିଷ୍ଠ ଯବାଘୃଷ୍ଟ ପାଦେ ପଡ଼ି
ମାଗି ନେଇ ବର ପରେ କରେ ଅତ୍ୟାଚାର
ବିଷମ ବ୍ୟାପାର, ଯେହ୍ନେ ପୟଃପୋଷା ସର୍ପ;
ବିଷଦନ୍ତ ଝାଡ଼ୁ ତାର ଶକ୍ତି ଅଛି ଯାର
ଭାବେ ମୁହିଁ ଶକ୍ତି ବିନା ନାହିଁ କାର ଶକ୍ତି
ନାଗ ଭୁବ ଦିବ ଲୋକେ ଅସୁର ଅସୁଘ୍ନେ;
ଶିବବାଣୀ ଶୁଣି ତହିଁ ସର୍ବେ ହେଲେ ସ୍ତବ୍ଧ
ଦୈତ୍ୟବଳ ପ୍ରତି ନିଜ୍ଜ ହୀନବଳ ବୁଝି
ଭରସେ କି ମୂଷା ଶଶା କେଶରୀ ବିନାଶେ ?
ତହୁଁ ମୁଁ ସେ ଆଦ୍ୟାଶକ୍ତି ଦେବ ଦୁଃଖ ଲକ୍ଷି
କହିଲି ସହି ନ ପାରି ଦେବଙ୍କ ସମକ୍ଷେ
ଦୟା ଯେହ୍ନେ ସହି ନ ପାରଇ ଦୁଃଖୀ ଦୁଃଖ
ଦେବେ ଚିନ୍ତା ପରିହର ମାରିବି ଅସୁର
ସର୍ବଦେବ ତେଜୁଁ ଗଢ଼ି ଦିଅ ଛୁରୀ ଏକ
ଯୁଦ୍ଧାସ୍ତ୍ରେ ନ ମରେ ବୀର ପାଇଛି ସେ ବର;
ଶୁଣି ମୋର ବାଣୀ ହର୍ଷେ ଜୟ ଜୟ ନାଦେ
ବନ୍ଦିଲେ ମୋ ପଦ ତହିଁ ସର୍ବ ଦେବଦେବୀ
କାଢ଼ି ଅଙ୍ଗୁ ତତକ୍ଷଣି ନିଜ ନିଜ ତେଜ
ନିଃସରଇ ବହ୍ନିଦେହୁଁ ସ୍ଫୁଲିଙ୍ଗ ଯେସନ
ଗଢ଼ାଇଲେ ଛୁରୀ ଏକ ବିଶ୍ୱକର୍ମା କରେ
ତେଜେ ଗଞ୍ଜେ ଇରମ୍ମଦେ ପୁଣି ବହ୍ନି ପୁଞ୍ଜେ
ତୀକ୍ଷ୍ଣ-ବକ୍ର ବକ୍ରଗାତ୍ର ମଞ୍ଜୁକୋଷେ ଯୁତ
ମୋର ହସ୍ତେ ନ୍ୟସ୍ତ କଲେ ବିନୟ ପ୍ରକାଶି

ତାକୁ ବହି ତହୁଁ ମୁହିଁ ଦୈତ୍ୟନାଶ ଆଶେ
ଲବଣ ଅର୍ଣ୍ଣବ ତଟ ସନ୍ନିକଟ ଗିରି
ମହେନ୍ଦ୍ର ନାମେ ଯେ ଖ୍ୟାତ ହୋଇଛି ଜଗତେ
କୁଳାଚଳ ଅନ୍ତର୍ଗତ ସୁବିଶାଳ ଗାତ୍ର
ମହା ଅଭିରାମ ଯେବା ସୁଖଶାନ୍ତି ଧାମ
ଅମରବୃନ୍ଦ-ବାଞ୍ଛିତ ଦେବେନ୍ଦ୍ର-ସେବିତ
ପ୍ରକୃତି ରାଜ୍ୟରେ ସୁଷମାର ଶେଷସୀମା
ଚିତ୍ତନେତ୍ର ଉଭୟର ଚିତ୍ତ-କାରାଗାର
କୂଜନ୍ତି ପତତ୍ରିବୃନ୍ଦ ଯହିଁ କଳକଳେ
ନିର୍ଝର ଝରଣ କଳନାଦେ ବାଦ ରଚି
ନାନା ଜାତି ତରୁଲତା ପୁଷ୍ପେ ହୋଇମଣ୍ଡି
ଇନ୍ଦ୍ର କୋଦଣ୍ଡ ସଙ୍କାଶ ଆଭାସନ୍ତି ଦୂରୁ
ଭ୍ରମନ୍ତି ଭ୍ରମରବୃନ୍ଦ ଗୁଣୁ ଗୁଣୁ ରବେ
ମକରନ୍ଦ ପାନେ ଯହିଁ ଆନନ୍ଦିତ ମନେ
କେବେ ବା ଝଙ୍କାରି ଊର୍ଦ୍ଧ୍ୱେ ଉଠି ଚକ୍ରାକାରେ
ଭ୍ରମି ପୁଣି ଅର୍ଦ୍ଧ ଚୁମ୍ବି ପୁଷ୍ପେ ନିବସନ୍ତି
ସ୍ୱାଧୀନ ଭର୍ତ୍ତୃକା ଭାବେ ପୁଷ୍ପିତା ଲତା ଏ
ଜଡ଼ନ୍ତି ପାଦପ ଦେହେ ପ୍ରେମ ଆଲିଙ୍ଗନେ
ଭୃଙ୍ଗଶ୍ରେଣୀ ନୀଳମଣିମାଳା ହୃଦେ ବହି
ପ୍ରିୟେ କହି ପ୍ରିୟକଥା ଭୃଙ୍ଗଧ୍ୱନିଛଳେ
ବାୟୁ ସ୍ପର୍ଶ ବଶେ ଅଙ୍ଗ ବିଳାସ ଦେଖାଇ;
ଶୁକ ପିକ ଶାରୀ ଶ୍ୟାମା ବସନ୍ତାଦି ପକ୍ଷୀ
ଉଡ୍ଡୀଭୂତେ କାଣ୍ଡେ ବସି ଫଳ ଖାନ୍ତି ଖଣ୍ଡି
ଭାଷି ସୁମଧୁର ଭାଷା କର୍ଣ୍ଣ ରସାୟନ
ଯଥା ଜବ ତାର ଚଢ଼ା ସୁନାଦିନୀ ବୀଣା;
ବିଚରନ୍ତି କରୀ ହରି ହରିଣ ଶାର୍ଦ୍ଦୂଳ
ଶଶା ମୂଷା ଶମ୍ବର ବରାହ ଆଦି ଜୀବେ
ନିଜ ନିଜ ଧର୍ମେ ଫଳମୂଳ ମାଂସ ଭକ୍ଷି,

ଯହିଁ ହରି ବିଦାରିତ କରୀ ମସ୍ତକରୁ
ଝଡ଼ି ଗଜମୋତି ପନ୍ତି ପ୍ରକାଶନ୍ତି ଜ୍ୟୋତି
ମତ୍ତକରୀ କଣ୍ଡୂଳ କପୋଳ ସଂଘର୍ଷଣେ
ପାଦପୁଁ ଖସଇ ତଳେ ପୁଷ୍ପ ରାଶି ରାଶି
ସୁନୀଳ ଶାଦ୍ୱଳ କୋଳେ ଯହିଁ ମୃଗଦଳ
ଦୂର୍ବାଦଳ କବଳେ ଖେଳନ୍ତି କୁତୂହଳେ
ଆବିଳ ପଲ୍ୱଳ ତାଙ୍କୁ ମହିଷ ବରାହ
ତଡ଼ନ୍ତି ଖଡ଼ିଗନିବହ ସ୍ୱଖଡ୍ଗ ପ୍ରହାରେ
ପୁଣି ମହାଅହି ମହୀରୂହେ ଗୁଡ଼ିଆଇ
ମଣିଯୁକ୍ତ ଫଣା ଟେକି ଗର୍ଜନ୍ତି ଭୀଷଣେ
ଫୁତ୍କାର ସ୍ୱନେ କାଳ ରସନା ପ୍ରସାର.
ଗିରିପ୍ରସ୍ଥ ଜାତ କେତେ ସଲିଳ ପ୍ରପାତ
ସ୍ୱପିଣ୍ଡ ମଣ୍ଡନ୍ତି ଶକ୍ରଚାପେ ସୌର କରେ
ପୁଷ୍ପପୁଞ୍ଜେ ମଞ୍ଜୁକୁଞ୍ଜ ହୋଇ ସୁରଞ୍ଜିତ
ମଦନ କେଳିସଦନ ପ୍ରାୟେ ଶୋଭେ ଯହିଁ
ସେ ଗିରିସଂଲଗ୍ନେ ରାଜେ ମହେନ୍ଦ୍ରକାନନ
ପରିପୂର୍ଣ୍ଣ ଜୀବଜନ୍ତୁ ବୃକ୍ଷଲତା ଯୋଗେ
ପବିତ୍ର ପାବନ ପୁଣି ମହାତ୍ମା ନିବାସେ;
ଜନ୍ମି ଜ୍ୱଳଦଗ୍ନି ତେଜେ ଯମଦଗ୍ନି ଘରେ
ଏକବିଂଶ ବାର କ୍ଷିତି କଲେ ଯେ ନିଃକ୍ଷତ୍ରୀ
ବୀରବର୍ଯ୍ୟ କାର୍ତ୍ତବୀର୍ଯ୍ୟ ପ୍ରାଣଚୌର୍ଯ୍ୟକାର
କାଳାନ୍ତକ ପର୍ଶୁଧାରୀ ଅଗ୍ନିସମ କ୍ରୋଧୀ
ବଧିଲେ ଯେ କ୍ରୋଧେ ପିତ୍ରାଦେଶେ ମାତା ଭ୍ରାତୃ
ଥିଲା କାଳେ ସେ ଭାର୍ଗବ ଆଶ୍ରମ ଯେ ସ୍ଥଳୀ
ସେ କାନନେ ଦିନେ ଦିନେ ମୃଗୟା ନିମିତ୍ତ
ଯାଏ କାଞ୍ଚିପୁର ରାଜା ଯବାଘୃଷ୍ଟ ରକ୍ଷଃ
ସେ ମୃଗବ୍ୟ ବନେ ତାର ଗଲି ଖରତରେ
ନଭଃ କରି ପ୍ରଭାନ୍ୱିତ ସୌରଭେ ପୁରିତ

ତହିଁ ହେଲି ଲୀଳାବତୀ କନ୍ୟା ଛଦ୍ମବେଶେ
ତ୍ରିପୁର ମୋହିନୀ ଛାର ମୋହିନୀ ମୂରତି;
ସୁକାନ୍ତ ବସନ୍ତ ରଙ୍ଗେ ଆସିଲା ମୋ ସଙ୍ଗେ
ଘେନି ସ୍ୱସହିତ ନିଜ ସୈନ୍ୟ ସତ୍ୟାବ୍ରତ
ଫୁଟିଲା କାସାରେ ପଦ୍ମ ଛୁଟିଲା ସୌରଭ
ବଉଳିଲା ଚୂତଡାଳ ମଉଳିଲା ଶୀତ
ବହିଲା ଦକ୍ଷିଣୁ ଧୀରେ ମଳୟ ସମୀର
ଦହିଲା କାମାଗ୍ନି କାମୀ କାମିନୀ ହୃଦୟ
ତରୁଲତା ଫୁଲେ ଫଳେ ହେଲେ ନତଭର
କାମୀ ଗୀର ମାନିନୀର ଶିର ପରା ମାନେ
ନବ କିସଳୟ ଜାଳେ ଶୋଭିଲା ବିପିନ
ଯୌବନ ବିକାଶେ ଯେହ୍ନେ ଶରୀରୀ ଶରୀରେ
ବିହରିଲେ ମତ୍ତ ଭୃଙ୍ଗ କୁହରିଲେ ପିକ
କୁହୁ କୁହୁ ନିନାଦିଲେ ଶ୍ରୁତି ପ୍ରୀତି ବିହି
ଆବର ଶାରିକା ଶ୍ୟାମା ବସନ୍ତାଦି ପକ୍ଷୀ
ଚାହିଁ ବସନ୍ତର ଶୋଭା ଚିତ୍ତନେତ୍ର ଲୋଭା;
ଏ ଭାବେ ସୁନ୍ଦର ହେଉଁ ମହେନ୍ଦ୍ରକାନନ
ଚାହିଁ ପ୍ରଫୁଲ୍ଲିତ ମତି ହୋଇ ତହିଁ ରହି
ଦିବ୍ୟବସନେ ଭୂଷଣେ ମଣ୍ଡିକଳେବର
ଲୀଳା ଅରବିନ୍ଦ କରେ ଭ୍ରମୁଥାଏଁ ସୁଖେ;
କେବେ ବଲ୍ଲକୀ ଝଙ୍କାରି ପ୍ରେମଗୀତ ଗାଇ
କେବେ ବଂଶୀସ୍ୱନେ ବନ୍ୟଜୀବେ ମୁଗ୍ଧ କରି
କେବେ ଲତାଦୋଳୀ ଦୋଳି ଉଜ୍ଜ୍ୱଳି ଅଟବୀ
ପୁଣି ଅଙ୍ଗବାସେ ଚହଟାଇ ବନସ୍ଥଳୀ;
ଦିନେ ଯବାଘୁଷ୍ଟ ରକ୍ଷଃ ଦଳବଳ ଭୁଲେ
ପ୍ରବେଶିଲା ସେହି ସ୍ଥାନେ ମୃଗୟା ସକାଶେ
ଥିଲି ଲତା ଅନ୍ତରାଳେ ମଞ୍ଜୁକୁଞ୍ଜ ଗର୍ଭେ
ପୁଞ୍ଜ ପୁଞ୍ଜ ଫୁଟି ଫୁଲ ଯହିଁ ଶୋଭା ଧରେ

ପଙ୍କଜ କାନନେ ଯେହ୍ନେ ଇନ୍ଦିରା ସୁନ୍ଦରୀ
ଦେଖି ଜଣାଇଲେ ତାର ଚରେ ତା ଗୋଚରେ
ରକ୍ଷୋରାଜ ଚକ୍ରବର୍ତ୍ତୀ ! ଅପୂର୍ବ କନ୍ୟାଏ
ଦେଖିଲୁଁ ଲତାର ମଧ୍ୟେ ବସେ ଏକାକିନୀ
ଅପୂର୍ବ ସୁନ୍ଦରୀ ବିଶ୍ୱେ ନାହିଁ ତା ତୁଳନା
ମହୀଶିରଗଭା ତବ ମହିଷୀର ଯୋଗ୍ୟା;
ଶୁଣି ଦୈତ୍ୟ ତରତରେ ହୋଇ ବହିର୍ଗତ
ତୁମ୍ବୀ-ତନ୍ତ୍ରୀ ନାଦେ ଯଥା ଉଦେଗ ପନ୍ନଗ
ପ୍ରବେଶି ମୋ ସନ୍ନିବେଶେ ଭାଷିଲା ଏହିଭାଷା
ରେ ସୁନ୍ଦରି ! ଏକାକିନୀ ରହି ଭ୍ରମୁ ବନେ
ନାହିଁ ମନେ ଭୟଭ୍ରାନ୍ତି ଅବଳା କି ନୋହୁ
ଦିଅ ଆତ୍ମ ପରିଚୟ କେ ସେ ଅଟୁ ତୁହିଁ
ତୋର ଅପରୂପ ରୂପେ ଲୋହିତ ମୋ ଚିତ୍ତ
ଅୟସେ ଆକର୍ଷେ ଯେହ୍ନେ ଅୟସ୍କାନ୍ତ ମଣି
ଅନିଦ୍ର ପଙ୍କଜେକ୍ଷଣୀ କହ କୃପା ବହି ;
କେଉଁ ଧାତା ଗଢ଼ିଲାରେ କେଉଁ ଉପାଦାନେ
କି ଶିଳ୍ପେ ତୋ ତନୁରେ ସୁନ୍ଦରୀ-ପୁରନ୍ଦରୀ
ନାହିଁ ନ ଥିଲା ନ ଥିବ ଏ ଅପୂର୍ବ ରୂପ
ଦେଖିଛି ମୁଁ ସୁରନାରୀ ଗନ୍ଧର୍ବୀ ଅପ୍ସରୀ
ନାଗଲୋକ ସୁକୁମାରୀ ଦାନବୀ ମାନବୀ
ନୋହିବେ ତୋ ପଦଘଷା ଶିଳାରେ ସମାନ;
ଶୁଣିଛିଁ ବୀଣାର ଧ୍ୱନି କୋକିଳର ବାଣୀ
ଦେଖିଛି ଚାମ୍ପେୟ ପୁଣି ଚମ୍ପା ଶମ୍ପା ଆଦି
ଦେଖିଛି ପରବଚନ୍ଦ୍ର ଶରଦ ଋତୁରେ
ଆବର ଦେଖିଛିଁ ଫୁଲ୍ଲ ଅମଳକମଳ
ଦେଖଛିଁ କାଳିନ୍ଦୀବୀଚି ଅଞ୍ଜନ ଖଞ୍ଜନ
କେଶରୀର ମଧ୍ୟ ପୁଣି କରୀ କୁମ୍ଭଦ୍ୱୟ
ଦେଖିଛିଁ ମୃଣାଳ ଶାଳ ପକ୍ୱ ବିମ୍ବଫଳ

ନିରେଖିଛି ସ୍ଥଳପଦ୍ମ ଚମ୍ପକକୋରକ
ତୋ ଅଙ୍ଗ ପ୍ରତ୍ୟଙ୍ଗ ଚାହିଁ ଧିକ୍କାରଇଁ ସର୍ବ
କହ କହ ସୁନ୍ଦରି ! କେ ଅଟୁ ତୁଟୁ ଭ୍ରାନ୍ତି;
ଶୁଣି କହିଲି ତାହାକୁ ମୁଁ ଅମରନାରୀ
ଅବିବାହୀ କନ୍ୟା ବର ଲୋଡ଼େଁ ଯହିଁ ତହିଁ
ସଖୀମାନେ ବଣା କାହିଁ ଗଲେ ନାହିଁ ଜଣା
ଏକାକିନୀ ରହେଁ ତେଣୁ ଭୟଙ୍କର ବନେ
ମାର୍ଗ ନ ପାଇ ଭ୍ରମଇଁ ମନେ ରଖି ଭୀତି
ଅବଳା ଯେଣୁ ମୁଁ ନାମ ଭୀରୁଟି ସ୍ୱଭାବେ
ବ୍ରତପୂର୍ଣ୍ଣ ହେଲେ ମୋର ବର ବାଛିଗଛି
ବିବାହ କରିବି ପଣ ଧରିଅଛିଁ ଜାଣ
ଅନାଥା ଅବଳା ମୁଁ ସେ ନାହିଁ ଅନ୍ୟ କଥା
ନାମ ମୋର ଲୀଳାବତୀ ନାମ ମତେ ଗୁଣ;
କହୁଁ ମୁହିଁ ଅବିବାହୀ ପୁଣି ଇଛାବତୀ
ରକ୍ଷୋରାଜ ଚିତ୍ତେ ତୃପ୍ତି ପାଇଲା ଅପାର
ରୋଗୀ ବାଞ୍ଛେ ଯାହା ବୈଦ୍ୟ ଯୋଗାଇଲା ତାହା;
ତେଣୁ ପୁଛେ ପୁଣି କେଉଁ ବ୍ରତ ଲୋ ସୁନ୍ଦରି !
ଆଚରିଛୁ ଲଜ୍ଜା ତେଜି କହିବୁ ନା ମୋତେ
ମୁଁ ସେ ରାଜଚକ୍ରବର୍ତ୍ତୀ କାଞ୍ଚିପୁର-ରାଜା
ତ୍ରିଭୁବନେ ବିଜୟୀ ଲୋ ମହେଶ୍ୱର ବରେ
ସମରେ ଦୁର୍ଜୟ ପୁଣି ଅଜେୟ ଜଗତେ
ଦେବ ଦୈତ୍ୟ ନାଗ ନର ମୋର ବଚସ୍କର;
ତ୍ରିଭୁବନୁ ବାଛି ବାଛି ସୀମନ୍ତିନୀ ଯେତେ
ଆଣିଅଛିଁ ତହିଁ ମଧ୍ୟେ ହେବୁ ପାଟରାଣୀ
ସମଗ୍ର ରାଜ୍ୟ ଐଶ୍ୱର୍ଯ୍ୟ ସମର୍ପି ପୟରେ
ଦାସ ଭାବେ ସଦା ଖଟିଥିବି ତୋର ପାଦେ;
ଆସ ଆସ ସୁନ୍ଦରି ! ପେ ଦୂରକରି ଭୟ
ବର ରୂପେ ବର, କରପଦ୍ମ ଧରି ମୋର;

କରୁଣକ ଦୋହଦକୁ ବହି ମୋ ହୃଦୟେ
ସ୍ମର ଦର ଦୂର କର ଦଗ୍ଧ ହୃଦୟୁଁ,
ଶୁଣି ମୁଁ କହିଲି ଛଳି ବୀଣାଜିଣା ସ୍ୱରେ
କଟାକ୍ଷେ ନିରେଖି ମୁଖେ ମୃଦୁହାସ ରଖି
ନୁହେଁ ସେ କଟାକ୍ଷ ସ୍ମର ବିଷଦିଆ ଶର
ନୁହଇ ସେ ହାସ ହୃଦଘାରି ମହାବିଷ
ଆହେ ବୀରବର କାଞ୍ଚିପୁର ଅଧୀଶ୍ୱର
ଭାଗ୍ୟ ଥିଲେ ତୁମ୍ଭପରି ଯୋଗ୍ୟ ବର ମିଳେ;
ବରିଲି ମାନ ସେ ଈଶ ମାତ୍ର ରତ ଭାଷ
କହୁଛି ବ୍ରତର ରୀତି ପାଳିବ ଯା ଦୃତେ
ଅଛି ମାତ୍ର ବିଂଶ ଦିନ ବ୍ରତ ହେବ ପୂର୍ଣ୍ଣ;
ରହିଥିବି ଭିନ୍ନବାସେ ନ ଯିବେ କେ ପାଶେ
ବର୍ଜିବି ଆହାର ନିଦ୍ରା ବ୍ରତେ ଧାର୍ଯ୍ୟ ଯାହା
ଈଶ ଆଶେ ବସେ ଯେହ୍ନେ ଉମା ସନ୍ନ୍ୟାସିନୀ;
କରୁଥିବି ବେଶ ମାତ୍ର ନିତି ନିତି ଯାଇ
ତୁମ୍ଭ ପାଶେ, ଅବିବାହୀ ଭାବେ ରହିଗୃହେ
କଣ୍ଠ ଶେଷେ ବରିବି ମୁଁ ପୁଷ୍ପମାଳା ବଶେ
ପାଳିବ ନାହିଁକି ସତ୍ୟ ରାଜା ଏହି ଭଳି,
ଦୈତ୍ୟ ସତ୍ୟ ଉଚ୍ଚାରନ୍ତେ ତା ସହିତେ ମୁହିଁ
ଗଲି କାଞ୍ଚିପୁରେ ଭିନ୍ନ ଶିବିକାରେ ବସି
ରହିଲି ଏକାନ୍ତେ ଅନ୍ତଃପୁରେ ଭିନ୍ନବାସେ
ଆଣି ଥିବା ସ୍ୱର୍ଗସୁଧା ଭକ୍ଷି କ୍ଷୁଧା ନାଶି
ମୁଁ ତ ଯୋଗମାୟା ମୋର ମାୟାଜାଲ ଭେଦି
ପାରନ୍ତା କି ଦୈତ୍ୟ ଛାର ବାକ୍ୟେ ଦେଲି ଛଳି;
ପ୍ରିୟବତୀ ପ୍ରିୟାଠାରୁ ବଳି ଶତଗୁଣେ
ସେବିଲି ସେ ରକ୍ଷେ ତହିଁ ରଙ୍ଗ ରସ ଭାଷେ
ଜନ୍ମାଇ ବିଶ୍ୱାସ କେବେ ଧରି କେଶପାଶ
ଉକୁଣ ବିନାଶ ବ୍ୟାଜେ କଙ୍କତିକା ଚାଳି

କେତେ ମୁଖର ସମ୍ମୁଖେ ମୁକୁର ଦେଖାଇ
କେବେ ପୃଷ୍ଠେ ହାରଗୁଚ୍ଛି ଶିରେ ଉରେ ଭରି
କେବେ ବା ତାମ୍ବୁଳଦଳ ଭାଙ୍ଗି ହସ୍ତେ ଦେଇ
କେବେ ଗଣ୍ଡେ ଓଷ୍ଠେ ପୃଷ୍ଠେ ଚାଲି କରନଖ
ମୋହିଚିଭ, ପୟୋମୁଖ ବିଷକୁମ୍ଭ ବତ,
ବାହାରେ ମୁଁ ଲେପୁଥାଏଁ ବ୍ୟାହାର ଚନ୍ଦନ
ମୋ ରୂପ ଦହନ ଦହୁଥାଏ ତା ଅନ୍ତର
କୁମ୍ଭକାର ଉହାଗର୍ଭେ ଯେହ୍ନେ ସର୍ବଭୁକ
ତେଣୁ ଦିନୁଦିନ କ୍ଷୀଣ ପୁଣି ବଳହୀନ
ହେଉଥାଏ ରକ୍ଷ ଦୁଃଖେ କଷ୍ଟଦିନ ଗଣି
ଏ ଭାବେ ଦଶବାସର ହୁଅନ୍ତେ ବିଗତ
ଆଗତ ହୋଇଲା ତାର ମରଣ ସମୟ;
ରୂପେ ମୁଗ୍ଧ ହୋଇ କଲେ ମୁଗ୍ଧାଙ୍କୁ ବିଶ୍ୱାସ
ବିନାଶ ଭଜଇ କାଳେ ପୁଂସ ଜାଣ ଭଲେ;

ଇତିଶ୍ରୀ ଜରାଜନ୍ଧବଧ କାବ୍ୟେ ଯବାଘୃଷ୍ଟ ବିଧାର୍ଥେ ଆଦ୍ୟା ଶକ୍ତି ଲୀଳାବତୀ ରୂପ ଧାରଣେ ନାମ **ଷଷ୍ଠଃ ସର୍ଗଃ** ।

——

## ସପ୍ତମ-ସର୍ଗ

ଏଥୁଅନ୍ତେ ଏକାଦଶ ଦିବସ ପ୍ରବେଶ
ସେ ରତ୍ରେ ରାକ୍ଷସ କିସ ବିଚାରି ମାନସେ
ରଜନୀ ନ ପାହୁଁ ଶଯ୍ୟା ବରଜି ତକ୍ଷଣି
ସୈନ୍ୟ ସାଜିବାକୁ ପୁରେ ସର୍ଜିଲା ଘୋଷଣା,
ପ୍ରବେଶନ୍ତେ ଉଷା-ଯୋଷା ଗର୍ବେ ପୂର୍ବ ଦିଶେ
ସିନ୍ଦୂର ସୁନ୍ଦର ରଙ୍ଗବସ୍ତ୍ରେ ବରି ଅଙ୍ଗ
ପ୍ରଭାତୀ ତାରକା-ମଥାମଣି ମଣ୍ଡିମାଥେ
ଅପରୂପ ରୂପେ ମୋହିଁ ଆକାଶ ଧରଣୀ;
ଧାଇଁଲେ ମରୁତ ପାଶେ ଶୈତ୍ୟ ପଙ୍ଖାଧରି
ଜୀବହିତ ବ୍ରତେ ଯେଣୁ ସତତ ଜାଗ୍ରତ,
ଗାଇଲେ ବିହଗ ଗୀତ ସ୍ୱାଗତ ସମ୍ଭାଷି
ନୀଡ଼ କ୍ରୋଡ଼ ବରଜି ଅସ୍ପଷ୍ଟ ମଧୁତାନେ,
ବାଇଲେ ସୁବାଦ୍ୟ ପତ୍ରଗୋତ୍ର ମରମରେ
ପତତ୍ରିପତ୍ରେ ଫଡ଼ ଫଡ଼ ବାଦ୍ୟ ସହ
ନାଚିଲେ ସୁକ୍ଷେତ୍ରେ ଶସ୍ୟ ଦୋହଲାଇ ଦେହ
ମନ୍ଦ ସମୀରଣେ ଦକ୍ଷ ନର୍ତ୍ତକ ପରାଏ
ଯାଚିଲେ ରାଜୀବେ ମଧୁ ଚଞ୍ଚରୀକଚୟ
ପଙ୍କଜ କାନନେ ଯାଇ ଗୁଣୁ ଗୁଣୁ ରବେ
ଚାହିଁ ତାର ଏରୀତି ବା କୋପୁଁ ଦିବାପତି
ରୋଷେ ରକ୍ତବକ୍ତ୍ର ବସି ପୂର୍ବାଚଳ ଚୂଳେ
ମୁଁ ସେ ଗ୍ରହରାଜ ମୋର ଅଧିକାର ବଳେ
ହରେ ଉଷାବାଳୀ ବୋଲି ଭାଳି ନିଜମନେ
ସ୍ୱକର ବଢ଼ାଇଁ ତେଣୁ ତାର ଧରଷଣେ
ସଭୟେ ପଳାଏ ଉଷା ଶର୍ବଖର୍ବ ଭଜି
ହସଇ ପଦ୍ମିନୀ ସରେ ପ୍ରମୋଦ ମାନସେ

ତା ସମାନେ ଉପଲକ୍ଷି ଥିଲା ଯେଣୁ ତାକୁ;
କୁମୁଦିନୀ ମୁଦେନେତ୍ର ତା ଚାହିଁ ବିମୁଦେ
ତାରକା ନିକର ନଭେ ଭଜିଲେ ମଳିନ
ଆସର ଏ ଅବସରେ ନିଃସରି ଭବନୁ
ଚିତ୍ତଦଭ କଲା ପୁଣି ସ୍ୱର୍ଗ ଆକ୍ରମଣେ;
ମସ୍ତକେ ମୁକୁଟ ତାର ଗିରିଶୃଙ୍ଗାକାର
ବନ୍ଧୁର, ବନ୍ଧୁର ପୁଣି ମଣିରତ୍ନ ଯୋଗେ
କ୍ରୌଞ୍ଚଶିରଝାଲି ଝୁଲେ ତାର ଶିରୋଦେଶେ
ଦୁଏ ସେ ଚଞ୍ଚଳ ଦୈତ୍ୟ ଚଞ୍ଚଳ ଗତିରେ,
ଅଙ୍ଗେ ବର୍ମ କଟି ତଟେ ଭର୍ମ ସାରସନ
ରତନେ ଜଡ଼ିତ ତେଜେ ନେତ୍ରତ୍ରସ୍ତ ଭଜେ
କରେ ଲୌହଧନୁଃ ସ୍କନ୍ଧେ ଲୌହ ବାଣ ତୂଣ
ଆନ ଆନ ଅସ୍ତ୍ର ଶସ୍ତ୍ର ବହେ ବୀରବେଶେ
ଦିଶେ ଘୋର ଭୟଙ୍କର ଯଥା ପ୍ରେତପତି,
ଆରୋହି କନକମୟ ଦେବାନ୍ତକ ରଥେ
ମହାବଳ ବ୍ୟାଘ୍ରଦଳ ବହେ ଯାକୁ ପୃଷ୍ଟେ
ଶକୁନି ଲାଞ୍ଛନ ଧ୍ୱଜ ଉଡ଼େ ଯାର ଚୂଡ଼େ,
ଅଙ୍ଗରକ୍ଷୀ ସୈନ୍ୟରଖି ପାଖେ ସାଡ଼ମ୍ବରେ
ଗମିଲା କୁଳଗ୍ରେ ମନମଗ୍ନ କରି ରଣେ
ଧରେ କୃଷ୍ଣବର୍ଣ୍ଣଛତ୍ର ଛତ୍ରଧର ତହିଁ
ବିଚିତ୍ର ପତାକାପନ୍ତି ପତାକିନିକର
ମଧୁମାଂସ ଭରା ପାତ୍ର ବହି ଦୈତ୍ୟଗୋତ୍ର
ଅହରହଃ ରହିଛନ୍ତି, ଦୈତ୍ୟନାଥ କତି,
ଅଗ୍ରେ ଗମେ ପ୍ରତାପ ତା ଶବ୍ଦ ଗମେ ପଛେ
ତାର ପଛେ ସୈନ୍ୟ ରେଣୁ ଚତୁରଙ୍ଗ ସେନା
ବଜାନ୍ତି ଦନୁଜେ ରଣବାଦ୍ୟ ଘୋର ନାଦେ
ଝର୍ଝର ଘୁମୁରା ଝମ୍ପା ଢୋଲ ଆଦ୍ଦି ଧରି
ତହିଁ ସୈନ୍ୟ କୋଳାହଳ ଗଜବାଜୀ ରୋଳ

ସ୍ୟନ୍ଦନ ଘର୍ଘର ଘୋଷ ମିଶନ୍ତେ ଏକତ୍ରେ
ନ ସମ୍ଭାଳି ହ୍ରଦେ ନାଦବହ୍ନ ଉଦଗାରି
ସଂସୃଷ୍ଟେ ଉତ୍କଟ କର୍ଣ୍ଣକଟୁ ବିଷାୟନ;
ସାଦୀ ବହି କୁନ୍ତ କେହି ଅସି ପଟ୍ଟୀଶାଦି
ନିସ୍ତଳ ଫଳକ ଦୋଳେ ପୃଷ୍ଠପଟେ ଯାର
ଧପଟେ ଘୋଟକ କେବା କରେ ଆସ୍କନ୍ଦିତ
ଶ୍ଳଥ ପ୍ଳୁତ ଚକ୍ର ବକ୍ର ଗତି ବିଧେ କେବା ।
ଗର୍ଜ୍ଜେ ଗଜବ୍ରଜ ଶୃଣୀ ଘାତେ ନିଷାଦିର
ଦୀର୍ଘ ଶୁଣ୍ଡ ଆସ୍ଫାଳି ପ୍ରଖରେ ଗତି କରି
ମୁକୁତା ଝାଲରଯୁତ ପୃଷ୍ଠେ ପରିସ୍ତୋମ
କ୍ୱଣିତ ଘଣ୍ଟିକାଯୁଗ ଲମ୍ବେ ପାର୍ଶ୍ୱଯୁଗେ,
ରଥପରେ ବସି ରଥୀ ଟଙ୍କାରଇ ଧନୁଃ
କେ ଅବା ନିଷ୍କୋଷେ ଅସି କେବା ତୋଳେ ଶୂଳେ
କେ ପଦାତି ସ୍ୱୀୟ ପଦ କ୍ଷେପଇ ରଭସେ
କେ ଅବା ସରୋଷେ ତହିଁ ସିଂହନାଦେ ନାଦେ
ହୟ ହସ୍ତୀ ରଥ ପତ୍ତି ପଦେ ରଜୋରାଶି
ଉଡ଼ଇ ଆକାଶେ ଗ୍ରାସ କରି ରବିକର
ବୀର ମହାବୀର ମହାରଥ ଅତିରଥ
ରଥ ଗଜ ହୟ ମୟ ମହିଷ ବାହନେ
ଗଦାକୁନ୍ତ ଶୂଳ ଖଡ୍ଗ କାର୍ମୁକ ଶାୟକ
ପରିଘ ଭୁଷଣ୍ଡୀ ଶକ୍ତି ତୋମରାଦି ଧରି
ନିଃସରନ୍ତି ଭୟଙ୍କର ବେଶେ ଯୁଦ୍ଧ ଆଶେ
ଛାଦିତ ତନୁତ୍ର ତନୁ ସ୍କନ୍ଧେ ବଦ୍ଧତୂଣ
ଶୀର୍ଷେ ଯା ଶୀର୍ଷକ ପୁଣି ଭୁଜେ ବୀରନେତ
ତର୍ଜନ୍ତି ଗର୍ଜନ୍ତି କେବା ସର୍ଜନ୍ତି ହୁଂକାର
ପହିର୍ଯ୍ୟ ଦେଖାଇ କେବା ଶୂନ୍ୟେ ଭ୍ରମେ ଶୂଳ
ଉର୍ଦ୍ଧ୍ୱେ ଶକ୍ତି ଫିଙ୍ଗି କେବା ନିବେଶଇ ଛାତି
ସଂସୃଜଇ ଝଣତ୍କାର ହୃଦେ ଯା ନ ଭେଦି

ଏ ଭାବେ ପହିର୍ଯ୍ୟ ଶୌର୍ଯ୍ୟ ବୀର୍ଯ୍ୟ ପ୍ରଦର୍ଶାଇ
ଆସନ୍ତି ବିକଟଥାଟ କେ କରେ କଳନା;
ଖଣ୍ଡ ବିଖଣ୍ଡ ନାମେ ତା ବେନି ସେନାପତି
ଦ୍ୱିତୀୟ କୃତାନ୍ତମୂର୍ତ୍ତି ସମରେ ଦୁର୍ବାର
ଅନର୍ଗଳବଳୀ ଏକୁଁ ଏକ ଜଗଦ୍‌ଜେତା
ଅଗ୍ରେ ଧାଏଁ ଧାତିକାରେ ସୈନ୍ୟବ୍ୟୂହ ଘେନି
ପ୍ରଚଣ୍ଡ ଆୟସୀ ଗଦା କରେ କରେ ବହି
ତୁରଙ୍ଗ ମାତଙ୍ଗ ଯାନଦ୍ୱୟ ପୃଷ୍ଠେ ବସି;
ଗତିମାର୍ଗ ଅସମ୍ଭାଳ କରି ସୈନ୍ୟଦଳ
ପ୍ରଳୟ ପୟୋଧି ବିଧି ମାଡ଼ି ଚାଲୁଛନ୍ତି
ଭାଷେ ରକ୍ଷଃ ଆସି ପାଶେ ମୋ ନିବାସ ବାସେ
ଯାଉଛି ଯୁଦ୍ଧେ ମୁଁ ସଖି ! ନୋହିବୁରେ ଦୁଃଖୀ
ସୁରପୁର କରି ଜୁର ବସନ ଭୂଷଣ
ଆଣି ଦେବି ମନୋମତେ ରହିଥାଅ ଗୃହେ
ଶୁଣି ମୁଁ ଭାଷିଲି ଭାଷ ତବ ସ୍ନେହବଶ
କାହିଁ ରହିବି ରାଜନ ଏକାକିନୀ ଗୃହେ
ସଙ୍ଗେ କର ସ୍ୱର୍ଗପୁର ଦରଶନେ ମନ
ଭକ୍ଷୋମଣି ଶୁଣିବାଣୀ ଅଙ୍ଗୀକାର କରୁଁ
ଆରୋହି ଭିନ୍ନ ସ୍ୟନ୍ଦନେ ଗମିଲି ତା' ସଙ୍ଗେ ।
ଚାର ମୁଖୁ ସମାଚାର ପାଇ ପୂର୍ବୁ ଇନ୍ଦ୍ର
ଡାକିଥିଲେ ସୁରବର୍ଗ ସ୍ୱର୍ଗରକ୍ଷା ଲାଗି
ଆସିଥିଲେ ହରବ୍ରହ୍ମା ବିଷ୍ଣୁ ଦିଗପାଳ
ଗ୍ରହ ଗନ୍ଧର୍ବ କିନ୍ନର ଅଶ୍ୱିନୀକୁମାର
କୁମାର ନଳକୁବର ମାର-କନ୍ଦର୍ପ ସହକାରେ
ଯକ୍ଷ ବିଦ୍ୟାଧର ସିଦ୍ଧ ଚାରଣ ଏ ଆଦି
ସଙ୍ଗେ ଘେନି ନିଜ ସୈନ୍ୟ ସାମନ୍ତ ସକଳ
ଯୁଦ୍ଧ ଆଶେ ସୁସଜ୍ଜିତ ଅସ୍ତ୍ର ଶସ୍ତ୍ର କରେ;
ଏସମୟେ ପ୍ରବେଶିଲା ରକ୍ଷଃ ଉଗ୍ରତେଜେ

ଲାଗିଲା ତୁମୁଳ ଯୁଦ୍ଧ ଦେବଦୈତ୍ୟ ମେଳେ
ଧର ଧର ମାର ମାର ଶବ୍ଦ ଶୁଭେ ଉଚ୍ଚେ
ଦେବ ଦୈତ୍ୟ ସିଂହନାଦେ ସ୍ୱର୍ଗ କମ୍ପମାନ
ରଥୀ ସଙ୍ଗେ ରଥୀ ପଦାତିର ସଙ୍ଗେ ପତ୍ତି
ସାଦୀ ସାଦୀ ନିଷାଦୀ ନିଷାଦୀ ସହ ଯୁଝେ
କରେ ଘେନି ନାନା ଅସ୍ତ୍ର ଶସ୍ତ୍ର ଭୟଙ୍କର,
ପ୍ରଚଣ୍ଡ ମୂରତି ଖଣ୍ଡ ଆକ୍ରମିଲା ଆସି
ଅଗ୍ରେ ଶିଖୀଧ୍ୱଜେ ଶିଖୀଗଞ୍ଜେ ତେଜ ଯାର
ଶତ୍ରୁ ପଦାକାରୀ ଗଦାବର ଧରି ହସ୍ତେ
ରୋଷଭରେ ନୟନତରାଟି ଆଣ୍ଟବହି
ଶିରି ସମ ତୁଙ୍ଗ ତୁରଙ୍ଗମ ପୃଷ୍ଠେ ବସି;
ଦେଖି ଦେବ ସେନାପତି ହୋଇ କ୍ରୁଦ୍ଧମତି
ପ୍ରହାରିଲେ ଶତ୍ରୁଞ୍ଜୟ ଶକ୍ତି ଦୈତ୍ୟ ହୃଦେ
ହୁଙ୍କାର ଶବଦେ ମେଘନାଦନଟ ପୂର୍ଣ୍ଣେ
ପ୍ରଳୟେ ଭୈରବ ଶିଙ୍ଗ ନାଦେ ଯେହ୍ନେ ରୁଦ୍ର;
ଭୀଷଣ ଗର୍ଜନ ସର୍ଜି ମହାତେଜେ ଜ୍ୱଳି
ପୃଷ୍ଠପଟ ଫୁଟି ନିଃସରିଲା ଶକ୍ତିବର,
ପଡ଼ନ୍ତେ ସେ ଅସୁହାରି ସୁରଧରିତ୍ରୀରେ
ମାରନ୍ତି ସେନାନୀ ତାର ସେନା କୁତୂହଳେ;
ପ୍ରବେଶ ବିଖଣ୍ଡ ରକ୍ଷଃ ବକ୍ଷଃ କରି ସ୍ଫୀତ
ରେରେକାର ରବେ ମତ୍ତ ହସ୍ତିପୃଷ୍ଠେ ବସି
ଆଷାଢ଼ର ଆଦ୍ୟେ ଯେହ୍ନେ ମୁଦିରନିନଦେ
ଗଦା ପରିହରି ଲୌହ ଧନୁର୍ବାଣ କରେ
ଲକ୍ଷ୍ୟଭେଦୀ ଦମ୍ଭକୁମ୍ଭ ବିନାଶ ସକାଶେ;
ସଂଗ୍ରାମେ ସୁଦକ୍ଷ କେତ୍ରମୁଖ ରକ୍ଷେ ଲକ୍ଷି
ତା ପୁରତେ ଉପସ୍ଥିତ ଦେବ ତ୍ରିପୁରାରି
ଭେଟଇ କେଶରୀରାଜ ଯେହ୍ନେ କରିରାଜେ
ଆରୋହି ମତ୍ତବୃଷଭ ସୁଗରିଷ୍ଠ ପୃଷ୍ଠେ

ଘାଘୁଡ଼ି ଘଣ୍ଟିକାମାଳ ଦୋଳେ ଯାର ଗଳେ
ପିନାକ ଟଙ୍କାରି ରୋଷେ ଆକର୍ଣ୍ଣ ଓଟାରି
ପାଶୁପତ ଶର ଯୋଚି ମାରନ୍ତି ସବର;
ତାହା ଦେଖି କେତୁମୁଖ ମହାଧନୁ ଧରି
ପ୍ରତିଶର କରି ମାରେ ଖରଶାଣ ତୀର
ରୋଷେ କରି ନେତ୍ର ରକ୍ତ ଭ୍ରୂଯୁଗ କୁଞ୍ଚିତ
ବୋଲେ ରହ ରହ ଯୋଗୀ ଯିବୁ ଆଜ କାହିଁ;
ଦୁରନ୍ତ କୃତାନ୍ତ, ମୂର୍ତ୍ତି ରଶ୍ମିକେତୁ ବୀର
କୁନ୍ତ ଘେନି ଧାବନ୍ତେ ପ୍ରଖରେ ଖରେ ବସି
ଦେଖି ଚିତ୍ରସେନ ମହାସେନ ସମ ଯୋଦ୍ଧା
ଧାଇଁ ଓଗାଳଇ ଚିତ୍ରଧ୍ୱଜ ରଥେ ରହି
ବୁଭୁକ୍ଷୁ ହର୍ଯ୍ୟକ୍ଷ ଯଥା ଶଶକେ ବିଲକ୍ଷି
କରେ ବହି ରତନମଣ୍ଡିତ ଧନୁବର
ଗନ୍ଧର୍ବ ଶାୟକ ପେଷେ ରୋଷେ ତା ଶରୀରେ;
ବିଡ଼ାଳାକ୍ଷ ଆଖ୍ୟା ରକ୍ଷଃ ଅତି ବିକଟାଳ
ହୁଂକାରି ବିକଟ ନାଦେ ଧାଏଁ ଧାତିକାରେ
ସଦୀର୍ଘ ପରିଘହସ୍ତେ ବ୍ୟାଘ୍ରପୃଷ୍ଠେ ବସି
ଚାହିଁ ଚିତ୍ରରଥ ମହାରଥ ପଥ ରୋଧେ
ଚିତ୍ରଗତି କରି ରଥ ଧୁଆଇଁ ତା ପାଶେ
କପୋତ ନିପାତେ ଯେହ୍ନେ ଧାଏଁ ଖରତରେ
ବଜ୍ରନଖ ଶ୍ୟେନ ତାକୁ ଲକ୍ଷି ପକ୍ଷଝାଡ଼ି
ତୀକ୍ଷ୍ଣମନା ଶର ଯୋଚି କୂର୍ମ ଧନୁର୍ଗୁଣେ
ପେଷଇ ବିଚିତ୍ର ହସ୍ତକୌଶଳ ଦେଖାଇ;
ବୃନ୍ଦାରକ ଭୀତିଦାତା କୁନ୍ଦ ମହାସୁର
ଧାଇଁଲା ତୁରଙ୍ଗ ଯୋଚା ମହାରଥେ ବସି
କଞ୍ଚୁକୀ ଲାଞ୍ଛନ କେତୁ ଶୋଭେ ଯା ମସ୍ତକେ
କରେ ବଜ୍ରସମ ଧନୁଁ ସୂଚିମୁନା ଶର ।
ଦେଖି ବ୍ରହ୍ମା ଅଧ୍ୱ ନିରୋଧିଲେ ହଂସେ ବସି

ବ୍ରହ୍ମତେଜୋଦ୍ଭୂତ ଶକ୍ତି ଗ୍ରହି ଦକ୍ଷ ହସ୍ତେ
ତେଣୁ କୋପି ଘୋର ରୂପୀ କୁନ୍ଦମହାସୁର
ଧନୁର୍ନାଦେ ଶରଲକ୍ଷ୍ୟ କଲା ଚତୁର୍ମୁଖେ
ଚାହିଁ ବ୍ରହ୍ମା ବ୍ରହ୍ମଶକ୍ତି ମାରି ତା ଛାତିରେ
ପଠାଇଲେ ଝଟିତିରେ ଶମନସଦନ;
ତା ଦେଖି ସେ ବୃନ୍ଦାସୁର କୋପେ ଦନ୍ତଚାପି
ଭଲ୍ଲୁକ ବାହନେ ଧାଏଁ କରେ ଶୂଳ ଧରି
ରେରେକାର ରବେ ଚକ୍ରନେତ୍ର କରି ବକ୍ର
ନିନାଦେ ନୀରଦ ଯେହ୍ନେ ସୃଷ୍ଟିଲୟ କାଳେ
ମାତ୍ର ସୁରଜ୍ୟେଷ୍ଠ ଶିର କମ୍ପାଇ ସରୋଷେ
ଶୂଳ ନ ପ୍ରହାରୁଁ ପୁଣି ବ୍ରହ୍ମଶକ୍ତି ପେଷି
ନାଶନ୍ତେ ସେ ସୁରଦ୍ୱେଷୀ ରାକ୍ଷସେ ସଂଗ୍ରାମେ
ଭଲ୍ଲୁକ ସହିତେ ଗଡ଼ି ପଡ଼ିଲା ଭୂମିରେ;
ସେ ଦିନୁ ପରଜ୍ଞା ସୃଷ୍ଟିକର୍ତ୍ତା ଧାତାଙ୍କର
ହତ୍ୟାକର୍ମ ପ୍ରତି ହେଲା ଅତି ମର୍ମବ୍ୟଥା;
ଦନ୍ତୋତ୍କଟ ମହାସୁଣ୍ଡ ସମରେ ଦୁର୍ବାର
କରିଅଛି ବେନିବାର ଶକ୍ରେ ଯେ ପରାସ୍ତ
ଚକ୍ରବ୍ୟୂହକାରୀ ପୁଣି କୁଚକ୍ର କୌଶଳୀ
ଆସି ପ୍ରବେଶିଲା ରୋଷେ ରକ୍ତବର୍ଣ୍ଣରଥେ
ଅୟସେ ନିର୍ମିତ ଧନୁଃ ରତନ ଖଚିତ
ଧରିଅଛି ବାମକରେ ଦୃଢ଼ମୁଷ୍ଟିଦେଇ
ଦକ୍ଷିଣେ ବଜ୍ରାଖ୍ୟ ବାଣ ତ୍ରିଶିରା ରଞ୍ଜିତ
ସ୍ୱନାମେ ଲାଞ୍ଛିତ ପୁଣି ମହା ଦୀପ୍ତିଶାଳୀ
ଦେଖି ତାକୁ ଓଗାଳିଲେ ପ୍ରଭୁ ଦେବରାଜ
ଭେଟେ ମୃଗପତି କିରେ ମୃଗଯୂଥନାଥେ
ବୈନତେୟ ପୃଷ୍ଠପୀଠେ ଶଙ୍ଖଚକ୍ର ହସ୍ତେ
ଆବର ଦ୍ୱିକରେ ବହି ଗଦା ପଦ୍ମ ଦ୍ୱୟ
ତେଣୁ ରୋଷେ ଅଟଟହାସେ ହସି ସେ ଦାନବ

ପେଶିଲା ତ୍ରିଶିରା ଶର ବିଷ୍ଣୁଙ୍କ ଉପରେ
ଆକର୍ଣ୍ଣ ଓଟାରି ପୁଣି ଦନ୍ତଦୃଢ଼େ ଭିଡ଼ି;
ଘୋର ସ୍ୱନେ ଶର ଆସୁଁ ଆକାଶରୁ ଖସି
ଜ୍ୱଳନ୍ତ ଉଲ୍କା ଆକାରେ ଅଗ୍ନି ବରଷାଇ
ଚାହିଁ ବିଷ୍ଣୁ ବକ୍ରେ ରହି ଚକ୍ର ପେଷି ଚାଣ୍ଡେ
ଖଣ୍ଡ ଖଣ୍ଡ କଲେ ତାର ସେ ଅମୋଘ କାଣ୍ଡ
ବାଣବ୍ୟର୍ଥ ଦେଖି ଦୈତ୍ୟ ହୋଇ କୋପମନା
ପୁଣି ଯୋଚି ଗ୍ରହମୁଖ ଭୟଙ୍କର ଶର
ନାଗ ନର ସୁରାସୁର ରକ୍ତ ବ୍ୟକ୍ତ ଯହିଁ
ପେଷିଲା ରଭସେ ନିଜ ପୌରଷ ଦେଖାଇ
ଆସୁଁ ପାଟୀ ମେଲି ଜିହ୍ୱା ଲହ ଲହ ଚାଳି
କାଳାନଳ ଜ୍ୱାଳ ବିଞ୍ଚି ଭୈରବ ଆରବେ
ପୁନଃ ଚକ୍ର ପେଷି ଚକ୍ରୀ ତାକୁ କଲେ ଦୂର
ଏହି ଭାବେ ଉଭୟଙ୍କ ମଧ୍ୟେ ଘୋର ରଣ
ଲାଗିଲା କେତେହେଁ କାଳ କଳନା କେ କରେ
ରଥର ସହିତ ଦୈତ୍ୟ ଲୁଚେ ଯହିଁ ତହିଁ
ଚକ୍ରବ୍ୟୂହ ରଚି କେବେ ବ୍ୟୋମେ ଦିଏ ଦେଖା
ମେଘ ଅନ୍ତରାଳେ କେବେ ହୁଅଇ ଅଦୃଶ୍ୟ
ପୁଣି ଆସି ବିଷ୍ଣୁପାଶେ ସର୍ଜଇ ସଂଗ୍ରାମ
କେବେ ରଥ ତେଜି ବହେ ଗଜବାଜୀ ଦେହ
କେବେ ମେଷ ମହିଷ ବୃଷଭ ଆଦି ରୂପ
କେବେ ଧନ୍ୱୀ କେବେ ଖଡ୍ଗୀ କେବେ ଗଦାଧାରୀ
କେବେ କୌନ୍ତିକ ଶାକ୍ତିକ କେବେ ଶୂଳ୍ୟ ଭାଲୀ
କେବେ ଶରୀର ବଢ଼ାଏ ପର୍ବତ ସମାନ
କେବେ ବାମନ ପରାଏ ବହେ ଖର୍ବଦେହ
କେବେ ହୁଏ ଦୀର୍ଘାକାର ନଭେ ସ୍ୱର୍ଶେ ଶିର
ରାକ୍ଷସର ମାୟାବଶୁଁ ମାୟାଧର ହରି
ବଧି ନ ପାରିଲେ ତାକୁ କରି ବହୁବୁଦ୍ଧି

ତେଣୁ ରୋଷେ ହୃଷୀକେଶ ଆରକ୍ତ ଲୋଚନେ
ଦୈତ୍ୟ ବିନାଶନ ଭାବ ଭାବି ହୃଦଗତେ
ବାମହସ୍ତସ୍ଥିତ କମ୍ବୁ ଚୁମ୍ବିଲେ ସୁଆଣ୍ଟେ
ଅମ୍ବୁନିଧି ବିଧି ନାଦ ଘୋଷନ୍ତେ ନିର୍ଘୋଷେ
ଶୁଣି ଦୁଷ୍ଟ ଦୈତ୍ୟ ଗାତ୍ର କମ୍ପିଲା ଆତଙ୍କେ
ପୁଣି ଦକ୍ଷ ହସ୍ତେ ନ୍ୟସ୍ତ ସୁଦର୍ଶନ ଚକ୍ରେ •
ଡିଆରିଲେ ମନ୍ତ୍ରି ତାକୁ ଅଭିଚାର ମନ୍ତ୍ରେ
ଯାଅ ସୁଦର୍ଶନ ବସି ସହସ୍ରାଂଶୁ ବିଦ୍ବେ
ମାୟାବୀ ରାକ୍ଷସେ ନାଶ ରକ୍ଷା ନ ବିଚାରି
ଛାର ଦୈତ୍ୟ ଆସି ଏଥେ ମୋତେ ମାୟା କରେ
ମାୟାଧର ହୋଇ ନି କି ସହିବି ମୁଁ ତାହା
ସ୍ୱର୍ଗ ମର୍ତ୍ତ୍ୟ ପାତାଳେ ବା ଅତଳେ ବିତଳେ
ପ୍ରାଣର ବିକଳେ ରକ୍ଷଃ ଲୁଚିଥାଏ ଯହିଁ
ଖୋଜି ମାର ଚନ୍ଦ୍ରବର ଅଚିରେ ପ୍ରବେଶି
ଶୁଣି ହସ୍ତ ବର୍ଜି ନାଦ ସର୍ଜି ସେ ପ୍ରଚଣ୍ଡେ
ଗତି ମାର୍ଗ ପ୍ରଜ୍ବଳିତ କରି ମହାତେଜେ
ଧାଇଁଲା ଝଟିତ ଦୈତ୍ୟ ବିନାଶ ସକାଶେ
ମହାକାଶ ଦେଶେ ଚରାଚର ତ୍ରାସ ଦେଇ
ଭେଟି ତାକୁ ରକ୍ତରଥେ ଅନ୍ତରୀକ୍ଷ ପଥେ
କଲା ବେନିଖଣ୍ଡ ମୁଣ୍ଡ ଭୂମିରେ ଲୁଣ୍ଠାଇ
ଚକ୍ର ଆସି ପ୍ରବେଶିଲା ଚକ୍ରୀ ଚାରୁକରେ
ଦେଖି ତୋଷେ ହୃଷୀକେଶ କମ୍ବୁନାଦ ଘୋଷି
ବିଜୟସୂଚକ ଅବିଧାନ ସୂଚାଇଲେ
ଅନ୍ତେ କୌମୋଦକୀ ଗଦା ଦକ୍ଷ କରେ ବହି
ମାରି ପଦା କଲେ ଚକ୍ରବ୍ୟୂହ ସୈନ୍ୟଚକ୍ର;
ଆଖଣ୍ଡଳ ବିଖଣ୍ଡର ଯୁଦ୍ଧଘୋରତର
ଦୁହେଁ ଶୂରବୀର ରଣେ ନ ଘୁଞ୍ଚନ୍ତି କ୍ଷଣେ
କଳମ୍ବ କଦମ୍ବ ଉଡ଼େ ଅମ୍ବର ପ୍ରଦେଶେ

ସନ୍‌ସନ ସ୍ୱନେ ଜାଣି ବରଷା ଆସାର
କରେ ରବିକର ଗ୍ରାସ ଅନ୍ଧାରେ ଚୌଦିଗ
ଘୋଷେ ରଥ ହ୍ରେଷେ ଅଶ୍ୱ ଗର୍ଜେ ଗଜବ୍ରଜ
ବୀର ପାଦଘାତେ ସ୍ୱର୍ଗଭୂମି ଟଳଟଳ
ଅମ୍ବର ଝନ୍ ଝନ୍ ପୁଣି ଗଜଘଣ୍ଟା ସ୍ୱନ
ଭକ୍ଷଙ୍କ ଚିତ୍କାର ରବେ ଶ୍ରବଣ ବଧିର
ଉଠେ ରଜୋରାଶି ନଭେ ତଳେ ରକ୍ତବ୍ୟକ୍ତ
ନିରେଖି ଏସନ ଭାବ ମାନସେ ପ୍ରବେଶ୍ମି
ରାକ୍ଷସ ବିନାଶ ବଶେ କାଳ ବା ଅନଳ
ଜ୍ୱାଳନ୍ତେ ରଣ ଅଙ୍ଗଣେ ତା ଧୂମ ପ୍ରକାଶ
ବିଖଣ୍ଡ ତୁହାଇଁ ମାରେ ଯେତେ ଯେତେ କାଣ୍ଡ
ଆଖଣ୍ଡଳ ଖଣ୍ଡ ଖଣ୍ଡ କରନ୍ତି ତତ୍‌କାଳ
ତାଦେଖି ବିଖଣ୍ଡ କୋପି ସହସ୍ରଲୋଚନେ
ବିଖଣ୍ଡ'–ବଚନ ରଚି ଭାଷିଲା ଏସନ
ରେ ମହେନ୍ଦ୍ର ! ରତିଚୋର ଦିତୀଗର୍ଭଘାତୀ
ସହସ୍ରଯୋନିର ଚିହ୍ନ ବହୁରେ ଅଦ୍ୟାପି
ସାମାନ୍ୟ ଦୈତ୍ୟ କି ମୋତେ ମଣିଛୁ ବର୍ବର
ସମରେ ଦୁର୍ବାର ମୁଁରେ ନାହିଁ କିତୋ ଜଣା
ପ୍ରେତପତି'–ପୁରେ ଆଜ ନିଯୋଜିକ ତୋତେ
ସମ୍ଭାଳ ସମ୍ଭାଳ କିନା ମୋର ଗଦାଘାତ,'
ଏତେ ଭାଷି ଗଦାତୋଳୁଁ କୋପେ ଜ୍ୱଳି ଇନ୍ଦ୍ର
ପ୍ରହାରିଲେ ବଜ୍ର ଗର୍ଜି ଭୈରବ ଆରବେ
ଅନଳ ଉଦ୍ଗାରି ବ୍ୟଗ୍ରେ ଧାଇଁଲା ଗଗନେ
ପଡ଼ନ୍ତେ ବା ପିଣ୍ଡେ ଚାଣ୍ଡେ ଦ୍ୱିଖଣ୍ଡ ବିଖଣ୍ଡ
ଗଡ଼ିଲା ତା' ଗଣ୍ଡିମୁଣ୍ଡ ରଣଭୂମି ଦାଣ୍ଡେ
ତା'ର ସହ ଛିନ୍ନଦେହ ମତ୍ତମାତଙ୍ଗର;
ସେନାନୀ ନିଧନେ ସେନା ପଳାନ୍ତେ ଆତୁରେ
ଗୋଡ଼ାଇ ନାଶିଲେ ଇନ୍ଦ୍ର ଶେଷ ପରିଯନ୍ତେ
ମତ୍ତ-ଗଜପଶି ଯେହ୍ନେ ସରୋବର ନୀରେ

ମନ୍ତେ ନିଜ ମନୋମତେ ସରସିଜବ୍ରଜ;
ପଞ୍ଚମୁଖ କେତୁମୁଖ ସମର ପ୍ରଚଣ୍ଡ
କମ୍ପଇ ବ୍ରହ୍ମାଣ୍ଡ ଖଣ୍ଡ ବେନି ଧନୁର୍ନାଦେ
ଯୁଦ୍ଧର ବିଳମ୍ବ ଦେଖି କ୍ରୋଧେ ଅସମ୍ଭାଳ
ହୋଇ ସେ ଧୂର୍ଜଟୀ ତହୁଁ ଶୂଳ ଧରି କରେ
ମହାଭୟଙ୍କର ଯେବା ଜ୍ୱଳଦଗ୍ନି ପ୍ରଭ
ଲେହିଛି ଯେ ବହୁଅସ୍ତ୍ର ଅସ୍ତ୍ରପ ବ୍ୟୂହର
ସୁସ୍ୱନା ରସନାରାଜି ନିବନ୍ଧ ଯା ମଧ୍ୟେ
ଦୋଳଇ ମନ୍ଦାରମାଳ ପୁଣି ଶୀର୍ଷଦେଶେ;
ପ୍ରହାରନ୍ତେ ଦୈତ୍ୟପରେ ରକ୍ତନେତ୍ର ବହି
ଚଳିଲା ପ୍ରଚଣ୍ଡ ଶୂଳ ଉଭାସି ଅମ୍ବର
ଝଣତ୍କାର ନାଦେ ରକ୍ଷୋବାଦେ ଗତିକରି
ହୃଦଭେଦି ବାହାରନ୍ତେ ଦୈତ୍ୟ ପୃଷ୍ଠପଟେ
ବିସର୍ଜି ସେ ଘଟ ଭେଟେ ଯାଇ ଜନ୍ତୁରାଟ
ଜୟ ଚାହିଁ ମୃତ୍ୟୁଞ୍ଜୟ ଡମ୍ବରୁ ବଜାଇ
ସ୍ୱବିଜୟ ସୂଚାଇଲେ ଆନନ୍ଦିତ ମନେ;
କେତୁମୁଖ ହତଦେଖି ରଣିକେତୁ ଦୁଃଖୀ
ଯୁଝୁଥିଲା ଚିତ୍ରସେନ ସଙ୍ଗେ ଯେ ସଙ୍ଗରେ
ଭାଇର ମରଣେ ରଣେ ମୁରୁଛି ପରାଣ
ମହା ବିକ୍ରମେ ଯୁଝିଲା ପହିର୍ଯ୍ୟ ଦେଖାଇ
ମାତ୍ର କାଳ ନଦେଲାରେ ତାକୁ ଆଉ କାଳ
ବଞ୍ଚିବାକୁ ଇଛିଥିଲେ ହେଲେ ସେ ଦାନବ
ମହାସେନ ସମଯୋଦ୍ଧା ଚିତ୍ରସେନ ବୀର
ମାରନ୍ତେ ତ୍ରିପକ୍ଷ ଆଖ୍ୟା ଅମୋଘ-ଶାୟକ
ବିସର୍ଜିଲା ପ୍ରାଣ ସର୍ଜି ଭୀଷଣ ଗର୍ଜନ,
ଅଙ୍ଗବଳ ସକଳ ତା ନାଶି ଚିତ୍ରସେନ
ମହାନନ୍ଦେ ଯାଇ ଇନ୍ଦ୍ରପଯର ବନ୍ଦିଲେ;
ଯୁଝୁଥିଲେ ବିଡ଼ାଳାକ୍ଷ ସଙ୍ଗେ ଚିତ୍ରରଥ

ମହା ସମରଥ ମହାରଥଙ୍କ ଅଗ୍ରଣୀ
ବହୁଯୁଦ୍ଧ କରି ତାକୁ ନ ପାରନ୍ତେ ବଧି
ହୋଇଲେ ଅଧୀର କ୍ରୋଧେ ଓଷ୍ଠପୃଷ୍ଠଦଂଶି
କୂର୍ମଚାପ ଶିଞ୍ଜିନୀ ଟଙ୍କାରି ରୋପି ରୋପ
ପଞ୍ଚଶିଖ ଆଖ୍ୟା ଯାର ଦର୍ପୀଦର୍ପହର
ଆକର୍ଣ୍ଣ ଓଟାରି କ୍ଷିପ୍ରେ ପେଷନ୍ତେ ତା ପରେ
ଚଳିଲା ମାର୍ଗଣ ବ୍ୟୋମମାର୍ଗ ଅନୁସରି
ସପୁଚ୍ଛ ତାରକାକାରେ ବଞ୍ଚି ଅଗ୍ନିରାଶି
ଭୀଷଣ ଗର୍ଜ୍ଜନ ସର୍ଜି ବଜ୍ରୀବଜ୍ର ସମେ;
ବିଡ଼ାଳାକ୍ଷ ବକ୍ଷେ ଯାଇ ପଡ଼ନ୍ତେ ସେ କାଣ୍ଡ
ପଡ଼ିଲା ତା ପିଣ୍ଡ ସ୍ୱର୍ଗ ଭୂମିତଳେ ଗଡ଼ି
ଝଡ଼ିଲା ପରିଘ କରୁଁ ଝଣଝଣ ନାଦେ
ପଳାଇଲା ମତ୍ତବ୍ୟାଘ୍ର ଶୂନ୍ୟପୃଷ୍ଠ ହୋଇ;
ଗରିଷ୍ଠ ଅରିଷ୍ଟ ଦୈତ୍ୟ ଘୋର ଭୟଙ୍କର
ଅରିଷ୍ଟ ସମାନ ଯେବା ପରଣପୀଡ଼କ
କାଞ୍ଚନ କାଞ୍ଚୁକ ଅଙ୍ଗେ ଶିରେ ଶିରସ୍ତ୍ରାଣ
କଟି ସାରସନେ ଅସି ଝଣକ୍ରାରେ ଯାର
କରେ ଧରି ଲୌହଯଷ୍ଟି ଧାଇଁଲା ପ୍ରଖରେ
ତାଳତରୁ ତୁଙ୍ଗ ଯେବା କୀଳକଲିଡ଼କ
ମତ୍ତ ହସ୍ତିପରେ ଯହିଁ ପ୍ରବେଣୀ ମଣ୍ଡିତ
ଥୋର ହସ୍ତେ ଆସ୍ଫାଳେ ଯେ ଦୁର୍ଦ୍ଧାର ମୁଦ୍ଗର
ନିହାରି ଦର୍ପକ ଦର୍ପେ ଘେନି ଧନୁର୍ବାଣ
ପଥ ନିରୋଧିଲେ ତାର ମାୟାରଥେ ବସି
ଖଗେନ୍ଦ୍ର ନାଗେନ୍ଦ୍ର ଅଧି ରୋଧଇ ଯେସନେ
ନୀରଦ ସୁନ୍ଦରତନୁ ପୁରୁଷଲଲାମ,
ଦେଖି ତାଙ୍କୁ ହସି ଭାଷେ ରକ୍ଷସ ଏସନ
ଆରେ ରେ ସୁନ୍ଦର ଶିଶୁ ଆସିଅଛୁ ଧାଇଁ
ନାହିଁରେ ସୁରଙ୍ଗ ଫଳ ଏ ସଙ୍ଗର ଭୂମି

ଯାଅ ଫେରି ପିତାମାତା ଲୋଡୁଥିବେ ତୋତେ
ସୁକୁମାର କୁମାର ତୁ ମୁରୁଛିଲେ କେହ୍ନେ;
ଶୁଣି ସ୍ବର କୋପଭର ହୋଇ ଭାଷେ ଗୀର
ଅଗ୍ନିକଣା ଗୁଣ ଜଣାନାହିଁ କି ରେ ଦୈତ୍ୟ !
ମଣୁ ତୁଁ ବାଳକ, ଦେଖ ଦେଖ ମୋ ବିକ୍ରମ
ଏତେ କହି ପ୍ରତ୍ୟାଲୀଢ଼ ପଦେ ଧନୁଧରି
ଯୋଚିଲେ ସୁତୀକ୍ଷ୍ଣତୀର ଧନୁର୍ଗୁଣେ କଷି
କୋପି ଦୈତ୍ୟ ଯଷ୍ଟି ଟୋଳି ବୁଲାଇ ପିଟନ୍ତେ
ପେଷିଲେ ସେ ଶର ସ୍ବର ପ୍ରକାଶି ବିକ୍ରମ
ଶତଖଣ୍ଡ ହୋଇ ଯଷ୍ଟି ପଡ଼ିଗଲା ତଳେ
ଦେଖି ଦୈତ୍ୟ ଅସି ନିଷ୍କୋଷିଲା କୋଷ ମଧ୍ୟୁ
କାଳକୃତାନ୍ତ ପରାଏ ନୟନ ତରାଟି
ମାରିବାକୁ ଉଦ୍ୟତ ହୁଅନ୍ତେ ଶମ୍ବରାରି
ମାଇଲେ ଶମ୍ବକ ଶର ପ୍ରକୋପେ କୌଣପେ
ଖସିଲା ହସ୍ତିରୁ ଦୈତ୍ୟ ବିସର୍ଜି ଜୀବନ
କିଂଶୁକ କୁସୁମ ବଡ଼ ସ୍ୱର୍ଗ ଭୂମିତଳେ
ଅଙ୍ଗବଳ ସକଳ ତା ନାଶି ରତିପତି
ପ୍ରଫୁଲ୍ଲିତମତି ହୋଇ ଫେରାଇଲେ ରଥ;
ମହା ପରାକ୍ରମୀ ବଳୀବଳ ଦର୍ପ ଭଞ୍ଜା
ବିଦ୍ରମ୍ଭ ରାକ୍ଷସ ବେନିଦ୍ରମ୍ଭ କରେ ଧରି
ଧାବନ୍ତେ ଭେଟିଲା ପଥେ ବ୍ୟୟବ୍ୟାଧିନାଥେ
ବେନିହେଁ ବଳିଷ୍ଠ ପୁଣି ଗରିଷ୍ଠ ଶରୀର
ଲାଗିଗଲେ ତେଣୁ ଗଦା ଦ୍ବନ୍ଦେ ପିଟାପିଟି
ଗଦା ଦ୍ରମ୍ଭ ଭାଙ୍ଗୁ ଦୁହେଁ ହୋଇ ଶୂନ୍ୟହସ୍ତ
ଆରମ୍ଭିଲେ ମଲ୍ଲଯୁଦ୍ଧ ହୋଇ ଧରାଧରି
ମରାମରି ହେଉଥାନ୍ତି ପୁଣି ମୁଥାଘାତେ
କେବେ ଛଡ଼ାଛଡ଼ି ଦୁହେଁ ପୁଣି ଜଡ଼ାଜଡ଼ି
କେବେ ଗଡ଼ାଗଡ଼ି ହୋଇ ଉଠନ୍ତି ତଡ଼ତି

ଦେଇ ଖଣ୍ଡଗତି ଆସି ମୁଣ୍ଡ କୋଡ଼ାକୋଡ଼ି
ହୋଇ ଦନ୍ତ କଡ଼ମଡ଼ି ଚାହାନ୍ତି ଅପାଙ୍ଗେ
ପାଦେ ପାଦ ଭୁଜେ ଭୁଜ ଛନ୍ଦି କେତେବେଳେ
ବ୍ୟାସ୍ତାଳୀତେ ଉଭା ଲମ୍ଫ ଦେଇ କେବେ ଅବା
ବାହ୍ୱାସ୍ଫୋଟ ଜଘାସ୍ଫୋଟ ବିକଟ ହୁଂକୃତ-
ନାଦେ ପୁଣି ପଦାଘାତେ, ଚମକେ ତ୍ରିଦିବ
ଏଭାବେ କରନ୍ତେ ଘୋର ସମର ବେନିହେଁ
ଦୁହିଁଙ୍କର ଦେହ ରକ୍ତେ ଘର୍ମେ ଜରଜର
ଗରଗର ଭାଷ ପୁଣି ନିରନ୍ତର ଶ୍ରମେ
ତହୁଁ ସେ ବିଦ୍ରୁମ ଦୈତ୍ୟ ବଳେ ମରୁତଙ୍କୁ
ମାଡ଼ି ବସି ଦୃଢ଼େ ଗଳେ ଗଳଥା ନିବେଶି
ଭାଷଇ ଏଭାବେ ରୋଷେ ପରୁଷ ବଚନ
ଆରେରେ ମରୁତ ! ଆଜ ମରୁ ତ ମୋ ହାତେ
ତାତେ ଡାକ ଆସିରଖୁ କାଳର କବଳୁ
ନବୁଝି ଯୁଝିଲୁ ଶଶ, କେଶରୀ ସହିତ
ଦିତିସୁତ ହୋଇ ମୂଢ଼ ! ଅବତିର ସୁତେ
ସେବୁ ଭାବୁ ନାହିଁ ତିଳେ ରେ ନିର୍ଲଜ୍ଜ ଛାର
ଦୈତ୍ୟକୁଳ କୁଳାଙ୍ଗାର ! ଦୈତ୍ୟଜାତି ଦ୍ରୋହୀ ।
କରିଛି ଯେ ଅପକାର କ୍ରୂର ସୁରପତି
ଦିତିଗର୍ଭେ କାଟି ତୋତେ ଅଣଞ୍ଚାଶ ଖଣ୍ଡେ
ଜଣାକି ନାହିଁରେ ବୁଦ୍ଧି ଥାଉଁ ହେଉ ବଣା
ମଣୁ କିରେ ମୂଢ଼ ! ତାହା ଉପକାର କର୍ମ
ବଧିବି ଆଜରେ ତୋତେ ଶତ୍ରୁପଣେ ସାଧି
କୁଳଦ୍ରୋହୀ ଜାତିଦ୍ରୋହୀ ଥିବା ନ ଯୋଗାଏ
ସ୍ମର ସ୍ମର ଇଷ୍ଟଗୋତ୍ର ପାମର ସମୀର ।
ଏକାଳେ ମରୁତ ତାକୁ ଭୀମ ପରାକ୍ରମେ
ଲେଉଟାଇ ପୃଷ୍ଠପଟେ ମାଡ଼ି ବସି ହୃଦେ
କୋପେ ଓଷ୍ଠ ଚାପି ଚାପେ ଦକ୍ଷପଦ ବିକ୍ଷେ

ବାମପଦ କଟିତଟେ ବାମହସ୍ତ କଣ୍ଠେ
ଅଚଳ ଅଚଳସମ ବିଦ୍ରୂମ ରାକ୍ଷସ,
ତହୁଁ କହେ ପୃଷ୍ଟଦଶ୍ୱ ଗର୍ଜି ଘୋରନାଦେ
ଆରେରେ ଦର୍ପିଷ୍ଟ ଦୈତ୍ୟ ଦର୍ପ ବନ୍ଧୁକେତେ
ଭେଟ ଆଜ ଯାଇ ଯମରାଜା ରାଜ୍ୟେ ଗୋତ୍ର
ଏତେ ବଟି ଦକ୍ଷମୁଷ୍ଟି ପିଟି ତୋଟି ଚିପି
ମାଇଲା ଦୈତ୍ୟକୁ ଚାଣ୍ଡେ ପରିଚଣ୍ଡ ବେଶେ
ତହୁଁ ଉଠି ତାର ଥାଟ ଗୋଟାକୁ ଗୋଟାଇ
ଆଣ୍ଟେ ପିଟି ଗଦାବର ନାଶିଲା ସମସ୍ତ;
ଅମ୍ବାସୁର ସଙ୍ଗେ ଯୁଝେ ଜଳଧିରାଜନ
ଶମ୍ବାସୁର ସଙ୍ଗେ ପୁଣି ଅଳକାର ନାଥ
ଅଶ୍ୱିନୀକୁମାର ସହ ଦୀର୍ଘରୋଶା ରଣ
ଲାଗିଅଛି ଘୋରତର ନାହିଁ ନା ବିଶ୍ରାମ
ରକ୍ତାକ୍ଷର ସଙ୍ଗେ ଯମ ନକ୍ତାକ୍ଷେ ରବିର
ଲାଗିଛି ଭୀଷଣ ଯୁଦ୍ଧ ନାହିଁ ନିଦ୍ରା କ୍ଷୁଧା
କେତୁ ସୁକେତୁ ପୁଣି ରାହୁ ସୁବାହୁର
ଲାଗିଛି ସଙ୍ଗର ରଙ୍ଗ ରଣାଙ୍ଗଣ ସ୍ଥଳେ
ଏହି ଭାବେ ଦେବଦୈତ୍ୟ ଭୟଙ୍କର ଯୁଦ୍ଧ
ଲାଗିଅଛି ନିରନ୍ତର କେ ବର୍ଣ୍ଣିବ ତାହା
ଦେବ ସୈନ୍ୟ ଜୟୀ ହୋଇ ମାରୁଛନ୍ତି ଦୈତ୍ୟ
ଦୈତ୍ୟ ସୈନ୍ୟ ହଟି ମରୁଛନ୍ତି କୋଟି କୋଟି
କେତୁମୁଖ ରକ୍ଷେ ନାଶି ଆସୁଁ ଦେବହର
ଗରିଷ୍ଠ ବୃଷଭ ପୃଷ୍ଠେ ଉପବିଷ୍ଟ ହୋଇ
ସେ ବାଟେ ଭେଟିଲେ ଯବାଘୃଷ୍ଟ ଦୈତ୍ୟନୀହା
ଶକୁନିଲାଞ୍ଛନ ଧ୍ୱଜୀ ଦେବାହ୍ରକ ରଥେ
ବସିଛି ଦୁର୍ଦ୍ଦାନ୍ତ ରକ୍ଷଃ ଅସ୍ତ୍ର ଶସ୍ତ୍ର ବହି,
ଦେଖି ତାକୁ ଓଗାଳିଲେ ଆଗଭର ହୋଇ
ଭେଟିଲା ବିପିନରାଜ ଦ୍ୱିପିନେ କି ଅବା

ତା ଅବୈଧ ଯୁଦ୍ଧ ଦର୍ଶେ ହୋଇ କ୍ରୁଦ୍ଧମତି
ଭୟଙ୍କର ଶୂଳ ତୋଳି ଆରକ୍ତ ଲୋଚନେ
କହିଲେ, ପାପିଷ୍ଠ ଦୈତ୍ୟ ! ବରମାଗିନେଇ
କରୁ ଅତ୍ୟାଚାର ତୁରେ ସ୍ୱେଚ୍ଛାଚାର ମତେ
ସମ୍ଭାଳ ସମ୍ଭାଳ ରକ୍ଷଃ ଏହି ତୀକ୍ଷ୍ଣ ଶୂଳେ
ମାରିବି କେ ରକ୍ଷାକରୁ ତୋତେ ଏ ଜଗତେ ।
ଏତେ କହି ରୋଷବଶେ ଭୟଙ୍କର ଶୂଳ
ପ୍ରହାରିଲେ ଅତିବେଗେ ଦୈତ୍ୟହୃଦଭାଗେ
ବାଜନ୍ତେ ସେ ଶୂଳ ହୃଦେ ନ ଭେଦିଲା ତିଳେ
ଉପୁଡ଼ି ପଡ଼ି ତା ଭୂମିତଳେ ଗଡ଼ି ଗଲା
ହେଲେହେଁ ଅମୋଘ ପୁଣି ଦୁର୍ବାର ଜଗତେ
ଭେଦେ କିରେ ସ୍ମରଣର ଶିଳାରୁକ୍ଷବକ୍ଷେ ?
ଦେଖି ଟହ ଟହ ହସି ସେ ଦୁଷ୍ଟ ରାକ୍ଷସ
ଭାଷିଲା ମହେଶେ ତହିଁ କର୍କଶ ବଚନେ
ଆରେରେ ଜଟିଆ ଯୋଗୀ ରହି ମୋର ଆଗେ
ଗର୍ବେ କଥା କହୁ ଲଜ୍ଜା ନାହିଁ କି ତୋ ମୁଖେ
ପେଷିବିରେ ଯମପୁରେ ତୋତେ ବଧି ଆଜ
କେ ରଖିବ ରଖୁଆସି ଜଟିଆ ପାମର :
ମଣିଛୁ ଇତର ଦୈତ୍ୟ ମୋତେ କି ପ୍ରପଞ୍ଚ
ଅସ୍ତ୍ରେ ଶସ୍ତ୍ରେ ଅଜେୟରେ ତ୍ରିପୁରବିଜୟୀ
ଏତେ କହି ରୋଷ ବହି ଶୂଳାଶୂଳ ତୋଳି
ରଡ଼ିଏ ଛାଡ଼ିଲା ଯେହ୍ନେ ମେଘ ଘଡ଼ଘଡ଼ି
ଶୁଣି ତିନିପୁରବାସୀ ହେଲେ ତ୍ରସ୍ତ ସ୍ତବ୍ଧ
ତହୁଁ ଦଗ୍ଧ ତାମ୍ର ଚକ୍ର ପରାଏ ନୟନ-
ବୁଲାଇ ଧାଇଁଲା ଖରେ ଦଶନ ଦଂଶନେ
ଧାଏଁ ଯଥା ରକ୍ତନେତ୍ର ବୁଭୁକ୍ଷୁ ହର୍ଯ୍ୟକ୍ଷ
ଦନ୍ତ କଡ଼ମଡ଼ି ଆଗେ ବୃଷଭେ ନିରେଖି
ମାରିବାକୁ ଉଦ୍ୟତ ହୁଅନ୍ତେ ସେ ଦୁରନ୍ତେ

ରେରେକାର ରବେ ବୀରକେଶ ଉଲ୍ଲସାଇ
ପଡିପ୍ରତି ବିର୍ସ୍ତନାରେ ଜ୍ଵଳୁଥିଲା ଛାତି
ତାପରେ ତାଡ଼ନା ଚାହିଁ ନ ପାରିଲି ସହି
ସହେ କି ପ୍ରଚଣ୍ଡା ସିଂହୀ ସିଂହୀ ପରାଭବ ?
ଲୀଳାଗତି କରେ ଖରେ ମୁଁ ସେ ଲୀଳାବତୀ
ପ୍ରବେଶି ତା ରଥେ ଶୂଳ ଉଛୁଡ଼ି ତା ହସ୍ତୁ
ମାଇଲି ସେ ଛୁରୀ ଦୈତ୍ୟହୃଦେ ଅତି କ୍ରୋଧେ
ଉତ୍ତାନେ ପଡ଼ିଲା ଖସି ରଥୁଁ ରକ୍ଷୋବୀର
ରକତ ଉଦ୍ଗାରି ରକ୍ତେ ଜର୍ଜରିତ ହୋଇ
ଘୋର ରବ କରି ପ୍ରାଣହାରି ଭୂମିତଳେ
ଝଡ଼େ ଯେହ୍ନେ ଗିରିଶୃଙ୍ଗ ଅର୍ଶନ ପତନେ
ପ୍ରକମ୍ପାଇ ଭୋରେ ଭୟଙ୍କର ନାଦେ;
ସୁସ୍ଥିରା ଉଜ୍ଜିଲା ସ୍ଥିରା ଜୀବକୂଳ ମେଳେ
ସାନନ୍ଦ ଅମରବୃନ୍ଦ ବୈରୀ ନାଶ ବର୍ଣ୍ଣୁଁ
ବାଜିଲା ଦୁନ୍ଦୁଭୀ ସ୍ୱର୍ଗେ ନାଚିଲେ ଅପ୍ସରା
ଗାଇଲେ ଗନ୍ଧର୍ବେ ସ୍ତୁତି ଗୀତି ପ୍ରୀତ ହୋଇ
ତହୁଁ ସେହି ଛୁରୀ ଧରି ରକ୍ଷଃ ସୈନ୍ୟେ ପଶି
ମାଇଲି ଅସଂଖ୍ୟ ରକ୍ଷଃ ଶଲଭ ସ୍ଥଳଭେ·
ରୂପ ଚାହିଁ ହୋଇ ମୋହି ରାକ୍ଷସ ନିକର
ନିରେଖନ୍ତେ ଜଳଜଳେ ଅସ୍ତ୍ର ଖସେ କରୁଁ
ଦୈତ୍ୟ ସୈନ୍ୟ ଛତ୍ରଭଙ୍ଗେ ପଳାନ୍ତେ ସଂଭ୍ରମେ
ଭ୍ରମି ଭ୍ରମି ଦେବବୃନ୍ଦ ମାରନ୍ତି ଆନନ୍ଦେ
ବରଷାରେ ରସାଜାତ ପତଙ୍ଗ ସଙ୍ଘାତ
ସଙ୍ଘାତ କରନ୍ତି ଯେହ୍ନେ ଶକୁନ୍ତ ପଙ୍କତି
ସୈନ୍ୟନାଶି ଅବଶେଷେ ପ୍ରବେଶି ମୋ ପାଶେ
ଶିରେ କଲେ ପୁଷ୍ପବୃଷ୍ଟି ଜୟ ଜୟ ନାଦେ
ସେହି ଦିନୁ ଛୁରୀ ଗୋଟି ରଖିଥିଲି ପାଖେ
ଦେଇଛିଁ ଯା ଯତ୍ନେ ରଖିଥିବୁ ବତ୍ସ ! ତୁହିଁ

ଶୁଣିଲୁ ଛୁରୀର କଥା ଯାଅ ଏବେ ବତ୍ସ !
ମଙ୍ଗଳ ବାଝଇଁ ଫେରି ଆସ ସୁମଙ୍ଗଳେ
ଦେବୀ ପଦେ ଭକ୍ତି ବଶେ ପ୍ରଣମି ରୋଚିସ
ଗମିଲେ ଆକାଶ ଦେଶେ ମନୋଯାନେ ବସି
କିଛି ଦୂର ଯାନ୍ତେ ମନେ ପଡ଼ନ୍ତେ କଥାଏ
ଫେରିଲେ ପୁରାଭିମୁଖେ ଦେବୀଙ୍କ ସମ୍ମୁଖେ
ବିନୟେ କହିଲେ ମାତଃ କୃପା ହେଲେ ତବ
ସ୍ୱର୍ଗପୁର ଯାଏ ଯାନ୍ତି ଆଜ୍ଞାହେଉ ମୋତେ
ମହେନ୍ଦ୍ରେ ଜଣାନ୍ତି ଜରାସନ୍ଧ ହିଂସାକର୍ମ
ତାର ସେହି ଧର୍ମଦେଖି ପୋଡୁଛି ହୃଦୟ
ଶୁଣି ଆଦେଶିଲେ ଯାଅ ଇଚ୍ଛୁ ଯେବେ ବତ୍ସ !
ମାତ୍ର ବୃତ୍ରହାରେ ତାହା ନୋହିବ ସଫଳ
ଉପାୟ କେବଳ ତାଙ୍କ ହେବ ଫଳବାନ
ଜନ୍ମିଛନ୍ତି ଧରାଭାର ହରଣ ସକାଶେ
ଯଦୁବଂଶେ ନରଅଂଶେ ପ୍ରଭୁ ହୃଷୀକେଶ
ପାଣ୍ଡବ ସହିତେ ସେହି ଆସିବେ ଅଚିରେ
ବଧିବେ ଏ ଜରାସନ୍ଧେ ଥାଅ ହେତୁ କରି
ଶୁଣି ହରଷିତ ହୋଇ ସେ କର୍ଣ୍ଣିକାସୁତ
ସତ୍ୱର ଗମିଲେ ପୁଣି ସ୍ୱଗନ୍ତବ୍ୟ ପଥେ
ସୁଜନ ମନ ମଜାଇ ଥାଏ ଯେଉଁଜନ
ଗୁରୁକାର୍ଯ୍ୟ ଉଚ୍ଚକରେ ନିଜ ମନୋମତେ

ଇତିଶ୍ରୀ ଜରାସନ୍ଧବଧ କାବ୍ୟେ ଯବାଘୃଷ୍ଟବଧ ବର୍ଣ୍ଣନେ
ନାମ ସପ୍ତମଃ ସର୍ଗଃ ।

—

# ଅଷ୍ଟମ ସର୍ଗ

ଏଥୁଅନ୍ତେ ସୁରପଥେ ଗମନ୍ତି ରୋଚିସ
ମଣି ଛୁରୀ ସଙ୍ଗେଧରି କମଣ୍ଡଳୁ ହସ୍ତେ
ମନୋଯାନ ଆରୋହଣ କରି ଖରତରେ
ଦକ୍ଷିଣାଭିମୁଖେ ସୁଖେ ନିର୍ଭୟ ମାନସେ;
କେତେଦୂରେ ଦେଖିଲେ ସେ ନବୀନନୀରଦ
ହୋଇଛି ଯେ ସୌଦାମିନୀ ଦାମେ ବିମଣ୍ଡିତ
ଶକ୍ରଚାପେ ଶୋଭେ ପୁଣି ଯା ଲଳିତମୂର୍ତ୍ତି
ଚାହିଁ ବିସ୍ମୟ ବିହ୍ୱଳେ କ୍ଷଣେ ହେଲେ ସ୍ଥିର
ମାତ୍ର ବିଷ୍ଣୁ ନୋହୁଁ ବିଷ୍ଣୁ ରୂପ ଶୋଭା ବହୁଁ
ସେ ପ୍ରେମେ ପ୍ରଣମି ତାଙ୍କୁ ଚଳିଲେ ଅଗ୍ରତେ
ପୁନଶ୍ଚ ଦେଖନ୍ତି ଊର୍ଦ୍ଧ୍ୱେ ବିଶ୍ୱ ବେନି ନେତ୍ର
ସନ୍ନିଭ ସୁପ୍ରଭାମୟ ରବିଶଶୀଦ୍ୱୟ
ଗ୍ରହ ନକ୍ଷତ୍ର ତାରକା ଅଗଣ୍ୟ ଅସଂଖ୍ୟ
ଜ୍ୟୋତିଷ୍ମନ୍ତ ବର୍ଷ୍ମବନ୍ତ ଏକୁଁ ଏକ ଜିଣା
ଦିବବାସୀ ଜାଣି ତାଙ୍କୁ ବନ୍ଦି ଭକ୍ତିଭରେ
ମୁଖ ଫେରାଇ ଚାହିଁଲେ ତହୁଁ ପଛକତି
ଦେଖିଲେ ଅପୂର୍ବ ଋକ୍ଷ ଉଦୀଚୀ ଆକାଶେ
ଧ୍ରୁବ ଧ୍ରୁବଭାବେ ସ୍ଥିତ ମହାମହୋଜ୍ଜ୍ୱଳେ
ଉତ୍ତରାଶା-ସୀମନ୍ତିନୀ ସୀମନ୍ତ ଉତ୍ତଂସ
ସପ୍ତର୍ଷିମଣ୍ଡଳ ଯାକୁ ପରିକ୍ରମା କରେ
ମେରୁସ୍ତମ୍ଭେ ଭ୍ରମେ ଯଥା ବଳିବର୍ଦ୍ଦକୁଳ
ନମି ସେମାନଙ୍କୁ ପୁଣି ନିମ୍ନେ ଦେଲେ ଦୃଷ୍ଟି
ଦେଖନ୍ତି ସେ ନିମ୍ନେ ବହୁ ହ୍ରଦନଦନଦୀ
ବନ ଉପବନ ଗିରି ନିର୍ଝର ସାଗର
ଜନପଦ ଆଦି ବୃହତ୍ତମେ କ୍ଷୁଦ୍ରତମ;

ତଦନ୍ତରେ ଅଗ୍ରେ ଗମ୍ଯି କେତେହେଁକ ଦୂରେ
ନିରେଖିଲେ ଋଷିନାଥ ଅଗସ୍ତ୍ୟେ ସେ ପଥେ
ଆତାପି ବାତାପି ଦୈତ୍ୟେ ଅସୁନିସୂଦନ
ସପ୍ତସିନ୍ଧୁ ଗଣ୍ଡୂଷ ଯେ କରିଥିଲେ ପୂର୍ବେ
ମନ୍ଦାକ୍ଷ ମନ୍ଦର ଗିରି ଗର୍ବଖର୍ବକାରୀ
ଜଳ ଆବିଳତା ନାଶେ ଯେବା ଭାଦ୍ରପଦେ
ଦକ୍ଷିଣାଶା ଯୋଷା ଶିରୋଭୂଷା ରତ୍ନରୂପୀ;
ନମି ତାଙ୍କ ପଦ ପୁଣି ଗମିଲେ ଅଗ୍ରତେ
କେତେ ଦୂର ଯାନ୍ତେ ଶବଭୂଜ କାଞ୍ଚି ମଧ୍ୟା
କପାଳମାଳିନୀ କାଳୀଦେବୀଙ୍କୁ ଦେଖିଲେ
ଦଳିତ କଜ୍ଜଳିକାନ୍ତି ଯେବା ଚତୁର୍ଭୁଜା
ସ୍ରସ୍ତକଚଚୟ ଚୁମ୍ବେ ଯା ଚାରୁଚରଣେ
ହେଲେହେଁ ଅଦୃଷ୍ଟପୂର୍ବା ଦୃଷ୍ଟପୂର୍ବା ପରି
ଭକ୍ତିରେ ନମିଲେ ପଦେ ମନଃ ପ୍ରାଣ ଢାଳି
ତେଣୁ ଦେବୀ ସୁପ୍ରସନ୍ନେ ଭାଷିଲେ ଏ ଭାଷା
ସେ ମୁଁ ବତ୍ସ ! ଏହି ଦିଶେ ନିବସଇଁ ସଦା
ଗାତ୍ରଭିନ୍ନ ମାତ୍ର ଆତ୍ମା ନୁହଇରେ ଭିନ୍ନ
ତୋର ସଂଜୀବନୀପୁର ଯିବା ମୋତେ ଜଣା
ଯାଅବତ୍ସ ! ନିରାପଦେ କରୁଛି କଲ୍ୟାଣ
ଘେନ ଏ ଅଞ୍ଜନ ନେତ୍ରେ କରରେ ରଞ୍ଜନ
ଦିବ୍ୟଦୃଷ୍ଟି ବଢ଼ିବୁ ନୋହିବୁ ବୁଦ୍ଧିବଣା
ମହେଶ ବିଭୂତି ପୁଣ ଘେନ ଭାଲେ ବତ୍ସ !
ଜଗତମୋହିବୁ କାର ନୋହିବୁ ଅପ୍ରିୟ
ଏତେ କହି ନେତ୍ରେ ଭାଲେ ଅଞ୍ଜନ ବିଭୂତି
ଆଣି ରଞ୍ଜିଦେଲେ ଦେବୀ ସ୍ୱକରେ ତାଙ୍କରି
ଯଥା ମାତା ସ୍ୱପୁତ୍ରର ବିପଦ ବାରଣେ
ଭଞ୍ଜେ ଭାଲେ ଗୋମୟ ତିଳକ ନେତ୍ରେ କଳା;
ପୁଣି ଭର୍ଜ୍ଜପତ୍ରପୁଟେ ବିଭୂତି ଅଞ୍ଜନ

ରକ୍ଷିଚାଟ କରେ କିଛି ଦେଲେ ସ୍ନେହଭରେ
ତହୁଁ ପୁନଃ ଦେବୀପଦେ ସଭକ୍ତିରେ ନମି
ଦକ୍ଷିଣ ଦିଗେ ସ୍ୱବ୍ୟଗ୍ରେ ଚଳିଲେ ରୋଚିସ;
ଯାଉଁ ଯାଉଁ କେତେ ଦୂରେ ଘୋର ଅନ୍ଧକାର
ନିବିଡ୍ରୁ ନିବିଡ଼ ଛାର ଦଳିତ-କଜ୍ଜ୍ୱଳ
ଦେଖନ୍ତି ରୋଚିସ ପଥ ନ ଦିଶଇ ଆଉ
ନାହିଁ ଚନ୍ଦ୍ର ସୂର୍ଯ୍ୟ ତହିଁ ଘୋର ବାତ୍ୟାନାଦ
ଗଣିଲେ ପ୍ରମାଦ, ମଣି ମଣ୍ଡିଲେ ହୃଦୟେ
ତାରରେ ଜୟନ୍ତକ ତମୋହାରୀ ଯେବା
ଦକ୍ଷହସ୍ତେ ପୁଣି ଯବାନ୍ତକ ଛୁରୀ ଧରି
ବାମେ କମଣ୍ଡଳୁ ବହି ପ୍ଲୁଗିଲେ ସେ କ୍ଷଣେ;
ଦିଶିଲା ସୁଡ଼ଙ୍ଗ ପଥ ନୁହେ କଥ୍ୟ ଯେବା
ଦୈର୍ଘ୍ୟ ପ୍ରସ୍ଥ ଉଚ୍ଚତାର ନାହିଁ ପରିସୀମା
ତହୁଁ ଚଳିଲେ ସେ ମାର୍ଗେ କରି ବ୍ୟଗ୍ରଗତି
ଅଗ୍ରେ ଧାଏଁ ଆଲୋକ ପଶ୍ଚାତେ ଅନ୍ଧକାର
ଦିବା ଯାମିନୀ ବେନିହେଁ ଚଳନ୍ତି ବା ସଙ୍ଗେ
କେତେହେଁ ଦୂରେ ଦେଖନ୍ତି ଅପରୂପ ନଦୀ
ଭୀଷଣ ପ୍ରବାହରାଶି-ମଣ୍ଡିତ ବିଗ୍ରହା
ବହ୍ନିନିଭ ବୀଚିଚୟ ବିକ୍ଷିପ୍ତ ଯା ବକ୍ଷେ
ବିଷଦୃଶ ଧୂମସ୍ତୋମ ଉଗାରି ସତତ
ଉଚ୍ଛ୍ୱସେ ସମଳଜଳ ଉର୍ଦ୍ଧ୍ୱେ ଭୀମନାଦେ
ବିସୃଜଇ ଫେନପୁଞ୍ଜ ଖଣ୍ଡଶୈଳ ସମେ
ବିହରନ୍ତି ତହିଁ ଗ୍ରାହ ଆଦି ଜଳଚରେ
ଘୋର ଭୟଙ୍କର ରୂପୀ ଘୋର ଦୁଃଖଦାୟୀ
ବଦନ ବ୍ୟାଦାନେ ଲମ୍ଫଝମ୍ପ ଗତି ବିହି;
ଅଶରୀରୀ ଜୀବଚୟ ଧାବନ୍ତି ତହିଁକି
ଅଗ୍ନିକି ପତଙ୍ଗ ସମେ ଉତ୍କଳିକାକୁଳେ
ତରତରେ ତରିବାକୁ, ଯାଇ ଯମରାଜ୍ୟେ

ଭୋଗ କରିବାର ଲାଗି ନିଜ ଭାଗ୍ୟଫଳ
ନାମ ବୈତରଣୀ ପାପୀ ସନ୍ତାପକାରିଣୀ
ଧାର୍ମିକ କ୍ଷେମଦା ପ୍ରାଣୀ କର୍ମଶାଣରୂପା;
ଶବାକୃତି ତରୀରହେ ତାର ତୀର ଦେଶେ
ପୁଚ୍ଛ ଧରି ଅଶରୀରୀ ପଶେ ନଦୀ ଗର୍ଭେ
ରହିଛି ଆଶ୍ଚର୍ଯ୍ୟ ତହିଁ ପାପୀ ଥିଲେ ପ୍ରାଣୀ
ହସ୍ତ ପିଚ୍ଛିଳଇ ପୁଚ୍ଛ ଧରନ୍ତେ ତକ୍ଷଣେ
ପ୍ରୟାସ କରି ସେ ପାପୀ ହୁଅଇ ନିରାଶ
ନ ହୁଅଇ ମୁଷ୍ଟିବଦ୍ଧ ପାରଦ ଯେସନ;
ଧାର୍ମିକ ଥିଲେ ସେ ସୁଖେ ତରେ ପୁଚ୍ଛ ଧରି
ତରୀରେ ଆରୋହି ବହି, ସ୍ୱଚ୍ଛନ୍ଦ ମାନସ,
ଦେଖି ଏ ଅଦ୍ଭୁତ କାଣ୍ଡ କର୍ଣ୍ଣିକା ତନୟ
ଊର୍ଦ୍ଧ୍ୱଗତି କରି ନଦୀ ପାରି ହେଲେ ଖରେ
ଦିଶିଲା ବିରାଟପୁର ପରିଖାରେ ଘଞ୍ଚେ
ନାନା ବର୍ଣ୍ଣେ ଅପରୂପ ସଞ୍ଚେ ସୁଘଟନ
ପ୍ରକାଣ୍ଡ ତୋରଣ ବହିର୍ଗୃହ ଅଗ୍ରଦେଶେ
ସ୍ୱର୍ଣ୍ଣ ରତ୍ନେ ବିଜଡ଼ିତ କାରୁକାର୍ଯ୍ୟେ ଗଢ଼ା
ବିଭାସଇ କ୍ଷଣେ କ୍ଷଣେ କ୍ଷଣପ୍ରଭା ସମେ
ଓହ୍ଲାଇଲେ ଊର୍ଦ୍ଧ୍ୱ ନିମ୍ନେ ତେଣୁ ସେ ରୋଚିସ,
ଦେଖି ତାକୁ ଯମଦ୍ୱାସ୍ଥଚୟ କଲେ ଭୟ
ଗୋଶୀର୍ଷ ସଦୃଶ ଶୀର୍ଷେ ଶୃଙ୍ଗ କର୍ଣ୍ଣ ଯାର
ଦ୍ୱାର ଛାଡ଼ୁଁ ଭିତରେ ପଶିଲେ ଋଷିସୁତ
ଦେଖନ୍ତି ଯମରାଜାଙ୍କୁ ତହିଁ ଏହି ଭାବେ
ବସିଛନ୍ତି ହୈମସିଂହାସନ ପୃଷ୍ଠପଟେ
ଶୋଭେ କାଳଦଣ୍ଡ କାଳପାଶ ବେନିକରେ
ଦଳିତ କଜ୍ଜ୍ୱଳକାନ୍ତି ଦକ୍ଷପଦେ ଗୋଦ
କାଳ ବିକାଳ ବସନ୍ତି ତାଙ୍କ ବେନିପାର୍ଶ୍ୱେ
ଅଗ୍ରେ ଚିତ୍ରଗୁପ୍ତ ରହେ ପଞ୍ଜିକା ଆଦରି

ଆନ ଆନ ପାରିଷଦ ବସନ୍ତି ଅନ୍ତିକେ
ଧ୍ୱଜ ଛତ୍ର ଚାମର ଆଲଟ ଭୃତ୍ୟେ ଧରି
ଉଭା ହୋଇ ନିଜ କାର୍ଯ୍ୟ କରନ୍ତି ନିର୍ବାହ
ଦୂରୁ ନିରେଖି ରୋଚିସେ ଭାବନ୍ତି ଶମନ
ମନେ ମନେ ଏସନ ଭାବେ ସେ ସିଂହାସନେ
ଆସୁଛନ୍ତି କିବା ହର ହୋଇ କୋପଭର
ମାର୍କଣ୍ଡେୟ ପକ୍ଷଧରି ରକ୍ଷାକରି ତାକୁ
ମୋ ବିପକ୍ଷ ଥିଲେ ଯେଣୁ ବିରୂପାକ୍ଷ ପୂର୍ବେ
ମାତ୍ର ନାହିଁତ ବୃଷଭ ନୁହନ୍ତି ବୃଷପ;
ଆସୁଛନ୍ତି ବିରଞ୍ଚି ବା ଗୁରୁକାର୍ଯ୍ୟ ଯୋଗେ
ମାତ୍ର ହଂସବାହନ ତ ତାଙ୍କ ସଙ୍ଗେ ନାହିଁ
ନୁହଁନ୍ତି ସେ ବ୍ରହ୍ମା, ଅବା ପିତା ଗ୍ରହରାଜ
ତେଜୋବନ୍ତ ସୂର୍ଯ୍ୟଦେବ ଆସନ୍ତି କି ଅବା
ମାତ୍ର ଏକଚକ୍ରରଥ ନାହିଁ ତାଙ୍କ ସାଥୁ
ନୁହନ୍ତି ସେ, ଅବା ଆସୁଅଛନ୍ତି ବଶିଷ୍ଠ
ମାତ୍ର ସେତ ମର୍ତ୍ତ୍ୟପୁରେ ଯାଇଛନ୍ତି ଏବେ
ଆସିବେ କିମର୍ଥେ ଏଥେ ନୁହନ୍ତି ସେ ଋଷି,
ଏରୂପେ ଭାବନା କରୁ ପ୍ରବେଶ ସମ୍ମୁଖେ
ଦେବତେଜେ ବ୍ରହ୍ମତେଜେ ତେଜସ୍ୱୀ ରୋଚିସ
ପ୍ରଣମ୍ୟଁ ଯମରାଜଙ୍କୁ ତାଙ୍କ ତେଜ ଦେଖି
ନିଜ ପାଶେ ବସାଇଲେ ଆସନ ସମର୍ପି
ଜୟନ୍ତକମଣି ପୁଣି ଯବାନ୍ତକ ଛୁରୀ
ଚାହିଁ ଚକିତ ମାନସ ହେଲେ ସେ କୃତାନ୍ତ
ପୁଚ୍ଛନ୍ତେ ସ୍ୱାଗତବାର୍ତ୍ତା ପରିଚୟ ସହ
କହନ୍ତି ରୋଚିସ ତାଙ୍କୁ ଆହେ ଧର୍ମରାଜ !
ଜଗଦେକ ନ୍ୟାୟକର୍ତ୍ତା ଶୁଣନ୍ତୁ ମୋ ବାକ୍ୟ
ମୁଁ ସେ ରୋଚିସ ବ୍ରହ୍ମର୍ଷି କର୍ଣ୍ଣିକା କୁମାର
ମହା ଭଇରବୀ ଦେବୀ ଅନୁଗତ ଦାସ

ବସନ୍ତି ସେ ମର୍ତ୍ତ୍ୟେ ଜରାସନ୍ଧନୃପଦେଶେ
ତାଙ୍କରି ଆଦେଶେ ଏଥେ ଆସିଅଛିଁ ମୁହିଁ
ମେଷ ମହିଷ ମନୁଷ୍ୟ ଛାଗ ଆଦି କରି
ବହୁ ଜୀବ ହତ୍ୟାବଶେ ସେବି ଭଇରବୀ
ଜୀବଶୂନ୍ୟା କରିଲାଣି ସେ ମର୍ତ୍ତ୍ୟଧରଣୀ
ଶକ୍ତି ଶାକ୍ତଶିରୋମଣି ପାପୀ ଜରାସନ୍ଧ
ସେହି ବନ୍ଦିଦାତା ଭୋକ୍ତା ମହା ଭଇଁରବୀ
ଦୋଷୀ କେ ସେ କର୍ମ ପାଞ୍ଜୀ ଦେଖିବା ସକାଶେ
ପୁଣି ରକ୍ତବୀର୍ଯ୍ୟ ଆଦି ଦୁର୍ମଦ ଦାନବେ
ନାଶି ଅସ୍ର ମାଂସ ଭକ୍ଷିଛନ୍ତି ପୂର୍ବେ ଦେବୀ
ଦୋଷୀ କି ନୁହନ୍ତି ତାହା ଦେଖିବାର ଲାଗି
ଆସିଅଛିଁ, କୃପାବହି ଅବଧାନ କର,
ଶୁଣି ଚିତ୍ରଗୁପ୍ତେ ଆଦେଶିଲେ ପ୍ରେତପତି
ଦେଖାଅ ପଞ୍ଜିକା, ମନ୍ତ୍ରୀ ! ମହର୍ଷିକୁମାରେ
ମନୋମତ ମତେ ତାଙ୍କ ସଂଶୟ ବିନାଶି
ଅସହ୍ୟ ତେଜସ୍ୱୀ ଦେବୀବଳେ ବଳୀୟାନ
ଉଲ୍ଲାସ ମାନସ ତାଙ୍କ ନ ରୁଷନ୍ତୁ ଋଷି,
ତଦ୍ଭାବେ ତରତରେ ଲଙ୍ଘି ହୈମଦ୍ୱାର
ପଞ୍ଜିକା ରକ୍ଷିତ ରହେ ପ୍ରବେଶିଲେ ଦୁହେଁ
ଚାହାନ୍ତି, ଅନନ୍ତଭାବେ ରାଜେ ଗୃହଶ୍ରେଣୀ
ଶ୍ରେଣୀ ଭାବେ ସଂରକ୍ଷିତ ସୁପଞ୍ଜିକାପୁଞ୍ଜ
ଚିତ୍ର ତହିଁ ଏହା ଲେଖାହୁଏ ଯେଉଁ ବର୍ଣ୍ଣେ
ଏକବର୍ଣ୍ଣୁ ସ୍ଥୂରେ ଶତ ଶତ କୃତକର୍ମ
ମାନସୁଁ ସ୍ଫୁରଇ ଯଥା ଶତ ଶତ ସ୍ପୃହା
ତେଣୁ ସ୍ୱତଃ ବ୍ୟକ୍ତ ବର୍ଣ୍ଣବ୍ରାତୁଁ ପ୍ରାଣିକର୍ମ
ଜନମ ମରଣ ଇହ ପର ପ୍ରଭୃତିର
ଆଦର୍ଶ ଦର୍ଶନେ ଯେହ୍ନେ ଅଙ୍ଗାଦିର ଦୃଶ୍ୟ
ହେଜି ଖୋଜି ଦେବୀନାମ ପଞ୍ଜିକା ଫିଟାଇ

ପାପ ପୁଣ୍ୟ ବେନିପଟେ ଦୃଷ୍ଟି ନିବେଶିଲେ
ନାହିଁ କାହିଁ ଦେବୀଦୋଷ ପାପ ପାର୍ଶ୍ୱେ ଶୂନ୍ୟ
ମାତ୍ରକ ରହିଛି ପୁଣ୍ୟ ପାର୍ଶ୍ୱେ ପୁଣ୍ୟରାଶି
ତହୁଁ ଜରାସନ୍ଧନାମ ପଞ୍ଜିକା ଫିଟାଇ
ଦୃଷ୍ଟି ନିବେଶିଲେ ପାପ ପୁଣ୍ୟ ବେନିପଟେ
ଦେଖିଲେ ଯେତେକ ବଳି ନାଶିଛି ସେ ବଳୀ
ତୁଳ ସର୍ବ ପାପପଟେ ସଙ୍କଳିତ ହୋଇ
ଚାହିଁ ଚିତ୍ରମଣି ଚିତ୍ରଗୁପ୍ତେ ଯୋଗିମଣି
ପୁଚ୍ଛିବା ଇଚ୍ଛିଲେ ତହୁଁ ଭାବି ଏହିଭାବେ
ବଳି-ଭୋକ୍ତା ଦାତା ଦୁହେଁ ଶାସ୍ତ୍ରେ ସମଦୋଷୀ
କିପାଁ ଦେବୀ ନୋହିଲେ ସେ ଦୋଷେ ଅଭିଯୁକ୍ତା
ପୁଣି କରିଛନ୍ତି ପୂର୍ବେ ବହୁ ପୂର୍ବଦେବ
ହତ ସେ ପାତକରାଶି ନ ସ୍ପର୍ଶିଲା କିପାଁ
ଉଚିତ ଉକ୍ତିରେ ଚିତ୍ତ କରି ମୋର ଶାନ୍ତି
କହ ମନ୍ତ୍ରିବର ! ଦୂର ହେଉ ମୋ ସନ୍ଦେହ
ଜ୍ଞାନେ ଯଥା ଦୂର ହୁଏ ହୃଦୟ ଅଜ୍ଞାନ;
ଭାଷନ୍ତି ସେ ଚିତ୍ରଗୁପ୍ତ ମଧୁମିଶା ଭାଷେ
ଶ୍ରବଣ ନିବେଶି ଶୁଣ ଆହେ ଋଷିରାଣ !
ଦେଖ ଯେ ଭଙ୍ଗୁର ଭବେ ଜୀବ ଆତଯାତ
ସମସ୍ତର ମୂଳାଧାର କର୍ମମାତ୍ର ଜାଣ
କର୍ମବଳେ ପ୍ରାଣୀ ଦେହ ବସି ପାପପୁଣ୍ୟ
ଭୋଗ କରେ ଏହି ତାର ପ୍ରାକୃତ ନିୟମ
ତେଣୁ ଏ ଜଗତ ଚିରନ୍ତନ କର୍ମମୟ
କର୍ମ ବିରହିତ ହେବା ସାଧ୍ୟ ନାହିଁ କାର
ଛାୟାକୁ ତେଜି ପାରଇ କେବେ କି ସେ କାୟା;
ସକାମେ ନିଷ୍କାମେ ପୁଣି କର୍ମ ବେନିଭାଗ
ଯେ ଯେଉଁ କରମ କରେ ଲଭେ ତାରଫଳ
ଦେଶଲାଗି ଦଶଲାଗି କଲେ ନୀଚକର୍ମ

ନୁହଇ ସେ ନୀଚ ଉଚ୍ଚଧର୍ମ ବୋଲି ଭାବ
ସତ୍ୟଧର୍ମ ନ୍ୟାୟ ପୁଣି ସ୍ୱବଂଶ ସ୍ୱଦେଶ
ରକ୍ଷଣେ ପରାଣ ଦେବା ଅଟେ ଶ୍ରେଷ୍ଠଧର୍ମ;
ଦାତାଗ୍ରହୀତା ଉଭୟେ ସକାଶେ ରହିଲେ
ସମଦୋଷୀ ଭାବେ କର୍ମଫଳ ଭୁଞ୍ଜିଥାନ୍ତି
ମାତ୍ର ଯେ ସକାଶେ ଥାଏ ସେହି ଏକମାତ୍ର
ନିଜକୃତ କର୍ମଫଳ ଭୁଞ୍ଜିଥାଏ ଲୋକେ;
ସକାମେ ଦେଇଛି ବଳି ବଳୀ ଜରାସନ୍ଧ
ନିଷ୍କାମ ଭାବେ ସେ ବଳି ଭକ୍ଷିଛନ୍ତି ଦେବୀ
ତେଣୁ ଦୋଷୀ ନୁହନ୍ତି ସେ ମହାଭଇରବୀ
ଦୋଷୀ ମାତ୍ର ଜରାସନ୍ଧ ସକାମ ସକାଶେ
ସେ ଯୋଗୁଁ ନିଷ୍କାମ କର୍ମ ଶ୍ରେଷ୍ଠଧର୍ମ ଜାଣ
ଶୃପିଷ୍ଟପେ ଆପଣ ତ ଦର୍ପଣ ତହିଁର;
ଦାନବଙ୍କ ଉପଦ୍ରବେ ବହୁ ପ୍ରାଣୀ ନଷ୍ଟ
ସୁରନର ଜପୀ ତପୀ ଯୋଗ ଯଜ୍ଞ ସହ
ହୋଇବାରୁ ସୃଷ୍ଟିରକ୍ଷା ଲାଗି ଭଗବତୀ
ଚଣ୍ଡରୂପ ବହି, ଦଣ୍ଡଦେଇ ସେହି ଦୁଷ୍ଟେ
ଧରାଭାର ଖଣ୍ଡିଥିଲେ ରକ୍ତମାଂସ ଭକ୍ଷି
ପର ଉପକାର ସର୍ଜି ନିଜ ସ୍ୱାର୍ଥ ବର୍ଜି;
ତେଣୁ ପୁଣ୍ୟ ଭାଗେ ସଞ୍ଚା ଦେବୀ ପୁଣ୍ୟରାଶି
କି ସଂଶୟ ଅଛି ଏଥେ ଭାବ ଋଷିମଣି !
ଦେଖିବାକୁ ଇଚ୍ଛା ଯେବେ ପାପ କର୍ମଫଳ
କି ରୂପେ ଭୋଗନ୍ତି ପ୍ରାଣୀ ଦେଖି ଯିବା ଚାଲ
ରହିଛି ଏଦେଶେ ଏକବିଂଶତି ନରକ
ବିକୃତ ବିଭତ୍ସ ପୁଣି ଘୋର ଭୟଙ୍କର
କର୍ମମତେ କର୍ମୀ ତହିଁ ରହି ଦୁଃଖ ଭୁଞ୍ଜେ
ଇହ ପର ବେନି ଲୋକେ ଦେହାଦେହ ବହି
ପ୍ରାଣୀ ଯେ ଭୁଞ୍ଜନ୍ତି ସୁଖଦୁଃଖ କର୍ମାକର୍ମେ

ତହିଁ ପାଇଁ ଧର୍ମାଧର୍ମ ବିଚାର ଆସ୍ତର
ଅଗୋଚରେ ଆସ୍ତଚରେ ପୀଡ଼ନ୍ତି ପାପିକି
ଆଧି ବ୍ୟାଧି ଜରା ମୃତ୍ୟୁ କ୍ରୂର ରିପୁ ରୂପେ
ବଳାତ୍କାରେ କର୍ମଫଳ ଭୁଞ୍ଜାନ୍ତି କର୍ମିକି
ନିସ୍ତରେ ଆତ୍ମଙ୍କ ମାତ୍ର ନିଷ୍କାମ ସକାଶୁ
ଶୁଣି ସେ ରୋଚିସ ଋଷି କରୁଁ ଅଙ୍ଗୀକାର
ଚଳିଲେ ଏକତ୍ରେ ସେହି ସ୍ଥାନୁ ବେନିଜଣ
ଦେଖିଲେ କେତେହେଁ ଦୂରେ ଷଡ଼ଦୂତପତି
ଫେରିଛନ୍ତି କ୍ଷଣିକ ସକାଶେ ମର୍ତ୍ତ୍ୟପୁରୁ
କାମରୂପୀ କାମଗତି ଅଟନ୍ତି ସେ ଯେଣୁ
ସହରେ ଅନୁଚର ଚୟ ସଙ୍ଗେ ଘେନି
ବ୍ୟାଧ ସାଥ ରହେ ଯଥା ଶ୍ୱାନ ଶ୍ୟେନ ଯୂଥ
କାମିନୀ କୁଳର ସଂଖ୍ୟା ତହିଁ ଅଧିକାଂଶ
ଏକ ଏକ କରି ତାଙ୍କୁ ଅଙ୍ଗୁଳି ନିର୍ଦ୍ଦେଶି
ଚିହ୍ନାଇଲେ ଚିତ୍ରଗୁପ୍ତ ଋଷିପ୍ରସୂତିଙ୍କୁ
ଦେଖ ଅଗ୍ରେ ଏ ସେ କାମ ମାନସ ସଂଭୂତ
କରେ ବାମଲୋଚନାର ପଦାଶ୍ରୟ ସଦା
ଶୋଭେ ମାଙ୍ଗଭାଙ୍ଗ ଉତ୍ତମାଙ୍ଗେ ହେ ଏହାର
ଉରେ ପୁଷ୍ପହାର ଅଙ୍ଗେ ରଙ୍ଗ ବାସ ଭୂଷା ।
ମୁକୁର ଚିକୁରକୋରା ବେନି, ବେନିହସ୍ତେ
ମହାବଳବନ୍ତ ପୁଣି ମହାଦୁର୍ନିର୍ବାର;
ଆଳସ୍ୟ ବିଳାସ ଲାସ୍ୟ ହାସ୍ୟ ଭାବ ହାବ
ନିଶା ପଶା ରଙ୍ଗ ରସ ଗୀତ ବାଦ୍ୟ ଆଦି
ବହୁ ସହରେ ଏହା ଗୋଚରେ ସର୍ବଦା
ଆଜ୍ଞା ମତେ କାର୍ଯ୍ୟ କରୁଥାନ୍ତି ତତପରେ;

* * * *

ଦୀନତା ହୀନତା ଗ୍ଲାନି ଅବଜ୍ଞା ବୈରତା
ଅଶୌଚାଦି ଅନୁଚର ଚୟ ରଖେ ପାଖେ;

ଦେଖ ଏସେ ତମ ସଦାଦଂଶେ ଓଷ୍ଠପୃଷ୍ଠ
ଭ୍ରୂକୁଟି କୁଟିଳନେତ୍ରେ ବହେ ଅଗ୍ନିକଣା
ଖରଶ୍ୱାସ ଖଡ୍ଗହସ୍ତ ବିକୃତମସ୍ତିଷ୍କ
ହୁଂକାର ଶବ୍ଦଗର୍ଭ ପୁଣି ଭୟଙ୍କର
କଳହ ବିବାଦ ହିଂସା ହତ୍ୟା କର୍କଶତା
ଆକ୍ରୋଶାଦି ସହଚର ବ୍ୟୂହ ଏକାସହ;
ଆପଦ ଅଶାନ୍ତି ଦାହ ଅଜ୍ଞାନ ମତ୍ତତା
ଆଦି ଅନୁଚରଚୟ ରଖଇ ଗୋଚରେ
ଏସେ ଦେଖ ଲୋଭ ରସନାରୁ ବହେ ରସ
ଅସ୍ଥିରହୃଦୟ ନାନା କାମନା ଆଶ୍ରୟୀ
ତୃଷ୍ଣାରେ କାତରନିତ୍ୟ ଅନନ୍ତ ତା ଗର୍ଭ
ବ୍ରାହ୍ମଣ ଭକ୍ଷିଲେ ହେଲେ ତୃପ୍ତି ନାହିଁ ମନେ
ପୁନଃ ଆଉ ଭକ୍ଷିବାକୁ କରୁଥାଏ ମନ;
ଦୁଶ୍ଚିନ୍ତା ଅତୃପ୍ତି ମିଥ୍ୟା ଦସ୍ୟୁତା ବଞ୍ଚନା
ପେଟୁତା ଚାଟୁତା ଚୌର୍ଯ୍ୟ ଦ୍ୟୂତ ମଦିରାଦି
ସଙ୍ଗେ ସଙ୍ଗୀ ଅବିରତ କର୍ତ୍ତବ୍ୟ ସାଧନେ;
ଅଜୀର୍ଣ୍ଣ ବିସୂଚୀ ଶୂଳ ବାନ୍ତି ଅତିସାର
ଅସପକ୍ଷ ଅନାଦର ଲାଞ୍ଛନା ତାଡ଼ନା
ଅବିଶ୍ୱାସ ଅପଯଶ ଆଦି ଅନୁଚରେ
ରହନ୍ତି ଏହା ଗୋଚରେ କର୍ମକ୍ଷମ ଭାବେ;
ଏସେ ଦେଖ ମୋହ ସାରାସାର ଜ୍ଞାନହୀନ
ଅବିଚ୍ଛିନ୍ନ କର୍ମ କରୁଥାଏ ଇଚ୍ଛାମତେ
ଇତସ୍ତତଃ ଭାବେ ବାଳଧୂଳିଖେଳ ତୁଳ
ନିନ୍ଦା ପ୍ରଶଂସାର ପକ୍ଷେ ନାହିଁ ତାର ଦୃଷ୍ଟି
ଚକ୍ଷୁ ଥିଲେ ହେଲେ ଚକ୍ଷୁ ମୁଦିଥାଏ ସଦା
ତୈଳକାର ତିଳମର୍ଦ୍ଦୀ ବଳିବର୍ଦ୍ଦ ଯଥା
ସ୍ୱାର୍ଥେ ବିଜଡ଼ିତ ରହି ସବୁ ମୋର କହେ
ଅପ୍ରିୟବସ୍ତୁ ତା ପକ୍ଷେ ଜଗତେ କେ ନାହିଁ

ଥିବ ଏ ଶରୀର ଚିରଦିନ ଭାବେ ମନେ
ଭବିଷ୍ୟତ ଚିନ୍ତାଶୂନ୍ୟ ଧର୍ମକର୍ମବର୍ଜ୍ଜୀ;
ଅବିବେକ ଅସହାୟ ଉଚ୍ଛୃଙ୍ଖଳ-ପଣ
କ୍ରୂରତା ଆସକ୍ତି ଆଦି ଘେନେ ସହଚର,
ସନ୍ତାପ ବନ୍ଧନ ଶୋକ କ୍ଲେଶ ପରିତାପ
ଆଦି ଅନୁଚରବର୍ଗ ରଖେ ପାର୍ଶ୍ୱଦେଶେ;
ଦେଖ ଏସେ ମଦ-ଊର୍ଦ୍ଧ୍ୱଦୃଷ୍ଟି ସଦାକାଳେ
ମାନୋନ୍ନତ ମସ୍ତକ ତା ଗାତ୍ର ଅତିଗୁରୁ
ନିଜେ ହୁଏ ବଡ଼ ଅନ୍ୟେ ମଣେ ତୃଣ ସମ
ନ ଘେନେ କା କଥା ନିଜ ମନେ ଏକା ଚଳେ
ଚଳଇ କଥାକେ ପୁଣି ଡମ୍ଫ ନାଗ ଭଳି,
ଉଚ୍ଚାସନ ଖୋଜୁଥାଏ ବସିବାକୁ ନିଜେ;
ଅବିନୟ ସ୍ୱେଚ୍ଛାଚାର ଔଦ୍ଧତ୍ୟ ଗରିମା
ଅସୂୟା ଅକ୍ଷମା ଆଦି ସହଚର ତୁଲେ
ଅସମ୍ମାନ ତିରସ୍କାର ଦୁର୍ଗତି ଦୁର୍ନାମ
ବିରକ୍ତି ତାଚ୍ଛଲ୍ୟ ଆଦି ଘେନେ ଅନୁଚର;
ଦେଖ ସେ ମାତ୍ସର୍ଯ୍ୟ ଅତି ଆଶ୍ଚର୍ଯ୍ୟଜନକ
ପର ଶିରୀ ଦେଖି ପୋଡ଼େ ତାହାର ହୃଦୟ
ନିଜ ସୁଖ ସମ୍ପଦ ବଢ଼ନ୍ତା ସଦାକାଳେ
ଅନ୍ୟ ରହିଥାନ୍ତେ ଦୁଃଖୀ ଏଭାବ ତାହାର
ପର ଅର୍ଥ ନଷ୍ଟ କରେ ନିଜସ୍ୱାର୍ଥ ଅର୍ଥେ
ଅହରହ ଜଗି ରହିଥାଏ ସେ ସକାଶେ
ନିଜେ କରେ ଦୋଷ ଧରା ପଡ଼ିଲେ ରଭସେ
ଆନପରେ ଆରୋପଇ ପ୍ରତାରଣା ବଳେ
ରୁଷ୍ଟ ଭ୍ରଷ୍ଟ ହେଉଥାଏ କ୍ଷଣେ କ୍ଷଣେ ମନେ
ଆୟ ବ୍ୟୟର ଉପରେ ରଖିଣ ନିର୍ଭର
କର୍ମକାର ଷଣ୍ଢୁଆସି ଯେହ୍ନେ ଜଳେ ଜ୍ୱଳେ;
କୁମନ୍ତ୍ରଣା କପଟତା ଧୂର୍ତ୍ତପ ବିଦ୍ୱେଷ

ଅଧୈର୍ଯ୍ୟ ଅସହିଷ୍ଣୁତା ଦୁର୍ବିଚାର ଆଦି
ତାହାର ଏ ସହଚର ରହନ୍ତି ଗୋଚରେ;
ଖେଦ ତାପ ଅସାରତା ନିନ୍ଦା ଅନାଶ୍ରୟ
ବାଧା ବିଘ୍ନ ଆଦି ଅନୁଚର ଘେନେ ସଙ୍ଗେ;
ସେହି ଦେଖ ଏମାନଙ୍କ ପାଖେ ବେନିଦଳ
ଉର୍ମି ବ୍ୟସନ ଯା ନାମ ରହିଛନ୍ତି ଗର୍ବେ
ଏମାନଙ୍କ ମଧ୍ୟୁଁ କେତେ ବେନିଦଳେ ଭୁକ୍ତ
ପ୍ରଥମୋକ୍ତ ଦଳେ ଷଟ ଦ୍ୱିତୀୟେ ଅଠର
ନିବସନ୍ତି ନିଜ ସଖା ଅନୁଚର ଘେନି
ପ୍ରାଣୀ ପରାଣଶୋଷଣେ ବଡ଼ ସେ କର୍ମଠ
ଗରିଷ୍ଠ-ଶରୀର ପୁଣି ବଡ଼ ଦୁର୍ନିବାର;
ଏତେ ଭାଷୁଁ ବେନିଜଣ ତାଙ୍କରି ସମ୍ମୁଖେ
ହୁଅନ୍ତେ କମ୍ପିଲେ ତ୍ରାସେ ସର୍ବେ ଥରଥରେ
କମ୍ପେ ଯଥା ମୃଗଯୂଥ କେଶରୀ ଦର୍ଶନେ;
ନିରେଖି ରୋଚିସେ ପଦେ ପଡ଼ି କରଯୋଡ଼ି
ଭାଷିଲେ ହେ ଋଷିସୁତ ! ତବ ପାଶେ ହାରି
ପଳାଇଛୁଁ ପୂର୍ବେ କିପାଁ ବିନାଶ ସକାଶେ
ଆସିଅଛ ଛୁରୀ ବହି ପଳାନ୍ତକେ ନାଶି
କ୍ଷମ କ୍ଷମ ସହସ୍ର ବିନତି ତବ ପାଦେ
ଶୁଣି ଭାଷିଲେ ଏମଧୁଭାଷେ ଋଷି ହସି
ଅବୁଝ ପରାଏ ବୁଝ ନସୁଝ ମାନସେ
ନାଶିବାକୁ ଆସିନାହିଁ ଏଦେଶେ ତୁମ୍ଭଙ୍କୁ
ନ୍ୟାୟ ନୁହେ ମଧ୍ୟ ଜେତା ଜିତେ ନାଶିବାର
ମାତ୍ର କହୁଛିଁ ମୋ ଧର୍ମେ ଥିବ ଯେଉଁ ପ୍ରାଣୀ
ତା ପାଶେ ନ ଯିବ କେବେ ରଖିଥାଅ ମନେ;
ଏତେ କହି ଅଗ୍ରେ ଗମିଲେ ସେ ମନ୍ତ୍ରି ସଙ୍ଗେ
ଅଦୂରେ ଦିଶିଲା ଯହୁଁ ନିରୟ-ନିଳୟ
ତହୁଁ ଗନ୍ଧବାରନସ୍ୟ କଟିରୁ ଫିଟାଇ

ଗୁପ୍ତେ ଚିତ୍ରଗୁପ୍ତ ଯାହା ରଖିଥିଲେ ପୂର୍ବୁ
ଦେଲେ ରୋଚିସଙ୍କ ନାସେ ଦୁର୍ବାସ ବିନାଶେ
ପୁଣି ନିଢେ ଘ୍ରାଣି ପ୍ରବେଶିଲେ ବେନିଜଣ
ନିରୟକୁଣ୍ଡର ଅଗ୍ରବର୍ତ୍ତୀ ଦ୍ୱାରଦେଶେ
ଅହୋ କି ଭୀଷଣଦୃଶ୍ୟ ? ଅକ୍ଷିର ସମକ୍ଷେ
ଦେଖନ୍ତି ରୋଚିସ ଅତିବିକୃତ ବିଭତ୍ସ
ପୂତିଗନ୍ଧମୟ ଘୋରତପ୍ତ ଏକ କୁଣ୍ଡ
ରୁରୁ ତୁଣ୍ଡାକାର ଯାର ନାମ ରଉରବ;
ପଡ଼ିଛନ୍ତି ମହାପାପୀ ସଢୁଛି ଶରୀର
ଗଳିତ କୁଷ୍ଠର ସମ କଷ୍ଟ ସୀମା ନାହିଁ
ବଜ୍ରଚଞ୍ଚୁ କୀଟେ ପୁଣି କାଟନ୍ତି ତାହାଙ୍କୁ
ଘୋର ରବେ ପାପୀ ଛାଡ଼େ ପ୍ରାଣଛଡ଼ା ରଡ଼ି;
ଦେଖି ଦୁଃଖିତ ଚିରେ ସେ ରୋଚିସ ମନ୍ତ୍ରିଙ୍କୁ
ପୁଚ୍ଛିଲେ ଏ କୁଣ୍ଡେ କେଉଁ ତୁଚ୍ଛ କର୍ମକାରୀ
ପଡ଼ି ସଢ଼ନ୍ତି ଏ ଘୋର କଷ୍ଟେ କହ ସଖେ !
ଶୁଣି କହନ୍ତି ସେ ଚିତ୍ରଗୁପ୍ତ ଆପ୍ତ ବାକ୍ୟେ;
ଗୁରୁ ଗୋରୁ ଋଷିବିପ୍ର ନୃପ ପିତା ମାତା
ବାଳକ ଗୁର୍ବିଣୀ ଭ୍ରୂଣ ଆଦି ହତ୍ୟାକାରୀ
ଦେବବିଗ୍ରହ ଭଞ୍ଜକ ମନୁଷ୍ୟଘାତକ
ମତ୍ସ୍ୟଜୀବୀ ମାଂସବ୍ୟବସାୟୀ ଜୀବହନ୍ତା
ବଧାର୍ଥେ ଯେ ବୃଦ୍ଧଗୋରୁ ବିକଇ କିଣଇ
ଅକ୍ଷତଯୋନିକି ପୁଣି ପରରମଣୀ କି
ସ୍ୱକନ୍ୟାକୁ ବଳାତ୍କାରେ ହରେ ଯେ ଦୁର୍ମତି
ଗୁରୁବନ୍ଧୁ ପୁତ୍ରମିତ୍ର ବିପ୍ର ନୃପ ପତ୍ନୀ
ହରଇ ଯେ ଅବିଚାରେ ଧର୍ମାଧର୍ମ ବର୍ଜି
ଅଶୌଚା ଋତୁମତୀର ସହବାସକାରୀ
ପୁଣି ତାର କରସ୍ପର୍ଶ ନୀରଅନ୍ନ ସେବୀ
ସପ୍ତମ ଅଷ୍ଟମ ମାସେ ଗୁର୍ବିଣୀ ହାରକ

ଅବୈଧ ରୀତିରେ ରେତ ନିର୍ଗତ ଯେ କରେ
କୁଳଧର୍ମ ନାଶି ଯେଉଁ ଯୋଷା ବେଶ୍ୟାକର୍ମ
ଲଜ୍ଜା ଭୟ ପରିହରି କରେ ସ୍ୱେଚ୍ଛାଚାରେ
ନ ସେବେ ଯେ ନାରୀ ସ୍ୱାମୀ ମନ ଜାଣିକରି
ପତିଭକ୍ତି ନରଖି ଯେ ଆନେ ଦିଏ ମତି
ଏଆଦି ମହାପାତକକାରୀ ପ୍ରାଣିମାନେ
ପଡ଼ନ୍ତି ଏରଭରବ ନିରୟର କୁଣ୍ଡେ;
ଏହାର ଅଦୂରେ ପୁଣି ଦେଖ କୁମ୍ଭୀପାକ
ପୂୟ ବାନ୍ତି ମଳ ମୂତ୍ର ଲାଳ ବସା ଆଦି
ପୂରିତ ଏହାର ଗର୍ଭ ଅନ୍ଧକାର ସହ
ପୁଣି ଭୀମ କୃମିମୟ ଘୋରଗନ୍ଧକାରୀ
ମହାକ୍ଳେଶଦାୟୀ ଶ୍ୱାସରୋଧୀ ଏ ନରକ
ତୀରେ ରହି ତୀରକୀଳଯୁତ ଦଣ୍ଡ ବହି
ଫୋଡ଼ନ୍ତି ପାପିର ନେତ୍ର ଗାତ୍ର ଆମ୍ଭ ଦୂତେ
ହାୟ ହାୟ ରବେ ପାପୀ କାନ୍ଦେ ନିନ୍ଦି କର୍ମ
ଶୁଣନ୍ତା ନାହିଁକେ ତହିଁ ଶ୍ରମ ମାତ୍ର ସାର
ଶରଦାତୀ ପୁରଦାହୀ ପରଦ୍ରବ୍ୟହାରୀ
ରସି ବିଷାଦିରେ ଯେବା ଆତ୍ମହତ୍ୟା କରେ
ପରଅପକାରୀ ମିଥ୍ୟାବାଦୀ ପ୍ରବଞ୍ଚକ
ଗୋମାଂସ ଶୂଦ୍ରାନ୍ନ ଭକ୍ଷକାରୀ ସୁରାପାୟୀ
ସ୍ୱକର୍ମ ସ୍ୱଧର୍ମ ଜାତି ଗୋତ୍ର କୁଳ ତ୍ୟାଗୀ
ଋଣ ଆଣି ନଗଣିଲେ ଯେ ହୋଇଥାଏ ଋଣୀ
ପକ୍ଷପାତୀ ବିଚାରକ ଉତ୍କୋଚଗ୍ରାହକ
ଅର୍ଥ ଅର୍ଥେ ମିଥ୍ୟା ଶିକ୍ଷା ଦିଏ ଯେ ସାକ୍ଷିଙ୍କି
ଆଖିରେ ନଦେଖି ଯେବା ହୁଏ ମିଥ୍ୟାସାକ୍ଷୀ
ନ୍ୟାୟେ ସ୍ନେହ ରଖି ଯେବା ଏକପକ୍ଷ ଧରେ
ଉଲଗ୍ନ ହୋଇ ଯେ ନାରୀ ଜଳେ କରେ ସ୍ନାନ
ଶୌଚ ହୁଏ ଘାଟେ ପଶି ମଳମୂତ୍ର ଧୋଇ

ରକ୍ତୋମୟ କର୍ପଟ ଯେ ଘାଟେ ବାଟେ କ୍ଷେପେ
ଅଶୌଚା ହୋଇ ଯେ ପାକେ ସଙ୍ଗମେ ପଶଇ
ଗୃହକର୍ମ ତେଜି ଯେ ବିଳାସେ ଦେଇ ମନ୍ଥା
ଆହାର ନିଦ୍ରାରେ ସଦା କାଟୁଥାଏ ଦିନ
ବଶୀକରଣ ମାନସେ ଅମେଧ୍ୟ ଅଖାଦ୍ୟ
ଦ୍ରବ୍ୟ ଯୋଜି ଦିଏ ଯେବା ପତି ପୁତ୍ରାଦିଙ୍କୁ
ଭଲ ଭଲ ଦ୍ରବ୍ୟ ବାଛି ଲୁଚାଇ ଯତନେ
ନଦେଇ କୁଟୁମ୍ବ ଜନେ ଭକ୍ଷଇ ଯେ ଏକା
ଏଆଦି ମହାପାତକକାରୀ ପ୍ରାଣିଗଣ
ପଡ଼ନ୍ତି ଏ କୁମ୍ଭୀପାକ ନରକେ ଅବଶ୍ୟ;
ବସିଛି କଟାହ ଦେଖ ଅଗ୍ନିକୁଣ୍ଡ ପରେ
ଆରକ୍ତ ହୋଇଛି କେତେ ଅଗ୍ନିତାପ ପାଇ
ପାପିକି ଭାଜନ୍ତି ଦୂତେ ସ୍ନେହ ବିନା ତହିଁ
ମହାକ୍ଳେ ଛଟପଟ ହେଉଥାଏ ପାପୀ
ଉଠୁଥାଏ ଧୂମାକାରେ ଦୁଃସହ ଦୁର୍ଗନ୍ଧ
ନାସାରନ୍ଧ୍ର ବିଦାରକ ଉଦ୍ଗାରକାରକ
ରଡ଼ୁଥାଏ ପାପୀ ଗାଢ଼େ ଶୁଣନ୍ତା କେ ନାହିଁ
ନାମ ରକ୍ଷୀଷ ଏହାର ଜୀବନ୍ମୃତକାରୀ
ସାଧୁ ଗୁରୁ ପିତା ମାତା କରେ ଯେ ନିନ୍ଦନ
ନ କରେ ବନ୍ଦନ ଯେବା ସେମାନଙ୍କ ପଦ
ବାର୍ଦ୍ଧକ୍ୟେ ପିତାମାତାଙ୍କୁ ତଡ଼ଇ ଯେ ଗୃହୁଁ
ତାଙ୍କ ଦୁଃଖେ ଦୁଃଖୀ ନୋହି ନିଜସୁଖେ ମଜି
ପ୍ରାଣିଙ୍କି ପୀଡ଼ନ କରେ ଯେବା କ୍ରୋଧ ବହି
ଉପକାର ବଦଳେ ଯେ କରେ ଅପକାର
ପରେ ଯେହୁ ବିଡ଼ମ୍ବିତ କରେ ଗର୍ବଭରେ
କର୍କଶ ବଚନେ ପୁଣି କର୍କଶ ଲୋଚନେ
ବିପ୍ର ଅତିଥି ଯାଚକେ କରେ ଯେ ନିରାଶ
ଉପହାସ କରେ ପୁଣି ତାଙ୍କ ପାଶେ ଯାଇ

ଖାଦ୍ୟ ଦେଇ ପ୍ରାଣିଙ୍କ ଯେ ବଧ ବନ୍ଧ ସାଧେ
ଏକାଦଶୀ ନାଶି ଯେ ହୁଅଇ ଆମିଷାଶୀ
ଏଆଦି ପାତକକାରୀ ଏଘୋର ନରକେ
ପଡ଼ି ପୋଡ଼ାନ୍ତି ବିଗ୍ରହ ନାହିଁନା ସନ୍ଦେହ,
ଦେଖ ଦେଖ ସଖେ ! ଅନ୍ଧତାମିସ୍ର ନରକ
ବିଷମୟ କୃମି କୀଟେ ପୂର୍ଣ୍ଣ ଏହାତଳ
ଘନଘୋର ଅନ୍ଧକାର ଆଲୋକ ରହିତ
କର ପରାମର୍ଶେ କର ଭଜିବ କାଳିମା
ଏକମାତ୍ର ମାର୍ଗ ପୁଣ କପାଟପାଟିତ
ଜ୍ୱାଳାମୟୀ ବାଷ୍ପରାଶି ସଞ୍ଚିତ ତହିଁରେ
ନିର୍ଦ୍ଦୟ କୃତଘ୍ନ ମିତ୍ରଦ୍ରୋହୀ ଅଳସୁଆ
ବେଦଧର୍ମ ଦେବଦେବୀ ଶାସ୍ତ୍ରାଦି ନିନ୍ଦକ
ତୁଚ୍ଛ ମଣି ନ ତାରେ ଯେ ପ୍ରାଣିଙ୍କି ଆପଦୁଁ
ବାକ୍ୟଦେଇ କାହାକୁ ଯେ ଲଙ୍ଘଇ ସେ କଥା
କ୍ଷୁଧାର୍ତ୍ତ ତୃଷାର୍ତ୍ତ ଜୀବେ ନ କରେ ଯେ ଦୟା
ଏକ ମାତ୍ର ସ୍ୱଉଦର ପୂର୍ତ୍ତିପରାୟଣ
ପରସେବା ବିରାଗୀ ସ୍ୱାଧନ ଉପଭୋଗୀ
ଦଣ୍ଡ ଭୟ ଦେଖାଇ ଯେ ଖାଏ ପରବିତ୍ତ
ଏହି ପାପିଗଣ ପଡ଼ି ସଢ଼ନ୍ତି ତହିଁରେ
ବିଷ ଜ୍ୱାଳା ବାଷ୍ପବାଳା ଦହୁଥାଏ ଦେହ;
ଦେଖ ଏସେ କାଳସୂତ୍ର ନାମକ ନରକ
ନାମୁଁ ସେ ବିଦିତ ହୁଏ ତାର ଭୀଷଣତା
କରପତ୍ରାକାର ସୂତ୍ର ବିଷଜର୍ଜ୍ଜରିତ
ସ୍ପର୍ଶ ମାତ୍ରେ ଗଳେ ମାଂସ ଦୁଷ୍ଟବ୍ରଣସମେ
ତହିଁ କର୍ତ୍ତନ୍ତି ନିରତେ ଆସ୍ତ ଯମଦୂତେ
ଜୀବର ଅଙ୍ଗପ୍ରତ୍ୟଙ୍ଗ ଜୀବନ ନନେଇ
ଆର୍ତ୍ତ ହାହାକାର କରେ ପାପୀ ତାପ ବଶେ
ମଲି ମଲି ଗଲି ଗଲି ଆଦ ଭାଷା ଭାଷି

ତଳେ ଜ୍ୱଳି ବହ୍ନି ପ୍ରଜ୍ୱାଳଇ ଗ୍ରୀଷ୍ମେ ବର୍ଷେ
ଗାଢ଼ ଧୂମସ୍ତୋମ ପୁଣି ଶ୍ୱାସରୋଧେ ଗାଢ଼େ
ଲାଳ ବାଳ ମଳ ମୂତ୍ର ଅମେଧ୍ୟ ପଦାର୍ଥ
ଜଳ ଜ୍ୱଳନେ ଯେ କ୍ଷେପି କରେ କଲୁଷିତ
ସମ୍ପଦ ସମ୍ପାଦି ଯେବା କୀରତି-ବିରତି
ଶ୍ରମ ବିନା ଆଶ୍ରମେ ଯେ ଭୁଞ୍ଜୁଥାଏ ବସି
ବିଧବା ବ୍ରାହ୍ମଣୀ ବେଶ୍ୟା ରମଣୀ ଯେ ହରେ
ନିଜ ଭୋଗ ବିଳାସେ ଯେ ବିଧ୍ୱଂସେ ଐଶ୍ୱର୍ଯ୍ୟ
ବିଶ୍ୱାସ ଖେଳାଇ ଯେବା ଅପରେ ଛଳଇ
କୃତ୍ରିମ କରି ଯେ ଦ୍ରବ୍ୟ କରଇ ବିକ୍ରୟ
ମୁଖେ ମିଷ୍ଟ ଭାଷି ପେଟେ ରଖେ ଯେ କପଟ
ଦୁଗ୍ଧ ସହ ମତ୍ସ୍ୟ ମାଂସ କରେ ଯେ ଅଶନ
କରଇ ପ୍ରାଣଧାରଣ ଯେବା ପରଧନେ
ଅନ୍ନଦାନ କାଳେ ଯେବା ଭାବେ ଭିନ୍ନାଭିନ୍ନ
ବାସେ ଥାଉଁ ଅତିଥି ଯେ ଅଗ୍ରେ କରେ ଗ୍ରାସ
ଗ୍ରାସ ହୀନେ ଗୋରୁଙ୍କୁ ଯେ କ୍ଳେଶ ଦେଉଥାଏ
ଏଆଦି ପାତକରାଶି ସଞ୍ଚୁଥାଏ ଯେବା
ସେ ଏହି ନରକେ ପଡ଼ି ପୀଡ଼ା ଭୋଗ କରେ;
ଏହି ଦେଖ ତା ନିକଟେ ଅତିହିଁ ବିକଟ
ରହିଛି ନରକ ନାମ ଅସିପତ୍ରବଳ
ଶତଧାର ସୁତୀକ୍ଷ୍ଣ ସେ କୀଳକମଣ୍ଡିତ
ବିଷଦିଗ୍ଧ ଜ୍ୱାଳାମୟ ମର୍ମଭେଦକାରୀ
ଛାର ସହସ୍ର ବୃଶ୍ଚିକ ଦଂଶନର ଜ୍ୱାଳା
ବଳେ ନିଜ ଦତ୍ତ ପରଦତ୍ତ ଯେ ହରଇ
ପରେ ଦୁଃଖ ଦେଇ ଯେ ଭୁଞ୍ଜଇ ନିଜ ସୁଖ
ବୁହାଇ ଦୁର୍ଭାରି-ଭାର ଗୋରୁଙ୍କୁ ଯେ ଦଣ୍ଡେ
ଦ୍ୟୂତ ନିଶା ପଶା ବିଳାସେ ଯେ କାଟେ ଦିନ
ଚର୍ମ ସୁରା ବିଷଦ୍ରବ୍ୟ ବ୍ୟବସାୟକାରୀ

ଶଠ ଜ୍ୟୋତିଷିକ ପୁଣି ଅଶିକ୍ଷିତ ବୈଦ୍ୟ
ଲୋଭୀ ପୁରୋହିତ ପୁଣି କପଟୀ ସନ୍ନ୍ୟାସୀ
ମୃଗୟା କରଇ ନିତ୍ୟ ପ୍ରାଣୀ ନାଶେ ଯେବା
ପରକୃତ କୀର୍ତ୍ତି ଯେବା କରେ ଆପଣାର
ପ୍ରତାରଣା କରିଯେ ହରଇ ପରବିତ୍ତ
ସନ୍ଧ୍ୟାକାଳେ କରଇଯେ ଶୟନ ଭୋଜନ
ହୁଅଇ ଦିବାରେ ଯେବା ନିଦ୍ରା ଭଦ୍ରାରତ
ସ୍ୱାଦୁ ଦ୍ରବ୍ୟ ମଣି ମନେ ଅବିଚାର ମତେ
ଅପରିମିତ ଭୋଜନ କରଇ ଯେ ଜନ
ଏମନ୍ତ ପାପିଙ୍କି ବଳେ ଧରି ଆମ୍ଭ ଦୂତେ
ଏହି ଅସିପତ୍ରବଳ ନରକେ କ୍ଷେପନ୍ତି;
ଏତେ ଦେଖୁଁ ରୋଚିସ ସେ ରୁଚି ହୃଦୁଁ ବର୍ଜି
ସର୍ଜିଲେ ଏ ଖେଦ ଭାଷା ଚିତ୍ରଗୁପ୍ତେ ଚାହିଁ
ସଖେ ! ପାପୀ ପ୍ରାଣୀ ଦୁଃଖ ଦେଖି ମୋର ପ୍ରାଣ
ଦହୁଛି ବିକଳେ ନେତ୍ରୁଁ ବାହୁଅଛି ଜଳ
ଆଉ ଦେଖିବାକୁ ତିଳେ ନ ବଳେ ମାନସ
ଫେରି ଯାଉଁ ଚାଲ ବାଟ କଢ଼ାଅ ଝଟିତି
ଶୁଣି ସେ ଦେଖାନ୍ତେ ପନ୍ଥା ଫେରିଲେ ଉଭୟେ
କହିଲେ ସେ ମନ୍ତ୍ରୀ ବର୍ତ୍ମେ ଋଷିପ୍ରସୂତିଙ୍କୁ
ଏହିରୂପେ ଏକବିଂଶ ନରକ ଏଦେଶେ
ପାପିଙ୍କ ସକାଶେ ରହିଅଛି ଘୋର ରୂପେ
ସେ ନରକେ ଭିନ୍ନ ଭିନ୍ନ ପାପୀ ଭିନ୍ନେ ଭିନ୍ନେ
ନିପତନ୍ତି ନିଜ କର୍ମଫଳ ଅନୁପାତେ
ଦୁଃଖର ଏ ସ୍ଥାନ ସୁଖ ନଦେଖେ ସ୍ୱପନେ;
ତଥାପି ତ ଜୀବଶ୍ରେଷ୍ଠ ଜ୍ଞାନଶ୍ରେଷ୍ଠ ନର
କରନ୍ତି ଦୁଷ୍କୃତ କର୍ମ ମାୟାମୋହେ ପଡ଼ି
ଜଡ଼ି ମର୍ତ୍ତ୍ୟପୁରେ ସାରାସାର ନ ବିଚାରି
ସୁଖ ସମ୍ଭୋଗ ବିଳାସେ ବଳାନ୍ତି ମାନସ
ଭ୍ରମି ଶାସ୍ତ୍ର ପଥ ଇଚ୍ଛାମତେ କର୍ମ କରି

ଧର୍ମଧ୍ୱଜୀ ହୋଇ ମଜ୍ଜି ରହନ୍ତି ଦୁଷ୍କୃତେ
ନିଶା ପଶା ଯୋଷା ଭୂଷା ଜୀବନ ସମ୍ବଳ
କରନ୍ତି ଆବର ବହି ହିଂସା ଦ୍ୱେଷ ରୋଷ
ତେଣୁ ଏ ଭୀଷଣ ଦେଶେ ଲଭନ୍ତି କଷଣ;
ମାତ୍ରକ ଧାର୍ମିକ ଏଥେ ଆସି ଅବଶେଷେ
ପ୍ରବେଶର ସ୍ୱର୍ଗଧାମେ ମନୋରମ ପଥେ
ତହିଁ ପାଇଁ ଯମପୁରୁ ସ୍ୱର୍ଗପୁର ଯାଏ
ପଡ଼ିଛି ସରଣୀ ଆଲୋକିତ ଦିବ୍ୟତେଜେ
ଶୁଣି ମନ୍ତ୍ରିମଣି ବାଣୀ ରୋଚିସ ହରଷେ
ଭାଷିଲେ ଥିଲା ମୋ ସ୍ୱର୍ଗଗମନେ ଲାଲସା
ତୁମ୍ଭର ଆଭାସୁଁ ଏବେ ଲଭିଲି ସନ୍ଦେଶ
ସନ୍ଦେହ ଯା ଥିଲା ସ୍ୱର୍ଗମାର୍ଗର ମାର୍ଗଣେ
ମାତ୍ର ପୁନଃ ପିତୃପତି ସହିତ ସାକ୍ଷାତ
ହେବାର ଉଚିତକର୍ମ ବିଚାରଇଁ ଚିତ୍ତେ
ସଖେ ! କି ବିଚାର କହ ଫେଡ଼ି ମୋ ସନ୍ଦେହ;
ଶୁଣି କହେ ମନ୍ତ୍ରି ଚିତ୍ତେ ଭାବ ଯା ଉଚିତ
ଯିବା ଚାଲ ଧର୍ମରାଟ ନିକଟେ ଝଟିତି;
ତହୁଁ ଗଲେ ଦୁହେଁ ଯମରାଜଙ୍କ କତିକି
ପ୍ରଣମି କହିଲେ ତାଙ୍କୁ ସିଦ୍ଧ ଯୋଗୀଶ୍ୱର
ଆହେ ଧର୍ମରାଜ ତବ ଅପାର କୃପାରୁ
ସାର୍ଥ ମୋର ପଞ୍ଜିକା ଦର୍ଶନ ମନୋରଥ
ତା ପରେ ଦେଖିଲି ପାପୀ ପାପଫଳ ଭୋଗ
ତବ ମନ୍ତ୍ରୀ ଚିତ୍ରଗୁପ୍ତ ସଂଜାତ ଜଗତେ
ନୀତିଜ୍ଞ ଧର୍ମଜ୍ଞ କେହି ନଥିବେ ଚିନ୍ତଇଁ
ଏବେ ସ୍ୱର୍ଗ ରାଜ୍ୟେ ଯିବି ଆଜ୍ଞାକର ଜବେ,
ଏତେ କହି ଯମେ ନମି ବାହାରନ୍ତେ ଖରେ
ମାର୍ଗ ପ୍ରଦର୍ଶନେ ରାଜା ମନ୍ତ୍ରିଙ୍କୁ କହିଲେ
ବେନିହେଁ ଗମିଲେ ତହୁଁ ପ୍ରତ୍ୟଙ୍ମୁଖ ହୋଇ
ଅତିକ୍ରମି ଯମପୁର ହୈମୀ ବହିର୍ଦ୍ୱାର

ଦେଖିଲେ ପ୍ରଶସ୍ତ ସୌମ୍ୟ ସୁସମ ମସୃଣ
ସରଣି ରହିଛି ଦୈର୍ଘ୍ୟେ ଅନ୍ତରୀକ୍ଷ ଭେଦି
ଜଡ଼ିଛି ସ୍ଫଟିକ ଶିଳା ସରଣିର ତଳେ
ପଡ଼ିଛି ମୌକ୍ତିକ ଚୂର୍ଣ୍ଣଚୟ ରଜୋରୂପେ
ଅଭ୍ରଶୁଭ୍ର ଶଙ୍ଖଶିଳା ବପ୍ର ବେନିପାର୍ଶ୍ୱେ
ରାଜେ ତେଜେ ଚନ୍ଦ୍ରଜ୍ୟୋତ୍ସ୍ନା ପରାଜୟ କରି;
ବସିଛନ୍ତି, ଦେବଦୂତ ପରୀକ୍ଷିକା ରୂପେ
ବ୍ରହ୍ମରଷି ମାନସମୋହିନୀ ମୂର୍ତ୍ତିବହି
ପଥଅଗ୍ରେ, ଦେବବାସ ଭୂଷଣେ ଭୂଷିତ
ଅଙ୍ଗୁ ଚହଟଇ ବାସ ଅତି ମନୋହରେ
ସ୍ୱର୍ଗୀୟ ବିମାନ ମାନ ରଖି ନିଜ ପାଖେ;
ନିରେଖି ପାପୀ ନିଷ୍ପାପେ କରନ୍ତି ପରୀକ୍ଷା
ପାପିକୁ ଉପେଖି ନିଷ୍ପାପେ ସେ ଅପେକ୍ଷନ୍ତି,
ବିଲୋକି ରୋଚିସେ, ହସି ମଧୁମିଶା ଭାଷେ
ଭାଷିଲେ ସେ ଦେବଦୂତ ଆସ ଆସ ଋଷି
ହେବ ସ୍ୱର୍ଗବାସୀ ଏହି ମାର୍ଗେ ଚାଲ ଯିବା
ସୁମନ ସୁମନୀ ସିନା ସ୍ୱର୍ଗରାଜ୍ୟ ଭୋଗ;
ଶୁଣି ଋଷି ଅଙ୍ଗୁଳି ନିର୍ଦ୍ଦେଶି ଊର୍ଦ୍ଧ୍ୱ ଦେଶେ
ବିଜ୍ଞାପିଲେ ଇଙ୍ଗିତେ ତାଙ୍କର ଶୂନ୍ୟଗତି
ତଦୁତ୍ତାରେ ଚିତ୍ରଗୁପ୍ତେ ସମ୍ଭାଷି ବିଦାୟ
ଚଳିଲେ ସ୍ୱେ ମାର୍ଗେ ଏକା ମନୋଯାନେ ବସି
କରେ ଯେ ସଂଯମ କାମେ ସୁସଂଯତଚିତ୍ତେ
ବିପତ୍ତିରେ ପତତ ନ ହୁଏ ସେ କଦାପି

ଇତିଶ୍ରୀ ଜରାସନ୍ଧବଧ କାବ୍ୟେ ଚୋରିସ ଯମ ପଞ୍ଜିକା ଦର୍ଶନେ
ନାମ **ଅଷ୍ଟମଃ ସର୍ଗ** ।

—

## ନବମ ସର୍ଗ

ଏଥୁଅନ୍ତେ ସ୍ୱର୍ଗମାର୍ଗ ମାର୍ଗଣୀ ରୋଚିଲା
ସୁବ୍ୟଗ୍ରେ ଗମନ୍ତେ କେତେ ଦୂରେ ଅଗ୍ରଭାଗେ
ଦେଖନ୍ତି ଅପୂର୍ବ ଭାବେ ଚିତ୍ରାକାଶେ ନଭେ
ବିରାଜନ୍ତି ଜ୍ୟୋତିର୍ମୟ ଜୀବ ଦ୍ରବ୍ୟଜାତ
ତିନି ଜଳଚର ପୁଣି ଷଟ ସ୍ଥଳଚର
ଶୂନ୍ୟାକାଶେ ନିବସନ୍ତି ଜଳସ୍ଥଳ ବର୍ଜି
ପ୍ରାଣ ନ ବିସର୍ଜି ଜଳ ସ୍ଥଳର ଅଭାବେ
ଅମର ଶରୀରେ ରହି ମୋହି ବ୍ୟୋମ ଦେଶ
ପୁଣି ଚାପ ଆପପାତ୍ର ତୁଳାପାତ୍ର ତିନି
ଘେନି ସ୍ୱସହିତେ ଭ୍ରମୁଛନ୍ତି ଧୀରେ ଧୀରେ
ତାହିଁ ବିସ୍ମୟମାନସ ହୋଇ ସେ ରୋଚିସ
ଭାବିବାକୁ ଲାଗିଲେ ଏଭାବେ ମନେ ମନେ
କିଏ କି ସକାଶେ ଏଥେ ଜୀବ ଦ୍ରବ୍ୟଜାତ
ରଖିଅଛି ଆଣି ମୁଁ ତ ନପାରିଲି ଜାଣି
ଏହା ଶୁଣି ଧ୍ୟାନମଗ୍ନ ହେଉଁ ଯୋଗୀଶ୍ୱର
ଜାଣିଲେ କାରଣ ତାରି ଏହି ପରକାରେ
ଚମତ୍କାର ପ୍ରଦର୍ଶନେ ଗ୍ରହରାଜ ସୂର୍ଯ୍ୟ
ଆଣି ପୋଷିଛନ୍ତି ତାଙ୍କୁ ଏହି ବ୍ୟୋମଦେଶେ
ବର୍ଷ ମଧ୍ୟେ ଥରେ ଥରେ ପାଇ ତାଙ୍କ ପାଖେ
ନିବେଶନ୍ତି ଖାଦ୍ୟ ତହିଁ ତୁଳାପାତ୍ରେ ତୁଳି
ଭରି କୁମ୍ଭେ ବାରି ପୁଣି ତୃଷା ନିବାରଣେ
ବିବାଦ ବାରଣେ ଥୋଇ ଭୀଷ୍ମ ଶରାସନ
ତହୁଁ ଅଗ୍ରଗତି ବହି ଯାଉଁ କେତେ ଦୂରେ
ଦେଖନ୍ତି ସ୍ୱର୍ଗଙ୍ଗା ଦେବ ତାପପାପ ଭଙ୍ଗୀ
ଶୁଭ୍ରବୀଚିମାଳାମୟୀ ପୀୟୂଷସଲିଳା

ତ୍ରିଭୁବନ ନିସ୍ତାରିଣୀ ଚିତ୍ତ ସୁର ସେବ୍ୟା
ଅବଗାହି ତହିଁ ନିତ୍ୟକର୍ମ ସମ୍ପାଦନ
କରି ଊର୍ଦ୍ଧ୍ୱଗତି ବହି ଗମିଲେ ଅଗ୍ରତେ
ଦେଖିଲେ ଆଶ୍ଚର୍ଯ୍ୟ ରାଜ୍ୟ ମାନସମୋହନ
ଧବଳ ଭାସ୍ୱରେ ଯେବା ମଣି ରତ୍ନ ଯୋଗେ
ଧାଡ଼ି ଧାଡ଼ି ଶ୍ରେଣୀ ଶ୍ରେଣୀ ପ୍ରାସାଦ ମନ୍ଦିର
ପୁର ଅଟ୍ଟାଳିକା ମେଢ଼ ମଣ୍ଡପ ଝଗତ
ଶିରୋଦେଶେ ସ୍ୱର୍ଣ୍ଣକୁମ୍ଭ ରତନକେତନ
ଚୂଡ଼େ ଫରହର ଉଡ଼େ, ଧୀର ସମୀରଣେ
ସରଳେ ସୁରମ୍ୟେ ରାଜେ ସରଣି-ନିକର
ଦେବପଣ୍ୟେ ପୂର୍ଣ୍ଣସଦା ବିପଣିମାଳିକା
ଧୂପ ପୁଷ୍ପ ଚନ୍ଦନର ବାସ ମହ ମହ
ଗହ ଗହ ପୁଣି ସ୍ୱର୍ଗ ବାଦିତ୍ର ଶବଦେ;
ଚାହିଁ ଊର୍ଦ୍ଧ୍ୱ ଅବତରି ସ୍ୱର୍ଗର ତୋରଣେ
ପ୍ରବେଶିଲେ ଷବର ସେ ଉତ୍କଣ୍ଠିତ ହୋଇ
ଦେଖିବା ସକାଶେ ସୁରପୁର ଶୋଭାରାଶି
ଦୌବାରିକବାରେ ତହିଁ ଜଗିଛନ୍ତି ଆଣ୍ଟେ
କରେ ଅସ୍ତ୍ର ଶସ୍ତ୍ର ବହି ସାବଧାନେ ରହି
ବିଲୋକି ରୋଚିସେ ଦ୍ୱାର ଛାଡ଼ିଲେ ସେ କ୍ଷଣି
ତେଜ ଓଜ ଦେଖି ତାଙ୍କ ଦେବ କଳେବର
ନିର୍ଭୟେ ପଶିଲେ ପୁରେ ତହୁଁ ସେ ରୋଚିସ
ବହି ଜୟନ୍ତକ ମଣି ଯବାନ୍ତକ ଛୁରୀ
ବାମେ କମଣ୍ଡଳୁ ଭାଳେ ମହେଶ ବିଭୂତି
ଦେବୀଦତ୍ତ ସୁଅଞ୍ଜନ ଗଞ୍ଜିତ ନୟନେ
ଚାହାଁନ୍ତି ଚୌଦିଗେ ଧୀରେ ଧୀରେ ପଦକ୍ଷେପି
ସର୍ବ ଆଭାମୟ ସର୍ବଶୋଭା ତହିଁ ଠୁଳ
ଅପରୂପ ରୂପ ସର୍ବ ସ୍ୱର୍ଗବାସିଙ୍କର
ନିମେଷ ବିହୀନ ନେତ୍ର ଛାୟାଶୂନ୍ୟଗାତ୍ର

ସ୍ରକ ଚନ୍ଦନ ବାସ ଭୂଷା ମଣ୍ଡିତ ବିଗ୍ରହ
ସର୍ବେ ତହିଁ ଯୁବା ହୃଷ୍ଟପୁଷ୍ଟ ସୁବଳିଷ୍ଠ
ସୀମନ୍ତିନୀକୁଳ ଶୋଭା ତୁଳନା ବା କାହିଁ;
ଉପକଣ୍ଠେ ବିରାଜିତ ନନ୍ଦନକାନନ
ଯା ମନମୋହନଛବି ତ୍ରିପୁରେ ଦୁର୍ଲ୍ଲଭ
ପଞ୍ଚଦେବତରୁ ପୁଣି ମହାମହୌଷଧି
ଅଲଭ୍ୟ ବ୍ରତତୀତରୁରାଜି ରାଜେ ତହିଁ;
ପୁଣି ରତ୍ନକୂଟ ରତ୍ନମୁକୁଟ ଯା କୂଟେ
ଲେଖସୁଖସଦନ ଯେ ବିଳାସ ଆଳୟ
ଏସର୍ବ ନିହାରି ମାର୍ଗେ ହେଲେ ଅଗ୍ରବର୍ତ୍ତୀ;
କେତେଦୂର ଅନ୍ତେ ପୁଣି ଚାହିଁଲେ ପୁରତେ
ପ୍ରଭାମୟୀ ସୁରସଭା ସୁଧର୍ମା ଯା ନାମ
ପଟାନ୍ତର ନାହିଁ ବିଶ୍ୱେ ଯା ରୁଚିରଛଟା
ଊର୍ଦ୍ଧ୍ୱେ ଚନ୍ଦ୍ରାତପ ନିମ୍ନେ ସ୍ଫଟିକର ଳେ
ଖଚିତ ବିବିଧ ରତ୍ନେ ତାରତର ଜ୍ୟୋତି
ମଧ୍ୟେ ବିରାଜଇ ସଞ୍ଚମଞ୍ଚ ଚାରୁତରେ
ସ୍ୱର୍ଣ୍ଣ ରୌପ୍ୟ ମଣିରତ୍ନ ଯୋଗେ ବିଭ୍ରାଜିତ;
ବସିଛନ୍ତି ଦେବବୃନ୍ଦ ଆନନ୍ଦିତ ଚିତ୍ତେ
ଦେବଯୋନିଙ୍କ ସହିତ ବିହିତ ଆସନେ
ସମାସୀନ ପୁଣି ରାଜ ସିଂହାସନୋପରି
ପୁଲୋମଜା ସହ ଦେବରାଜ ବଜ୍ରକରେ
ପାର୍ଶ୍ୱେ ପାରିଷଦଗଣ ପୁଣ ବସିଛନ୍ତି
ଉତ୍ସବମୟୀ ସେ ସଭା ନୃତ୍ୟ ଗୀତ ବାଦ୍ୟେ
ତେଣୁ ଧୀର ପଦକ୍ଷେପି କର୍ଣ୍ଣିକା କୁମାର
କୁମାର ଯାର ଯା ରୂପେ ପଟାନ୍ତର ନୁହେ
ରୁଭୂକ୍ଷା ସମ୍ମୁଖେ ଯାଇ ଉପସ୍ଥିତ ହୋଇ
ପ୍ରଣମି ସ୍ତୁତିଲେ ତାଙ୍କୁ ଭକ୍ତିବଶ ଭାବେ
ଚାହିଁ ଇନ୍ଦ୍ର ମହାନନ୍ଦେ ସ୍ୱପାଶେ ବସାଇ

ପୁଚ୍ଛିଲେ ସ୍ୱାଗତ ବାର୍ତ୍ତା ପରିଚୟ ସହ
ପୁଣି ଭୈରବୀଙ୍କ ମଣି ଛୁରୀ ଦେଖି ଅଙ୍ଗେ
ଆଶ୍ଚର୍ଯ୍ୟ ମଣିଲେ ଇନ୍ଦ୍ର ତାଙ୍କୁ ଯେଣୁ ଜଣା
ତହୁଁ ସେ ରୋଚିସ ହସ୍ତଦ୍ୱୟ ଯୋଡ଼ି ଶିରେ
ଭାଷିଲେ ମଧୁର ସ୍ୱରେ ଏହି ଭାଷାରାଶି
ହେ ଦେବେନ୍ଦ୍ର ପୁରନ୍ଦର ! ଧୃତବଜ୍ରହସ୍ତ
ନିଖିଳସ୍ୱର୍ଗମଣ୍ଡଳ ରାଜରାଜେଶ୍ୱର
ମୁଁ ସେ ରୋଚିସ ବ୍ରହ୍ମର୍ଷି କର୍ଣ୍ଣିକାକୁମାର
ମହା ଭଇରବୀ ଦେବୀ ଅନୁଗତ ଦାସ
ତାଙ୍କ ଆଜ୍ଞା ଘେନି ଏଥେ ଆସିଅଛି ମୁହିଁ
ବସନ୍ତି ସେ ମର୍ତ୍ତ୍ୟଧାମେ ଜରାସନ୍ଧ ଗ୍ରାମେ
ଜଣାଇବି ମର୍ତ୍ତ୍ୟବାର୍ତ୍ତା କେତେ ଶ୍ରୀଛାମୁରେ
ହେଲେ ଅବଧାନ ତବ କହିବି ନା ତାହା
ଶୁଣି ଶକ୍ର ଭାଷନ୍ତେ ନିର୍ଭୟେ କହ, କହି
କହିଲେ ରୋଚିସ ଧୀରେ ବିନୀତ ଭକ୍ତିରେ
ଭାଷେ ବସନ୍ତର ପାଶେ କି ସେ ପିକବର;
ଭୋ ଦେବେଶ ! ମର୍ତ୍ତ୍ୟପୁରେ ମଗଧାଖ୍ୟ ଦେଶେ
ଜରାସନ୍ଧ ନାମେ ମହାରାଜା ବିରାଜଇ .
ମହାନ ଗରିଷ୍ଠ ଦୁଷ୍ଟ ଅନର୍ଗଳ ବଳୀ
ପୂଜେ ଭଇରବୀ ଦେବୀ ନିତ୍ୟ ବଳିଦେଇ
ମେଷ ମହିଷ ମନୁଷ୍ୟ ଛାଗ ଆଦି କରି
ହୋଇଲାଣି ଜୀବଶୂନ୍ୟା ତେଣୁ ସେ ଧରଣୀ
ମତ୍ସ୍ୟ ପୂର୍ଣ୍ଣ କଚ୍ଛ ଯଥା ମତ୍ସଜୀବୀ ଯୋଗେ
ଯେଣୁ ତୁମ୍ଭେ ଅଟ ଦେବ ମର୍ତ୍ତ୍ୟର ପାଳକ
ପୁଣି ଧର୍ମରକ୍ଷାକର୍ତ୍ତା ଦୁଷ୍ଟର ସଂହର୍ତ୍ତା
ତେଣୁ କ୍ଷିପ୍ର ପ୍ରତିକାର କର ସୁରବର ।
ନତୁ କି ବର୍ତ୍ତିବେ ଆଉ ସେ ଧରଣୀ ପ୍ରାଣୀ
ଏହିମାତ୍ର ନିବେଦନ ଶ୍ରୀପଦେ ତୁମ୍ଭର

ହିତାହିତ କଥା ଚିନ୍ତ ନଭଜି ନିଶ୍ଚିନ୍ତ
କହୁଁ ଜାଣିଗଲେ ଇନ୍ଦ୍ର ପୂର୍ବକଥା ହେଜି
ବିଚିତ୍ରରଥର ଯେବା ଥିଲା ଅଭିଶପ୍ତ;
ମନେ ବିଚାରିଲେ ତହୁଁ ବନ୍ଧୁକାର୍ଯ୍ୟ ସ୍ମରି
ନମାରି ଅଛନ୍ତି ରଖି ତାକୁ ହୃଷୀକେଶ
ପାଣ୍ଡବଙ୍କ ହିତଅର୍ଥେ, ପାଣ୍ଡବର ହାତେ
ମରାଇବେ କେବେ ସିନା କିଂକର୍ତ୍ତବ୍ୟ ଏବେ
ଏତେ ଭାବି ଧାତାପୁତ୍ରେ ଡକାଇ ସେ କ୍ଷଣି
ପଦେ ନମି ତାହାଙ୍କୁ କହିଲେ ଏହି ଭାବେ
ହେ କଳହପ୍ରିୟ ଋଷି ! ଲଗାଇ କଳହ
ମରାଅ ଜରାକୁ ଯାଇ କଳ କଉଶଳେ
ହିଂସାଧର୍ମ ବହି ସେହି ଦୁଷ୍ଟ ଜରାସନ୍ଧ
ନଷ୍ଟ କରେ ବହୁଜୀବ ସେବି ଭଇରବୀ
ନିତି ନିତି ବଳିଦାନ କରିବାରୁ ସେହି
ହୋଇଲାଣି ଜୀବଶୂନ୍ୟା ସେ ମର୍ତ୍ତ୍ୟ ଧରଣୀ
ଯେସନ ଇନ୍ଧନାଜୀବ ବ୍ୟବହାର ବନ
ଧର୍ମରକ୍ଷା ଆମ୍ଭମାନଙ୍କର ମୁଖ୍ୟକର୍ମ
କକ୍ଷାଧରି ସାଧକାର୍ଯ୍ୟ ଆହେ ଋଷିରାଜ
ଯାଅ ମର୍ତ୍ତ୍ୟପୁରେ ଏହି ଋଷିପୁତ୍ର ସାଥେ
ନାମ ସାର୍ଥ ହେଉ ଭୟ କାମ ନୋହୁ ବ୍ୟର୍ଥ;
ତା ଶୁଣି ନାରଦମୁନେ ଇନ୍ଦ୍ରଶୁଭ ବାଞ୍ଛି
ଚଳିଗଲେ ମର୍ତ୍ତ୍ୟପୁରେ ଋଷିପୁତ୍ର ସାଥେ
ମନୋଯାନ ଆରୋହଣ କରି ଝଟିତିରେ
ଗିରିବ୍ରଜପୁରେ ଯାଇ ହେଲେ ବିରାଜିତ
ଦେଖିଲେ ବସିଛି ଜରାସନ୍ଧ ନୃପମଣି
ସ୍ଥୁଳୋନ୍ନତ କଳେବର ମାନୋନ୍ନତ ଶିର
ରତ୍ନସିଂହାସନୋପରେ ମହାଦର୍ପଯୁରେ
ବକ୍ଷଃ କରିସ୍ଫୀତ ଦକ୍ଷହସ୍ତେ ବଶସ୍ପର୍ଶି

ମୟୂର ପୃଷ୍ଠୋପବିଷ୍ଟ ଯଥା ତାରକାରି;
ଛତ୍ରବାହ ଉଭାରିଛି ରାଜଛତ୍ର ଶିରେ
ବିଞ୍ଚନ୍ତି ସଧୀରେ ଭୃତ୍ୟେ ଆଲଟ ଚାମର
ଗହ ଗହ ସ୍ୱରେ ଶଂଖ ସ୍ଫୁରଇ ଅସଂଖ୍ୟ
ପାତ୍ର ମିତ୍ର ଆମତ୍ୟାଦି ଅଛନ୍ତି ସହିତେ
ସୈନ୍ୟ ସାମନ୍ତ ସ୍ୟନ୍ଦନ ଗଜବାଜୀ ଚୟ
ଅପାରୁ ଅପାର ରହିଛନ୍ତି ବେନିପାର୍ଶ୍ୱେ
ବାଜେ ବୀରବାଦ୍ୟ ନାଦେ ଶ୍ରବଣ ବଧିର
ପାଶେ ପ୍ରବେଶନ୍ତେ ଋଷି ଜରାସନ୍ଧ ଭୂପ
ସିଂହାସନୁ ଉଠି ନମି ଋଷିଙ୍କୁ ପାଛୋଟି
ଷଡ଼ର୍ଘ୍ୟେ ସେ ପୂଜାକଲେ କୁଶାସନ ଦେଇ
ତଦନ୍ତେ କହିଲେ ବଡ଼ ଭାଗ୍ୟ ଆଜଦିନ
ପଡ଼ିଲା ଯା ତବ ପଦରଜଃ ମୋର ରାଜ୍ୟେ
ବଡ଼ ଅନୁଗ୍ରହ କଲ ଦେବର୍ଷି ନାରଦ !
ଶୁଣି ନାରଦ କହିଲେ ତୋଠାରେ ମୋ ସ୍ନେହ
ରହିଥାଏ ଗାଢ଼େ ତୋର ଦୃଢ଼ଭକ୍ତି ଦେଖି
ଯେହ୍ନେ ଗୁଣୀ ପୁତ୍ର ପ୍ରତି ପିତା ସ୍ନେହ ଅତି
କିଛି ଗୁପ୍ତବାର୍ତ୍ତା ତୋତେ କହିବା ନିମନ୍ତେ
ଆଗତ ମୁଁ ଏଥେ ଚାଲ ଏକାନ୍ତେ କହିବି
କହୁଁ ତହୁଁ ଦୁହେଁ ଗଲେ ମନ୍ତ୍ରଣାର କକ୍ଷେ
କର୍ମ ଘେନି ଜୀବ ଯେହ୍ନେ ପଶେ ଅନ୍ୟଦେହେ
କହିଲେ ରାଜନେ ତୁ ହୋ ! ଏଡ଼େ ବୀରଶୂର
ହୋଇ କିଛି କାର୍ଯ୍ୟ କରୁନାହୁଁ ଏ ମହୀରେ
କର୍ମଭୂମି ମର୍ତ୍ତ୍ୟପୁରେ ନର ଜନ୍ମ ସାର
ନଶ୍ୱର ନରଜୀବନ ନିତ୍ୟସଙ୍ଗୀ କର୍ମ
ନରଜନ୍ମ ଲଭି କର୍ମ ନକରଇ ଯେବା
ଆନ ଜନ୍ମେ କର୍ମ ତାର ନୁହଇ ସାଧନ
ଏହି କଥା ହେତୁ ରଖି ଆରେ ନୃପନାଥ;

ଶ୍ରଦ୍ଧାବହି ସାଧ କର୍ମ କହୁଛିଁ ତୋ ହିତେ
ଇହ ପର ବେନି ଲୋକେ ଯଶସ୍ୱୀ ହୋଇବୁ
ଶତ୍ରୁଜୟୀ ବାନା ତୋର ଉଡ଼ିବ ତ୍ରିପୁରେ
ଆଶ୍ଚର୍ଯ୍ୟମଣି ସେ ଜରାସନ୍ଧ ନୃପମଣି
ଋଷି ପଦ ସ୍ପର୍ଶି ପୁଣି ଭାଷିଲେ ବିନୟେ
କେଉଁ କର୍ମ ଅଛି ମୋର ସାଧନ ସକାଶେ
କହ ମୁନିବର ! ଦାସେ ପ୍ରକାଶି ସୁଦୟା
କରିଛି ମୁଁ ମହାଜୟ କରି ଶତ୍ରୁକ୍ଷୟ
ଧନ ରତନ ସମ୍ପଦେ ପୂରାଇଛିଁ ପୁର
ମୋ ବିକ୍ରମ ଦେଖି ଶତ୍ରୁ ସୀମା ଅତିକ୍ରମ
କରି ନ ପାରନ୍ତି ମନ୍ତ୍ରବନ୍ଧ ସର୍ପ ସରି
କୋଷ ଘୋଷ ବଳ ଦୁର୍ଗ ରାଷ୍ଟ୍ର ଆଦି କେତେ
ରହିଛି ହେ ଋଷି ! କିଛି ନାହିଁତ ଅଭାବ
ଶୁଣି କହିଲେ ନାରଦ ଶୁଣ ଆରେ ବାବା
ଯେଉଁ କର୍ମ ଅଛି ତୋର ପୂରଣ ସକାଶେ
ସ୍ମରଣ ଅଛିନା ତୋର ପୂର୍ବଜନ୍ମ କଥା
ସୁରନାଥ ଯେତେ ବ୍ୟଥା ଦେଲା ସୁରଲୋକେ
ବିସୋରିଛୁ କିରେ ନୃପ ହେତୁକର ଥରେ
ଶତ୍ରୁ ସାଧିବାର ବୀର କ୍ଷତ୍ରିୟର ଧର୍ମ
ଶୁଣି ଜରାସନ୍ଧ ଗୁଣି ପୂର୍ବଜନ୍ମ କଥା
ମଥା ହଲାଇ କହିଲା ଯଥାର୍ଥ ଗୋସାଇଁ
ବୃଷା ଦେଇଛନ୍ତି ମୋତେ ଦୁର୍ଦ୍ଦଶା ଅଶେଷ;
ମାତ୍ର ସେତ ସ୍ୱର୍ଗରାଜ୍ୟ ରାଜରାଜେଶ୍ୱର
ଖଟନ୍ତି ତ୍ରିଦିବବାସୀ ସର୍ବେ ପଦତଳେ
ଗ୍ରହ ଦିଗପାଳ ରୁଦ୍ର ବ୍ରହ୍ମା ଆଦି ଦେବେ
ତାଙ୍କର ସପକ୍ଷନିତ୍ୟ ନିଜେ ବଜ୍ର ହସ୍ତ
କି ବିଧିରେ ଶତ୍ରୁସାଧି ପାରିବ ଗୋସାଇଁ ।
କହନ୍ତୁ ଉପାୟ ଥିଲେ କୃପା ପରକାଶି;

କହିଲେ ନାରଦ ତହିଁପାଇଁ କିପାଁ ଦର
ଆଦର ମୋ'ଗୀର କହୁଅଛି ତୋର ହିତେ
ଉପାୟ ନିହିତ କର୍ମବଳର ସହାୟେ
ଅସାଧ୍ୟ ସାଧନା କରି ହୁଏ ଆରେ ବାବା
ମାତ୍ର ସାଧକର ଦୃଢ଼ ସାଧନା ବିହିତ
ବିଫଳ ନୁହେ ରେ କେବେ ଗାଢ଼ ଶ୍ରମଫଳ
କର ନୃପ ନୃପମେଧ ଯଜ୍ଞ ତନ୍ତ୍ର ମତେ
ତୁଁତ ସ୍ୱଭାବେ ତାନ୍ତ୍ରିକ ଶକ୍ତି ଶାକ୍ତମଣି
ଷୋଡ଼ଶ ଦିବସାବଧି ଜପ ମନ୍ତ୍ର ହୋମ
ତନ୍ତ୍ରଜ୍ଞ ଋଷିଙ୍କ ହାତେ ଅଭିଚାର ମତେ
ସାଧ ମାତ୍ର ସେଥି ମଧ୍ୟେ ଯେ ଯାହା ମାଗିବ
ଶୁଦ୍ଧମନେ ତାହା ଦେଉଥିବୁ ଥାଉ ମନେ
ଷୋଡ଼ଶ ଦିବସ ପୂର୍ଣ୍ଣେ ପୂର୍ଣ୍ଣାହୁତି କାଳେ
ଶିରଶ୍ଛେଦି ଷଣ୍ଣବତି-ସହସ୍ର ନରେଶ
ଇଷ୍ଟଦେବତାଙ୍କୁ ତୁଷ୍ଟକର ବଳି ଦେଇ
ତା ହେଲେରେ ଇନ୍ଦ୍ରପଦ ଅବଶ୍ୟ ଲଭିବୁ
ଇନ୍ଦ୍ରହେବା ଦେଖି ଇନ୍ଦ୍ର ମଜ୍ଜିବ ଲଜ୍ଜାରେ
କି ଅସାଧ୍ୟ ତୋତେ ଏହା ତୁଁତ ମହାବଳୀ
ବଜ୍ରଦୁର୍ଭେଦ୍ୟ ଶରୀର ଦୁର୍ବାସାଙ୍କ ବରେ
ପାଇଅଛୁ ଦେବୀ କରୁ ବିଶ୍ୱଜୟୀ ଖଡ୍ଗ
ପୁଣି ଶତ୍ରୁପଦାକାରୀ ଶତ୍ରୁଘାତୀ ଗଦା
ପାଶ ଲାଭକଲେ ଆଶା ହୋଇବ ସଫଳ
ତେଣୁ ତାଙ୍କ ପାଶେ ଯାଇ କର ଯା ଗୁହାରି
ଦିଅନ୍ତୁ ସେ ପାଶ ଆଶୁ ଆସ କରେ ବହି
ପଶୁବତ ତୋଷେ ବାନ୍ଧି ଆଣ ଯା ନରେଶେ
ମୋର ଆପ୍ତ ବାକ୍ୟ ମାତ୍ର ଗୁପ୍ତ କରିଥିବୁ
କାର୍ଯ୍ୟ ପ୍ରାପ୍ତ ହେଲେ ପଛେ କରିବୁ ନା ବ୍ୟକ୍ତ;
ଏତେ ଭାଷି ଅନ୍ତରୀକ୍ଷେ ଅନ୍ତର୍ଦ୍ଧାନ ଋଷି

ଜରାସନ୍ଧ ଫେରି ଆସି ବସିଲେ ଆସନେ
ମାନସ ଉଦ୍‌ବିଗ୍ନ ହେଉଁ ପାଶ ମାଗିବାକୁ
ଆଶୁ ସଭା ମଉଳାଇ ଦେଲେ ସେ ଦିବସ;
ହୋଇଛି ଶରଦ କାଳ ବିଶଦ ଆକାଶ
ସ୍ୱଚ୍ଛ ପୁଣି ଦଶଦିଶ ନୀରଦ ବିହୀନେ
ପଦବୀ କଦମ୍ୱ ଶୁଷ୍କ କାର୍କଶ୍ୟ ସରଜି
ବରଜି କଳଙ୍କ ତାଙ୍କ ସ୍ୱକୀୟ ସୁଅଙ୍କୁ
ସୁଖଦ କରାଇ ଅଛି ପଥିକର ପଦେ ।
ଦୁଃଖଦ ଥିଲା ସେ ଯେଣୁ ବରଷା ସମୟେ
ଶ୍ୟାମଳ ଶରୀର ଧରା ସର୍ବଶସ୍ୟେ ଭରା
କାଶକୁସୁମ ସୁହାସେ ହସେ ତେଣୁ ଧନୀ
ନଭେ ସୁଧାକର କରବାର ବରଷାଇ
ତୋଷୁଅଛି ଧରଣୀ ବାସିର ମନମୀନ
ଚକୋର ଚନ୍ଦ୍ରିକା ପାନେ ଆନନ୍ଦିତ ମନେ
ଚକୋରୀ ସଙ୍ଗତେ ଖାଉଅଛି ସୁସଙ୍ଗୀତ
ଉଇଁଛି ଅଗସ୍ତ୍ୟ ଋକ୍ଷ ଅବାଚୀ ଆକାଶେ
ସଳିଳ ନିର୍ମଳ କରି ଆଦର୍ଶ ସଦୃଶ
କରିଛି ଦ୍ୟୁମଣି ପୁଣି ଦକ୍ଷିଣେ ଗମନ
ହୋଇଛି ଉଲ୍ଲାସମୟୀ ଦିବା ବିଭାବରୀ
ଜ୍ୱଳୁଥିଲା ବିଶ୍ୱପ୍ରଦ୍ୟୋତକ ମହାଦୀପ
ସନ୍ଧ୍ୟାଚେଟୀ ଆସି ଧ୍ୱଂସେ ଗୋଟିଏ ଫୁତ୍କାରେ
କୃଷ୍ଣବସ୍ତ୍ରାବୃତା ଶ୍ୟାମା ସିନ୍ଦୂର ଚର୍ଚ୍ଚିତା
ତାରତାରକ ହୀରକ ରଞ୍ଜିତ କୁନ୍ତଳା
ସେ ସକାଶୁଁ ଦଶଦିଶ ଧରଣୀ ଆକାଶ
ସର୍ବ ଅନ୍ଧକାରମୟ ଦୃଶକୁ ନଦିଶି
ଚାହିଁ ତାର ଏରୀତିକି ପତ୍ରତ୍ରି ନିକର
ଧିକ ଧିକ ନାଦ ଘୋଷି ପଶେ ନୀଡ଼କ୍ରୋଡ଼େ
ଚକ୍ର ଲୋଚନ ପେଚକ ଚକ୍ର ତାହା ଚାହିଁ

ଚକ ଚକ ଚିକ୍କାରିଲେ ସୂଚାଇ ପ୍ରମୋଦ;
ଏହି ଅବସରେ ଜରାସନ୍ଧ ନରେଶ୍ୱର
ପୂଜା ଦ୍ରବ୍ୟ ଘେନି ବିଜେ ଦେବୀ ପାଶେ ଯାଇ
ସାଷ୍ଟାଙ୍ଗେ ପ୍ରଣମି ସମାରାଧି ବିଧି ମତେ
ନାରଦ କଥିତ ମତେ ପ୍ରାର୍ଥିଲେ ସେ ପାଶେ
ଶୁଣି ଦେବୀ ଭାଷିଲେ କେ ଦେଲା ଉପଦେଶ
ପାଶ ମାଗିବାକୁ ତୋତେ ଆରେ ଜରାସନ୍ଧ ।
ଅଜ୍ଞାତ ଯା, ବିଜ୍ଞାପ୍ତି ତା ଥିବେ ଦେବରଷି
ଆସୁଅଛି ମୋ ମାନସେ ମନାସିଛୁ ଯାହା
ନିଅ ପାଶ ପାଶେରଖ ମାତ୍ର ଶୁଣ ବୀର
ପାଶ ପାଇଁ ପାସୋର ହେବୁ ତୁଁ ଏସଂସାରୁ
ଏ ବ୍ରହ୍ମପାଶର ଗୁଣ ଶୁଣରେ ନୃରାଣ
ଅନିର୍ବାର ଅସ୍ତ୍ର ଏସେ ବିଶ୍ୱଜୟକାରୀ
ନାଗ ନର ସୁରାସୁର ରୁଦ୍ର ବ୍ରହ୍ମା ଆଦି
ଏହାର ହାବୋତୁଁ କେହି ନବର୍ତ୍ତନ୍ତି ଜଣେ
ନିଜେ କାଳ ଦେଖି ଏହି ପାଶ ତ୍ରାସ କରେ
ଆନ ଜନର ବନେ କି କହିବି ଆଉ
ଶୁମ୍ଭ ନିଶୁମ୍ଭ ନାଶନେ ମୋତେ ଏହି ଅସ୍ତ୍ର
ଦେଇଥିଲେ ପୂର୍ବେ ସର୍ବେ ସୁପର୍ବାଣ ମିଳି
ବ୍ରହ୍ମଅଂଶେ ସମ୍ଭୂତ ଯେ ତାକୁ ଏହି ପାଶ
ମାତ୍ର ନ ସ୍ପର୍ଶିବ କେବେ ପ୍ରୟୋଗିବୁ ଯେବେ
ଏପାଶ ତୋ ପାଶୁ ଯେବେ ଯିବ ଆନ ପାଶେ
ସେ ଦିନ ହେବୁରେ ଶକ୍ତିହୀନ ଥାଉ ମନେ;
ଏତେ ବଟି ଦେବୀ କାଢ଼ି ପାଶ ଅସ୍ତ୍ର ଗୋଟି
ଦେଲେ ଜରାସନ୍ଧ ହସ୍ତେ ବିହସ୍ତ ମାନସେ
ପାଶ ପାଇ ଜରାସନ୍ଧ ଅତି ତୋଷ ମନେ
ଫେରିଲେ ସ୍ୱବାସେ ନିଶାକାଳେ ଏକାହୋଇ
ଚିତ୍ତର ଭୟଟେ ନେତ୍ରେ ନୁହନ୍ତେ ସେ ରାତ୍ରେ

ନିଦ୍ରା ଉନ୍ନିଦ୍ରତା ବହି ପ୍ରହାଇଲେ ନିଶୀ
ପ୍ରତ୍ୟୁଷୁ ସ୍ୱନିତ୍ୟକର୍ମ ନିଃଶେଷି ନରେଶ
ଆମନ୍ତିଲେ ମନ୍ତ୍ରି ସେନାପତିଙ୍କି କଡ଼ିକି
ଆସି ପ୍ରବେଶି ବେନିହେଁ ନମସ୍କାରି ପଦେ
ପୁଛିଲେ ଭୋ ମଣିମା ! କି ଇଚ୍ଛା ଆଜ୍ଞାହେଉ
ଶୁଣି ଆଦେଶିଲେ ସାଜ ଷଡ଼ବିଧ ସେନା
ତ୍ରୟୋବିଂଶ ଅକ୍ଷୌହିଣୀ ଗଛି ବାଛି ଆଣି
କରିବି ମୁଁ ଦିଗ୍‌ବିଜୟ ଜିଣି ନୃପଚୟ
ରଖିବି ସଙ୍ଗତେ ମୋର ନିତ୍ୟ ଅନୁଗତେ
ଉଡ଼ାଇବି ବିଶ୍ୱ ମଧ୍ୟେ ଏକେଶ୍ୱର ବାନା
କରି ନାହିଁ ଯାହା କେହି ମହାମହାପତି
ନୃପବାଣୀ ଶୁଣି ଗୁଣଭୂଷଣ ସଚିବ
ପୁଣି ଚନ୍ଦ୍ରସେନ ସେନାପତି ବେନିଜଣ
ସଭାଜନ କରି ନୃପେ ସୈନ୍ୟ ଆୟୋଜନେ
ଯାଇ ଘୋଷଣା ଶୁଣାନ୍ତେ ସର୍ବେ ହେଲେ ଠୁଳ
ମଲ୍ଲ ମହାମଲ୍ଲ ବୀର ମହାବୀର ଗଣ
ଅସ୍ତ୍ରେ ଶସ୍ତ୍ରେ ସୁସଜ୍ଜିତ କାଳମୂର୍ତ୍ତି ଜାଣି
ଅଙ୍ଗେ ଉର୍ମିବର୍ମ କଟିତଟେ ସାରସନ
ରାଶି ଚକ୍ରାକୃତି ଦ୍ୟୁତି ବହେ ରତ୍ନବଶେ
ଲମ୍ବିତ ଆଜାନୁଲମ୍ବି କରବାଳ ତହିଁ
ଝଣତ୍କାରେ ବର୍ମେ ବାଜି ଯେହୁ ଥରେ ଥରେ
କରେ ଚାପ ରୋପ ପୁଣି ସ୍କନ୍ଧେ ବଦ୍ଧ ତୂଣ;
କାର ହସ୍ତେ ନ୍ୟସ୍ତ ନିଷ୍କୋଷିତ ତୀକ୍ଷ୍ଣ ଅସି
ନିସ୍ତଳ ଫଳକ ଦୋଳେ ପୃଷ୍ଠପଟେ ତାର
କରେ ଶୋଭେ କାର ଅବା ଖଡ୍ଗ ମହାଖଡ୍ଗ
ତୋମର ଗୁରୁଜ ଭଲ୍ଲ ଶେଲ ଶୂଳ ଶକ୍ତି;
ମଲ୍ଲ ହସ୍ତେ ନ୍ୟସ୍ତ ପୁଣି ଗଦା ମୁଦଗର
ପଟଟୀଶ କୋଟିଶ ଆଦି ଦୁର୍ଦ୍ଧାର ଆୟୁଧ

ଅଶ୍ୱାରୋହୀ ଗଜାରୋହୀ ରଥାରୋହୀ କେହି
ରାସଭ ସୈରିଭାରୋହୀ ହୋଇଛନ୍ତି କେତେ
ସିଂହନାଦେ ନାଦେ କେବା ଟଙ୍କାରଇ ଧନୁ
ଆସ୍ଫାଳେ ଉଲଙ୍ଗ ଅସି କେ ଦୁର୍ମଦ ଯୋଦ୍ଧା
ତିରଷ୍କାରେ ବର୍ଚ୍ଛାଫିଙ୍ଗି ଊର୍ଦ୍ଧ୍ୱେ କେଉଁ ବୀର
ପାତଇ ସ୍ୱକୀୟ ଛାଡ଼ି ବୀରମଦେ ମାତି
ପ୍ରବେଶିଲେ ଆଶୁ ଆସି ରାଜସିଂହଦ୍ୱାରେ
ଶିବିର ଶିବିକା ଖାଦ୍ୟ ପେୟ ଘେନି ସାଥେ
ବାଜେ ରଣବାଦ୍ୟ ଜଗଜ୍ଝମ୍ପ ବିଜିଘୋଷ
ଢୋଲ ଦମା ପଣବ ଗୋମୁଖ ଘୋରନାଦେ
ମନ୍ତ୍ରୀ ସେନାପତି ବେନି ନୃପତିଅନ୍ତିକେ
ସେନା ଆଗତ ବୃତ୍ତାନ୍ତ ନେଇ ନିବେଦନ୍ତେ
ପୁରୁ ବିଜେ କଲେ ନିଜେ ବୀରବେଶେ ସାଜି
ଦେବୀ ପଦେ ମନଲଗ୍ନ କରି ଶୁଭଲଗ୍ନେ
ଦେବୀଦତ୍ତ ଗଦାଖଡ୍ଗ ପାଶ ପାର୍ଶ୍ୱେ ରଖି
ଧନୁର୍ବାଣ ହସ୍ତେ ବସି ଅନିନ୍ଦ୍ୟସ୍ୟନ୍ଦନେ
ଚଳାଇଲେ ଥାଟ ବହି ହୃଦୟେ ମୁରାଟ୍
ମହା ଆଡ଼ମ୍ବରେ ଧୂଳି ଉଡ଼ାଇ ଅମ୍ବରେ,
ମାର୍ଗେ ତେଜି ପୂର୍ବନିତ ଅନୁଗତ ନୃପେ
ପ୍ରବେଶ ଭୂପାଳରାଜ୍ୟେ ବୀରତୂରବାଇ
ତହିଁ ନରନାଥ ମନମଥ ଚକ୍ରବର୍ତ୍ତୀ
ମନ୍ଥଇ ଯେ ପରଚକ୍ର ଭୀତଚକ୍ର ପେଷି
ତାକୁ ଜିଣି ରଣେ ରଖି ନେଲେ ନିଜ ପାଖେ
ଧନ ସମ୍ପଦ ସମ୍ପାଦି ଥିଲେ ଯା ଅଣାଇ,
ମିଥିଲା ଯେ ରାଜ୍ୟେ ଜନ୍ମି ମୈଥିଳୀ ସୁନ୍ଦରୀ
ପରକାଶି ଥିଲେ ବିଶ୍ୱେ ସତୀତ୍ୱର ଯଶଃ
ତହିଁ ରାଜା ଶଶାଙ୍କଶେଖରେ ରଣେ ଜିଣି
ରଖିଲେ ସହିତେ ଆଣି କୋଷ ରତ୍ନ ସହ;

ମଘମସ୍ୟ ରାଷ୍ଟ୍ରରାଟ ବିରାଟ ସୁମତି
ବିରାଟ କୀରତି ଯାର ପୟସ୍ୱିନୀ ଧେନୁ
ସାଧୁ ସୁନ୍ଦର ଶୁଣଙ୍କ ଧାର୍ମିକ ବିବେକୀ
ତିନିକାଳ ଦର୍ଶିନୀ ଯା ସୁଦେଷ୍ଣା ମହିଷୀ,
ଗାନ୍ଧାର ରାଜନ ନାମ ଯା ଗାନ୍ଧାରସେନ
ପଶା ଖେଳେ ବିଜୟୀ ଯେ ନିଖିଳ ଜଗତେ
ତପେ ବହୁବର୍ଷ ସେବି ଦ୍ୟୁତକାର ପଣେ
ଆଣିଲେ ଯେ ପଶାକାଠି ଗଙ୍ଗାଦେବୀଠାରୁ;
ମହ୍ଲାର-ବଲ୍ଲଭ କ୍ଷିତିଖ୍ୟାତ ସଂକୋଚିନ
କୀଚକାଦି ଶତପୁତ୍ର ଯାର ମହାମଲ୍ଲ
ବୈରାଷ୍ଟ୍ର ନୃପତି ଚାଟ ବିରାଟେ ଯେ ଅବା
ଦେଇଥିଲେ ମଘମସ୍ୟ ବେନିରାଜ୍ୟ ଜିଣି;
ପାଞ୍ଚାଳ ରାଜ୍ୟପାଳକ ଦ୍ରୁପଦ ରାଜନ
ଯେବା ଯଜ୍ଞ ସମ୍ଭୁଭବା ଦ୍ରୌପଦୀର ବିଭା
ଉପଲକ୍ଷେ ଲକ୍ଷେ ରାଜା ବରି ନିରାପଦେ
କରିଥିଲେ ସ୍ୱୟଂବର ସଭା ଲକ୍ଷ୍ୟଭେଦୀ;
ଲକ୍ଷ୍ମୀପୁର ଯେବା ଶୋଭେ କନକନିଳୟେ
କମଳାଳୟାର ବାସ ବୋଲି ତେଣୁ ଖ୍ୟାତ
ବରଷାଇ ଥିଲେ ସ୍ୱର୍ଣ୍ଣପିଣ୍ଡ ଆଖଣ୍ଡଳ
ସପ୍ତଦଣ୍ଡ ପରିଯନ୍ତେ ଯହିଁ ଲକ୍ଷ୍ମୀବାକ୍ୟେ
ତହିଁ ରାଜା ଚନ୍ଦ୍ରଧ୍ୱଜ ଶ୍ୱେତରାଜା ବଂଶୀ
ଯେ ଶ୍ୱେତରେ ଘୃତେ ଅଗ୍ନି ଲୁଦ୍‌ବୁଦୁ ବ୍ୟାଧି;
ତୁଙ୍ଗ ତୁରଙ୍ଗ ଗହଳି ଯେ ଡାହାଳ ଦେଶ
ମନୋହର ବନେ ଜନ୍ମ ଅଶ୍ୱିନୀକୁମାର
ସୁଜାଣେଶ୍ୱର କରନ୍ତି ତହିଁ ରାଜପଣ
ଧନବନ୍ତ ବଳବନ୍ତ ଅଶ୍ୱଦଳ ଯୋଗୁଁ
ନିଯୋଗାନ୍ତି ଶ୍ରେଷ୍ଠଅଶ୍ୱ ବୋଲି ରାଜାଗଣେ
ଅଶ୍ୱପତି ଖ୍ୟାତିସାର ଅଛି ଏହି କ୍ଷିତି,

ନେପାଳ ପାଳକ ଚନ୍ଦ୍ରଚୂଡ଼ ମହାବୀର
ଗିରିବର ଫୁଟେ ଯାର ତ୍ରିଶୂଳ ଆଘାତେ
ଜ୍ୟୋତିର୍ଲିଙ୍ଗ ଶିବସେବି ଲଭିଛନ୍ତି ତାହା
ବୀର ବୋଲି କାହାରିକି ନଗଣନ୍ତି ରଣେ;
ପାଣ୍ଡ୍ୟ ରାଜା ପଣ୍ଡୁ କରି ଉଗ୍ରତର ତପ
ଅଗ୍ନିଠାରୁ ପାଇଛନ୍ତି ସୁତୀକ୍ଷ୍ଣ କୁଠାର
ତାର ବଳେ ଯୁଦ୍ଧସ୍ଥଳେ ହୋଇ ପରଚଣ୍ଡ
ଦକ୍ଷିଣଖଣ୍ଡ ଯେ ଆଣିଅଛନ୍ତି, ଅଧୀନେ;
କଳିଙ୍ଗ କଳିଙ୍ଗସେନ ନୃପତିଗରିଷ୍ଠ
କପାଳମାଳିନୀ କାଳୀ ଅନୁଗ୍ରହୀ ଭକ୍ତ
ନବ ଲକ୍ଷ କୁଞ୍ଜରପୁଞ୍ଜର ଅଧିକାରୀ
ଲଭିଛନ୍ତି ଦେବୀକରୁ ବ୍ରହ୍ମଶିରା ଅସ୍ତ୍ର;
ବେଳାଭଲ ନରପାଳ ଯାର ଭିନ୍ଦିପାଳ
ଚୋଟକେ ପର୍ବତ ତୁଟେ ଛାର ଶତ୍ରୁଶିର
ମଣିମୁକ୍ତା ପ୍ରବାଳେ ଯା ଶୋଭଇ ସଦନ
ମଦନ ସମାନ ଯେବା ମଦନ ଯା ନାମ;
ବିଦର୍ଭ ଦେଶର ଶିବପାଳ ମହାପାଳ
ଜ୍ୱଳଇ ଯା ଭାଲ ଦେଶେ ଅନିଳନୟନ
ପ୍ରଶସ୍ତ ସୁହସ୍ତୀ ହସ୍ତୀ ସ୍କନ୍ଧ ବନ୍ଦନୀୟ
ମହା-ପରାକ୍ରମୀ ପୁଣି ଦୁର୍ଜୟ ସଂଗ୍ରାମେ;
ବ୍ରହ୍ମରାଜ କୃତବର୍ମା ଉର୍ମବର୍ମଧାରୀ
ଶ୍ୱେତ ଗଜପୃଷ୍ଠପୀଠ ରାଜନଗରିଷ୍ଠ
ଗରିଷ୍ଠ କୃପାଣପାଣି କାମକମନୀୟ
ସୂର୍ଯ୍ୟ ସମ ବୀର୍ଯ୍ୟ ଯାର ପ୍ରକାଶଇ ବିଶ୍ୱେ;
ପଦ୍ମଦଳ ରାଜ୍ୟରାଜା ପଦ୍ମକେଶରୀ
ଈଶ୍ୱର ପରମଭକ୍ତ ଶାନ୍ତକାନ୍ତ ମୂର୍ତ୍ତି
ଋଷି ବିପ୍ର ଅତିଥି ସତ୍କାରେ ନିତ୍ୟ ରତ
ବିଷ୍ଣୁ ମନ୍ଦିରେ ସୁନ୍ଦର ରାଜ୍ୟଗୋଟି ଯାର;

ମାଳବଦେଶର ନୃପ କୃପବ୍ରହ୍ମା ବୀର
ଅଶ୍ୱଥାମା ନାମେ କରିବର ଯେ ଆରୋହି
ମନ୍ତ୍ରେ ପରଚକ୍ରଚୟ ଚକ୍ରାକାରେ ଭ୍ରମି
ପ୍ରଚଣ୍ଡ କେଶରୀ ସମ ବିକ୍ରମ ପ୍ରକାଶି;
ଚେଦୀ ରାଜ୍ୟ ଯୁବରାଜ ନାମ ଶିଶୁପାଳ
ଶିଶୁ କାଳୁଁ କୃଷ୍ଣ ଦ୍ୱେଷୀ ପ୍ରଖ୍ୟାତ ଭୂତଳେ
ଅଶନି ସମାନ ତାର କଣ୍ଠତଟ ଆଣ୍ଡ
ମହାଶୂର ବୀର ଯାଇ ମହେଶ୍ୱରବର;
ସାକଲ୍ୟ ଦେଶର ନାଥ ଶାଲ୍ୱ ମହାରଥ
ଏକ ରଥେ ମନ୍ଥିପାରେ ଚରାଚର ପୃଥ୍ୱୀ
ମହାନ ମାୟାବୀ ପୁଣି ଲୌହଧନୁଷ୍ପାଣି
ବୀରକୁଳ କାଳାନ୍ତକ ସେବି କାଶୀବାସୀ;
ଚେଦୀ ରାଜ ଦମଘୋଷ ମହାଧନୁର୍ଦ୍ଧର
ବଜ୍ରଘୋଷ ଜାଣି ଯାର ଶିଞ୍ଜନୀ ନିଃସ୍ୱନ
ଯାର ଏକଶିରା ଶର ଲୌହଗିରିପୃଷ୍ଠ
ଭେଦି ଫୁଟି ବାହାରଇ ଏକଇ ପ୍ରହାରେ;
କୁଟକୁକୁଶଳ ଦନ୍ତବକ୍ର ନରରାଣ
ପାଇଅଛି ରୁଦ୍ରବାଣ ଯେହୁ ରୁଦ୍ରସେବି
ନାନାରଙ୍ଗ ସଙ୍ଗର ଜାଣଇ ମହାବଳୀ
ଏକ ବାଣେ ଭାଙ୍ଗିପାରେ ଯେବା ବୈରୀଟାଣ;
କୁଣ୍ଡିନ ନଗରନୃପ ରୁକ୍ମଣ ଯା ନାମ
ରୁକ୍ମଣୀର ଜ୍ୟେଷ୍ଠଭ୍ରାତା ଅନର୍ଗଳ ବଳୀ
ଗର୍ବେଶ୍ୱର ପଖେ ଯେବା କାହାକୁ ନ ଗଣେ
ଶୂରବୀର ସୁନ୍ଦର ଅଟଇ ପାଟବଂଶୀ;
ସୌରାଷ୍ଟ୍ର ରାଷ୍ଟ୍ରର କୃତକେଶରୀ ନରେଶ
ମହେଶଙ୍କ କରେ ଯେବା ସଂଗ୍ରାମେ ନିଃଶଙ୍କ;
ଶତ୍ରୁଅନ୍ତ କରେ ଯାଇ ତୀକ୍ଷ୍ଣଧାର କୁନ୍ତ
ଭୋଜରାଜ୍ୟ ରାଜା କୁନ୍ତଭୋଜ ବୀରବର୍ଯ୍ୟ;

କର୍ଣ୍ଣାଟ ମଙ୍ଗଳସେନ ମଙ୍ଗଳାସେବକ
ଲଭି ମହାଶକ୍ତି ଯେବା ମହା ଶକ୍ତିଶାଳୀ;
ମହୀନ୍ଦ୍ର-ମହୀନ୍ଦ୍ର, ଯାର ନାମ ହୃଷୀକେଶ '
ହୃଷୀକେଶ ତୋଷି ରାଜ୍ୟ କରେ ନିରାପଦେ;
ମଧୁବନ ଦ୍ୟୁମସ୍ଥେନ ଉଦ୍ୟାନ ବିହାରୀ
ଫଳ ପୁଷ୍ପେ ଶୋଭିତ ଯା ଶୁଭ ରାଜ୍ୟଗୋଟି;
ମଧୁମାତଙ୍ଗ ଦେଶର ଅନିଳକେଶବ
ମତ୍ତମାତଙ୍ଗବୃନ୍ଦେ ଯା ବାହିନୀ ଗଠିତ;
ମରହଟ୍ଟ ରାଷ୍ଟ୍ରପତି ମାଣିକ୍ୟକେଶରୀ
ଅଶୀ କେଶରିର ବଳ ବହେ ଯେ ଶରୀରେ;
ଢଳ ତରଙ୍ଗ ରାଜ୍ୟର ଅନଙ୍ଗ ପନ୍ନଗ
ଭଙ୍ଗ କରେ ଶତ୍ରୁଦର୍ପ ଯେବା ବ୍ରହ୍ମଶରେ;
ଏହି ରାଜାବୃନ୍ଦ ଜରାସନ୍ଧ ସଙ୍ଗେ ଦ୍ୱନ୍ଦ୍ୱି
ହାରି ବନ୍ଦିହୋଇ ଆସି ରହିଲେ ସହିତେ
ଶସ୍ୟ କୋଷ ଧନରତ୍ନ ସଞ୍ଚିଥିଲେ ଯାହା
ଗିରିବ୍ରଜନାହା ତାହା ଅଣାଇଲେ ବଳେ
ଏରଡ଼ଙ୍ଗ ଭାନୁମତ, ଚୂଡ଼ଙ୍ଗ ବରୁଣ
ଉଡ଼ଙ୍ଗର ସୋମନାଥ, ଭଙ୍ଗ ବ୍ୟୋମକେଶ,
ବଙ୍ଗର ବଙ୍ଗାଳସେନ, ତ୍ରୈଲଙ୍ଗ ତ୍ରିଲିଙ୍ଗ,
ମାନଭଙ୍ଗ ରଙ୍ଗନାଥ, ସୁଡ଼ଙ୍ଗ ସୁଧନ୍ୱା,
ଚଉପୁର ଚନ୍ଦ୍ରଚୂଡ଼, ଚୋଖାର ନୈର୍ଋତ,
ଭାଖାର ଦରଦସେନ, କର୍ଣ୍ଣିକାର ଶିବ,
ଜ୍ଞାନନଗ୍ର କୁଳଚନ୍ଦ୍ର, ହିରଣ୍ୟ ମାଧବ,
ଦୁନଭିର ବୀରବାହୁ, କାରବୀ ଭୂମନ୍ୟୁ,
ଯମୁନାର ମହେଶ୍ୱର, ପ୍ରାଞ୍ଜଳ ଗୋପାଳ,
କଳପୀ ଚାଣୁରସେନ, ଅମ୍ବୁ ବିଶ୍ୱେଶ୍ୱର,
ଏହି ମହାତେଜା ରାଜା ମହାରାଜାଗଣ
ଶରଣ ପଶିଲେ ବନାରଣେ ପାଣତ୍ରାସେ

ଏ ବାହାରେ ଚେର ଚୋଳ ବୃନ୍ଦାର୍କ ବିରାଳ
କଉନିକ ସଉନିକ ସୌଭାଗ୍ୟ ମଳୟ
ଏକଚକ୍ରା ଶିବପୁର ଏକାଶ୍ୱର ଚକ୍ର
ନୀଳେନ୍ଦୀ କର୍ଣ୍ଣମଣ୍ଡଳ ମନୋହରପୁର
ଉଡ୍ର ଉତ୍କଳ କାଶ୍ମୀର ଭୋଟ ଗୁର୍ଜରାଟ
ଏଆଦି ରାଜ୍ୟର ଈଶେ ବଶବର୍ତ୍ତୀ ହୋଇ
ଧନ ଭଣ୍ଡାର ଅଣାଇ ରହିଲେ ସହିତେ
ନୀରଦହୀନ ଶରଦ କାଳେ ଅଭିଯାନ
କରି ଫେରିଲେ ବସନ୍ତ ଅନ୍ତେ ରାଜଧାନୀ
ଅଷ୍ଟମାସେ ଷଟ୍‌ନବତି ସହସ୍ର ନରେଶ
ପରକାଶି ପଉରଷ ବନ୍ଦୀ କଲେ ହେଳେ
ଏକେ ତାଙ୍କ ବଜ୍ରଅଙ୍ଗ ଦୁର୍ବାସାଙ୍କ ବରେ
ଦୁଯେ ପାଇଛନ୍ତି ଦେବୀକରୁ ଗଦାଖଡ୍ଗ
ତାପରେ ପାଇଲେ କାଳତ୍ରାସକାରୀ ପାଶ
ବିଶ୍ୱଜୟ କରିବାର ତାଙ୍କୁ କେତେ ମାତ୍ର
ନାରଦ କଥିତ ମତେ ହେତୁ ଗୁପ୍ତ କରି
କୈତବେ ସ୍ୱମିତ୍ରଭାବେ ରଖିଲେ ରାଜାଙ୍କୁ
ରାଜୋଚିତ ବାସ ଗ୍ରାସ ବାସ ଭୂଷା ଦେଇ
ନାନାରଙ୍ଗେ ମୋହି ଚିତ୍ତ ସଙ୍ଗେ ସଙ୍ଗ କରି
ଦୁଷ୍ଟ ରାଜାମାନେ ହୃଷ୍ଟ ଦୁଷ୍ଟସଙ୍ଗ ଲଭି
ଶିଷ୍ଟ ରାଜାବୃନ୍ଦ କ୍ଲିଷ୍ଟ ଲଭିଲେ ଅପାର
ଘୋର ଭୟଙ୍କର ଅଟେ ଖଳର କୌଶଳ
ବାଣୀରେ କରଇ ବଶ ଜାଣି ନୁହେ ତାହା

ଇତିଶ୍ରୀ ଜରାସନ୍ଧବଧ କାବ୍ୟେ ମହାବୀର ଜରାସନ୍ଧ
ଷଟ୍ ନବତି ସହସ୍ରରାଜା ବନ୍ଦୀକରଣେ
ନାମ **ନବମଃ ସର୍ଗଃ** ।

—

## ଦଶମ ସର୍ଗ

ଏଣେ କଂସ ଧ୍ୱଂସ ସାଧି ତୋଷେ ହୃଷୀକେଶ
ମଥୁରାରେ ଅବସ୍ଥିତ ଯାଦବଙ୍କ ସାଥେ
ଅଜା ଉଗ୍ରସେନେ ପୁଣି ରାଜ୍ୟେ କରି ରାଜା
ପୂଜା କରାଇଲେ ସର୍ବ ଯାଦବ ସମାଜେ
ଯେହ୍ନେ ବୃନ୍ଦାରକବୃନ୍ଦେ ପୂଜିତ ଦେବେନ୍ଦ୍ର
କଂସ ଅନୁଗତେ ଥିଲେ ଯେତେ ନରରାଣ
ଚରଣେ ଖଟିଲେ କୃଷ୍ଣତ୍ରାସେ ପୂର୍ବପରି
ତେଣୁ ସ୍ନେହଭୟ ରଖି ରାମକୃଷ୍ଣ ପରେ
ଚଳୁଥିଲେ ଉଗ୍ରସେନ ବେନିଙ୍କ ବଚନେ
କେତେଦିନ ଅନ୍ତେ ପୁଣି କଂସ ପୁତ୍ରଦ୍ୱୟେ
ହଂସକ ଡିମ୍ଭକ ନାମ ରଖେ ଯାର କଂସ
ନାବକେଳି ଛଳେ ନେଇ ଯମୁନାର ଜଳେ
ନାଶିଲେ କୌଶଳେ କୃଷ୍ଣ ଦୁଷ୍କର୍ମା ଦେଖି
ପତିପୁତ୍ର ହତ ହେତୁ ବିଧୁରା ଅଧୀର
କଂସ ପାଟରାଣୀ ବେନି ସେ ହେତି ପ୍ରହେତି
ଗୁରୁଶୋକେ ଘୋର ଦୁଃଖେ ଗ୍ରାସ ହାସ ବର୍ଜି
ରହିଥିଲେ, ନିର୍ଜ୍ଜବାସେ ବିରସ ମାନସେ
ତା'ଜାଣି ନାରଦଋଷି ଆସି ମଧୁପୁରେ
ନୀରଦକେଶୀଙ୍କି ଶିକ୍ଷା ଦେଲେ ଏହି ଭାବେ
ଆଗୋ ବେନି ସୁଲୋଚନେ ! ତୁମ୍ଭ ଦୁଃଖ ଦେଖି
ଆଖିରୁ ମୋ ଲୋତକ ଖସଇ ହୋଇ ରଷି
ରୂପବତି ଗୁଣବତି ଭାଗ୍ୟବତି ପଣେ
ଜଣେ ହେଁ ନଥିଲେ ନାରୀ ତୁମ୍ଭପରି ଯେଣୁ
ଶୂର ବୀର ପ୍ରତାପ୍ୟ କଂସର ପାଟରାଣୀ
ହୋଇ ଗୋ ବହିଲ ଏବେ ବିଧବା ଦଶାକୁ

ପୁଣିଗୋ ବାଳୁତ ବେନି ତନୟ ହରାଇ
ହାୟ କି ଦୁର୍ଦ୍ଦଶା ଦାଉ ଭୋଗୁଛ ବେନିହେଁ •
କଂସ ସପକ୍ଷ ମୁଁ ସିଦା ତୁମ୍ଭଙ୍କୁଂତ ଜଣା
ତେଣୁ ଥରେ ଥରେ ଏଥେ ଆସିଥାଏଁ ମୁହିଁ
ଆଉ ଏଥେ ଆସିବାକୁ ନ କଲାରେ ବିଧି
ତୁମ୍ଭ ଅଧୀରତା ଦେଖି ଆସିଗଲି ସିନା
ରାମ କୃଷ୍ଣ ହାତେ ତୁମ୍ଭ ପତିପୁତ୍ର ହତ
କହ ଯାଇ ପିତା ଆଗେ ସାଧୁ ସେ ବଇରୀ
ତୁମ୍ଭ ପିତା ଜରାସନ୍ଧ ଅନର୍ଗଳବଳୀ
ସୁରାସୁର ଭୟ ଯାକୁ କରନ୍ତି ସଂଗ୍ରାମେ
ଭାରତେ ଦୁର୍ଦ୍ଧାରମଲ୍ଲ ବଜ୍ରସମ ହିଆ
ମୁଥେ ମାରି ଚୂରେ ଗିରିତୁଙ୍ଗ ଶୃଙ୍ଗମାନ
ସେ ନିକି ସହିବ ଏହା ହୋଇ ବୀରବର
ଉଛୁର ନ କରି କହ ପିତାର ଛାମୁରେ
ଏତେ ଭାଷି ଦେବଋଷି ବାହାରି ନବରୁ
ହୋଇଗଲେ ମନୋଯାନେ ଗଗନେ ମଗନ
ପଶିଲାରେ କୁଟକୀଟ ବେନି ହୃକ୍ରମଳେ
ଶୋକ ଦୁଃଖ ବେନି ବାଢ଼ ବସ୍ତାରି ପ୍ରଗାଢ଼େ
କାଟିଲା ନିରାଟେ ରହି କୋମଳ ଅନ୍ତର
ସ୍ଥାପି ତହିଂ ରାଗ ଦ୍ୱେଷ ସୁବିଷମ ବିଷ
ଋଷି ଆପ୍ତ ବାକ୍ୟେ ମାତି କ୍ଷିପ୍ତ ପ୍ରାୟ ହୋଇ
ମତି ଲିପ୍ତ କଲେ ଦୁହେଁ ବୈରୀ ନିର୍ଯ୍ୟାତନେ
ବେନି ଦିନ ଅନ୍ତେ ପୁଣି ସେହି ବେନିରାଣୀ
ନାରଦଯତି ଭକତି ଚିତ୍ତମଧ୍ୟେ ଚିନ୍ତି
ମଥା କରି ଉଷ୍ଣ କାହା କଥାକୁ ନ ମାନି
ବାହାରିଲେ ମଥୁରାରୁ ରଥାରୋହୀ ହୋଇ
ପରିବାରୀ ସଙ୍ଗେଧରି ମଗଧାଭିମୁଖେ
ପତିପୁତ୍ର ହତ ଦୁଃଖେ ସ୍ୱହୃଦୟଘାରି;

ହୋଇଛି ଗ୍ରୀଷମକାଳ ବିଷମ ସମୟ
ପ୍ରଚଣ୍ଡ ମାର୍ତ୍ତଣ୍ଡ ତାପେ ତପ୍ତ ଧରାଦେହ
ବହୁଛି ଉତ୍ତପ୍ତାନିଳ ସର ସର ସ୍ୱନେ
ବର୍ଷୁଛି ଅନଳକଣା ରଜୋରାଶି ବ୍ୟାଜେ
ବିସ୍ତୃତୁଛି ଆବର୍ଜନାଧ୍ୱନୀ ରଜଃସ୍ତମ୍ଭ
ଚକ୍ରାକାରେ ଭ୍ରମି କେବେ ଚମତ୍କାର ଭାବେ
ଦହୁଛି ନିଦାଘ ଦେହ ଘର୍ମ ଉପୁଜାଇ
ଲୋଡୁଛି ବିକଳେ ଦେହୀ ସ୍ନିଗ୍ଧ ଜଳସ୍ଥଳ
ଶୁଭୁଛି ଘନପଲ୍ଲବ ପାଦପ ଚୂଳରୁ
ବେଳେ ବେଳେ ଫୁଲଚୁହୀ ଶୁଷ୍କକଣ୍ଠ ସ୍ୱର
ଭ୍ରମାଉଛି ମୃଗତୃଷା ପ୍ରାନ୍ତର ଭୂମିରେ
ପାନ୍ଥେ ମୃଗଯୂଥେ, ଥୋଇ ଚିତ୍ତେ ପାଥଭ୍ରମ
ମଧ୍ୟାକାଶୁ ଖସିଛି ସେ ଦିନ ଦିନନାଥ
ଗିରିବ୍ରଜପୁରରାଜ ବିଜୟ ଆସ୍ଥାନେ
ଗ୍ରୀଷ୍ମକାଳୋଚିତ ବାସଭୂଷଣେ ଭାସ୍ୱର
ବିଜନ୍ତି ବ୍ୟଜନ ଭୃତ୍ୟଜନ ପାଶେ ରହି
କୁସୁମେ ରଚିତ ଯେବା ଚନ୍ଦନେ ଚର୍ଚ୍ଚିତ
ତୋଳନ୍ତି କୁସୁମଛତ୍ର କେତେ ହୋଇ ଉଭା।
କୁସୁମଚାମର କେତେ ଢ଼ାଳନ୍ତି ଅଗ୍ରତେ
ବନ୍ଦୀ ଭୂପବୃନ୍ଦ ତହିଁ ସ୍ଥିତ ଦିବ୍ୟବେଶେ
ଏକତ୍ରିତ ପାତ୍ର ମିତ୍ର ଅମତ୍ୟାଦି ପୁଣ
ତେଣୁ ଦେବଗଣାବୃତ ସଚୀକାନ୍ତ ବତ
ଦିଶନ୍ତି କାନ୍ତ ସେ ବଳବନ୍ତ ଜରାସନ୍ଧ
ଏ ସମୟେ ଚାରି ଆସି ଦେଲା ସମାଚାର
ନୃପ ପଦେ ନମି କରଯୋଡ଼ି ନମ୍ରଭାବେ
ଭୋଦେବ ! ତବ ଦୁହିତା ସେ ହେତି ପ୍ରହେତି
ପତି ପୁତ୍ର ହତ ହେତୁ ଅତି ଶୋକାତୁରା
ଆସୁଛନ୍ତି ପୁର ଅଭିମୁଖେ ଦୁଃଖ ସ୍ମରି

ରୋଦନ ଶବଦେ ଶଙ୍ଖବନ୍ଧ ଉଛୁଳାଇ
କେଶପାଶ ଅସ୍ତବ୍ୟସ୍ତେ ଅଶ୍ରୁପୂର୍ଣ୍ଣ ନେତ୍ରେ
ସୁନ୍ଦର ସିନ୍ଦୂର ବିନ୍ଦୁ ରହିତ ଲଲାଟେ
କଙ୍କଣ ବିହୀନ ହସ୍ତେ ଶ୍ୱେତବସ୍ତ୍ର ଗାତ୍ରେ
ବସି ଧ୍ୱଜହୀନ ରଥେ ଭୂଷଣ ବିହୀନେ;
ଶୁଣି ତ୍ରସ୍ତ ବ୍ୟସ୍ତେ ରାଜା ସଭା ମଉଳାଇ
ସ୍ୱପୁର ଭିତରେ ତରତରେ ଜଲେ ବିଜେ
ସିଂହଦ୍ୱାରେ ରଥଥୋଇ ପୁରେ ଯାଉଁ ଦୁହେଁ
ଭେଟିଲେ ସେ ନୃପନାଥ ସେ ଦୁହିଙ୍କୁ ପଥେ
ପିତା ପଦେ ପଡ଼ି ତେଣୁ ରୋଦେ ବେନିସୁତା
ଅଶ୍ରୁ ବରଷାଇ ବର୍ଷା ସମେ ଚାରିନେତ୍ରୁଁ
ପିତା ପଦ ପଖାଳନ୍ତେ ଦୁଃଖ ଉଷ୍ଣ-ନୀରେ
ତହିଁ ଜାଣି ଗଲେ ରାଜା ଆତ୍ମଜାଙ୍କ ବ୍ୟଥା
ବେନିଙ୍କି ସମାର୍ଜି ଆଜୀ କରେ ତଦୁତ୍ତାରେ
ଆଶ୍ୱାସନା ଦେଇ ବାକ୍ୟେ ବିହିଲେ ସାନ୍ତ୍ୱନା
କହିଲେ ହେଲା କି କହ ନ ସହେ ମୋ ଦେହ
ନାଶିଛି ଆସି କେ ମୋର ନପ୍ତା ଜାମାତାଙ୍କୁ
ଶୁଣି ଭାଷେ ବେନିସୁତା, ନନ୍ଦବେନିସୁତ
ରାମକୃଷ୍ଣ ନାମ ଯାର ପତିପୁତ୍ର ନାଶେ
ଶୁଣି ରାଗେ ଜର ଜର ହୋଇ ନିଶସ୍ପର୍ଶି
ଭାଷିଲେ ସେ ଗର ଗର ଭାଷେ କି ଆଶ୍ଚର୍ଯ୍ୟ
ଶଶକ ବିନାଶେ ପୁଣି ଚଣ୍ଡକେଶରିକି ?
ମନ୍ଦ ନନ୍ଦଗଉଡ଼ର ନନ୍ଦନଙ୍କ ଠାରେ,
ଏଡ଼େ ପରାକ୍ରମ ଅବା ଆସିଲା କେଉଁଠୁଁ
ଦେଖିବା ଦେଖିବା ଆଛା ବିଛାର ମନ୍ତର
ନ ଜାଣି ଦିଅନ୍ତି ହାତ କାଳବ୍ୟାଳ ମୁଖେ
ବିପଦ ନ ଚିନ୍ତି ପଦ କ୍ଷେପନ୍ତି ଅନଳେ
କୁଣ୍ଠାନ୍ତିରେ ଦଗ୍ଧଲୌହପିଣ୍ଡ ନିଜ ପିଣ୍ଡେ ?

ଭୋଜବଂଶ ଅବତଂସ କଂସ ମୋ ଜାମାତା
ସୁରାସୁର ବିଜୟୀରେ ଦୁର୍ଜ୍ଜୟ ସଂଗ୍ରାମେ
ଶୂରବୀର ପ୍ରତାପୀ ପୁଣି ସେ ରଣରଙ୍ଗା
ଧନୁର୍ବ୍ବିଦ୍ୟା ବିଶାରଦ ଦର୍ପୀ ଦର୍ପହନ୍ତୀ
ଯାର କୋପ ଦୃଷ୍ଟିମାତ୍ରେ ଏହି ମର୍ତ୍ତ୍ୟସୃଷ୍ଟି
ଚକିତ ଭଜଇ ଯେହ୍ନେ ବାଘ ଆଗେ ଛାଗ
ପୁଣି ଦୁର୍ନିବାର ଯାର ଶ୍ରେଷ୍ଠ ଅଷ୍ଟମଲ୍ଲ
କରି ଯେ ପାରନ୍ତି ଏକେ ଏକେ ବିଶ୍ୱ ଧ୍ୱଂସ
ଧ୍ୱଂସିଲେ କି ରୂପେ ତାଙ୍କୁ ନନ୍ଦସୁତବେନି
ଘେନି କି କୌଶଳବଳ ଅସମ୍ଭବ କଥା
ଦେଖୁଛୁଁ ନୋହିଛିଁ ଭାନୁ ପଶ୍ଚିମେ ଉଦୟ
ନୋହିଛି ଶୈଳସାନୁରେ ପଙ୍କଜ ବିକାଶ
ନୋହିଛି ସୁଧାଂଶୁ କରୁ ଅଗ୍ନି ନିଃସରଣ
ନୋହିଛି ଦହନଦେହ ସ୍ପରଶ ଶୀତଳ
ତେବେ କି ଭାବେ ହେଲା ଏ ଅଘଟ ଘଟନ
ଅହୋ ସତ୍ୟେ ତୋଳା ହେଲା ଆକାଶ କୁସୁମ;
ଏତେ ଭାଷି ରୋଷେ କରି ରକ୍ତବର୍ଣ୍ଣ ନେତ୍ର
ଆମନ୍ତ୍ରିଲେ ମନ୍ତ୍ରୀ ସେନାପତିଙ୍କି କତିକି
କହିଲେ ସାଜରେ ଆଜ ଚତୁରଙ୍ଗ ସେନା
ବଛା ତ୍ରୟୋବିଂଶ ଅକ୍ଷୌହିଣୀ ଆସ୍ଥ ଯେବା
ପୁଣି ସେନା ଷଣ୍ଣବତି ସହସ୍ର ଭୂପଙ୍କ
ସଙ୍ଗତେ ଯାଅନ୍ତୁ ପୁଣି ଯାଆନ୍ତୁ ରାଜା ଏ
ଯାଇ ମଥୁରାକୁ ବେଢ଼ି ସମୂଳେ ଉଜାଡ଼ି
ଯଗଭଗ୍ନୀ ଯମୁନାର ଗର୍ଭେ ଅଜାଡ଼ିବା
ରାତ ନନ୍ଦଗଉଡ଼ର ମୂଢ଼ ପୁତ୍ର ଦ୍ୱୟେ
ଦୟା ଏଡ଼ି ବେଢ଼ି ଦେଇ ଆଣିବା ଏପୁରେ
ଭର୍ତ୍ତୃହୀନା ପୁତ୍ରହୀନା ମୋର ବେନି ପୁତ୍ରୀ
ପତିପୁତ୍ରହନ୍ତା ଦେଖି ଚିନ୍ତା ପାସୋରନ୍ତୁ

ଯାଅ ନାନାବିଧ ରଣ ପ୍ରହରଣ ମାନ
ଆହରଣ କର ଅସ୍ତ୍ରାଗାରୁ ଗଛିବାଛି
ଶିବିର ଶିବିକା ଯାନ ସ୍ୟନ୍ଦନ ପ୍ରଭୃତି
ନଭାବରେ ଘେନିଯାଅ ପ୍ରଚୁର ଭାବରେ
ସଙ୍ଗେ ଚତୁର୍ବିଧ ଖାଦ୍ୟ ମଧୁ ସାଧୁ ସହ
ଘେନିଯାଅ ଶକଟ ଘୋଟକ ଉଷ୍ଟ୍ର ପରେ
ଖନିତ୍ର କୁଦାଳ କାଙ୍କ ଶାବେଳି କୁଠାର
ନେଇଥାଅ ସଙ୍ଗେ ପୁଣି ଭୃତ୍ୟଜନ ଆଣି
ଅସ୍ତ୍ର ଚିକିତ୍ସକ, ଶସ୍ତ୍ରମାର୍ଜକ, ପାଚକ,
ଅହରହଃ ରହିଥାନ୍ତୁ ସେନାଙ୍କର ସଙ୍ଗେ
ଆଜ୍ଞାପାଇ ଦୂହେଁ ଯାଇ ଘୋଷଣା ଶୁଣାଇ
ସାଗ୍ରହେ ସଂଗ୍ରହ କଲେ ନିଜରାଜ୍ୟ ସେନା
ପୁଣି ସେନା ଷଣ୍ଣବତି ସହସ୍ର ଭୂପଙ୍କ
ଜଣେ ଜଣକର ଦଶ ବିଂଶ ଅକ୍ଷୌହିଣୀ
ତଦ୍ଦୂତାରେ ସର୍ବସେନା ଘେନି ସେନାପତି
ଯାଇ ଜଣାଇଲେ ଗର୍ବଅନ୍ଧ ଜରାସନ୍ଧେ
ଭୋ ମଣିମା ! ଚତୁରଙ୍ଗ ସେନା ଉପଗତ
ସିଂହ ଦ୍ୱାରେ ଅକଳିତ ଅକୂପାର ପ୍ରାୟେ
ଆସି ମିଶିଛନ୍ତି, ପୁଣି ସର୍ବ ନରମଣି
ତାଙ୍କ ମେଳେ ନିଜ ନିଜ ସୈନ୍ୟବଳ ଧରି
ଦମଘୋଷ ଦନ୍ତବକ୍ର ଶାଲ୍ୱ ଶିଶୁପାଳ
କୃତଛେଗୀ କୃତକର୍ମା ସୁବାହୁ ବାହୁକ
ଭଗଦତ୍ତ ଦେବଦତ୍ତ ସୁଧନ୍ୱା ସୁରଥ
ଚାଣୁର କଳିଙ୍ଗସେନ ତ୍ରିଲିଙ୍ଗ ରୁକ୍ମଣ
ବୀରଘଣ୍ଟ କାଳଘଣ୍ଟ ଯମଘଣ୍ଟ ଶିବ
ଦରଦସେନ ପ୍ରସେନ ମନମଥ ଆଦି
ସର୍ବେ ମହାରଥ ପୁଣି ସଂଗ୍ରାମେ ସମର୍ଥ
ଏଥିକି ଯା ଉଚିତ ସୁଚିତ୍ତେ ଆଦେଶନ୍ତୁ,

ଶୁଣି ସେ ଭାଷିଲେ ଥାଟ ଚଳାଅ ତଡ଼ତି
ମଥୁରା କତିକି ମାର୍ଗ ମାର୍ଗଣ କରାଇ
ଆଜ ମୁହିଁ ରହି ପୁରେ ଦେବୀଙ୍କ ଛାମୁରେ
ଜଣାଇ ଭେଟିବି ବାଟେ କାଲି ପ୍ରାତେ ଥାଟେ
ଯାଅ ଚାଣ୍ଡେ ଦଣ୍ଡେ ମାତ୍ର ନକର ବିଳମ୍ବ
ଆଜ୍ଞା ଅବଧାରି ଚନ୍ଦ୍ରସେନ ସେନାପତି
ଚଳାଇଲେ ସେନା ବନ୍ଦୀ ଭୂପବୃନ୍ଦ ସଙ୍ଗେ;
ତେଣେ ଶୋଭାର ଛଟକ ମଥୁରା କଟକେ
ଯାଦବ ସଭା କ୍ଷୀରାବ୍ଧି ମଧ୍ୟେ ବିରାଜିତ
ତିମିଙ୍ଗିଳ ମହାରାଜା ଉଗ୍ର ଉଗ୍ରସେନ
ଯାଦୀବର ଯାଦବରେ ହୋଇ ସୁବେଷ୍ଟିତ
ନାନାବାଦ୍ୟନାଦ ତହିଁ ହୁଏ ସିନ୍ଧୁଘୋଷ
ଧ୍ୱଜଛତ୍ର ଚାମର ବିରାଜେ ଫେନପୁଞ୍ଜ
ବସୁଦେବ ଶକ୍ରାଜିତ ଅକ୍ରୂର ଉଦ୍ଧବ
ସୁଦେବ ସୁମିତ୍ର ଶତ୍ରୁଜିତ ଅଭିମନ୍ୟୁ
ସୁରଥ ସହସ୍ରାଜିତ କାଳିଞ୍ଜ କଞ୍ଚନ
ଅନାଦୃଷ୍ଟ ବୀରଭାନୁ ବୃହଦ୍ଧ୍ୱଜ ମିତ୍ର
କୃତବର୍ମା ବୃଷପର୍ବା ଚନ୍ଦ୍ରାଜିତାଜିତ
ସାତ୍ୟକୀ ପ୍ରସନ୍ନାଜିତ ଶତଧନୁ ଆଦି
ରାଜିତ ରତନ ରାଜି ତାରତର ତେଜେ
ପୁଣି ଚାରୁଚନ୍ଦ୍ର ପାରିଜାତ ତରୁ ତହିଁ
ଅପରୂପ ଅଭିରାମ ରାମକୃଷ୍ଣ ବେନି;
ସଭାରେ ପଡ଼ିଛି ବେନି ଗୃହଲକ୍ଷ୍ମୀ କଥା
ଅଲକ୍ଷ୍ମୀ ସ୍ୱଭାବ ଭାବି ସର୍ବଥା ତାଙ୍କର
ସୁଦେବ ଭାଷିଲେ ଭୋଜ ନିଷ୍କଳଙ୍କ ବଂଶେ
କଳଙ୍କ କାଳିମା ଆଣି ଲଗାଇଲେ ଏବେ
କଂସ ବେନି ପାଟରାଣୀ ସେ ହେତି ପ୍ରହେତି
ପିତ୍ରାବାସେ ଯାଇ ଗୁରୁଗୀର ବଳେ ଏଡ଼ି
ଅବାରିତା ବାରିପୂର୍ଣ୍ଣ ସ୍ରୋତସ୍ୱିନୀ ଯଥା

ସୁମିତ୍ର ଭାଷିଲେ ମିତ୍ର କଳଙ୍କ କେବଳ
ନୁହେଁ ବିଷମୟ ଫଳ ଫଳିବ ସେଥିରେ
ରାମକଷ୍ଣ ବେନି ନାମେ ଶୁଭେ ଲୋକବାଦ
କଂସ ଧ୍ୱଂସନର ଧୂମକେତୁ ହେତୁ ନେଇ
ଏକଥା କହନ୍ତି ଯେବେ ଅନାଥା ରାଣୀଏ
ଗର୍ବଅନ୍ଧ ଦୁଷ୍ଟ ଜରାସନ୍ଧ ପିତା ଆଗେ
ତେବେ କିରେ ସହଜେ ସେ ସହିବ ସେ କଥା
ନିଶ୍ଚେ ରୋଷ ହେବ ତାର ମଧୁରା ଧର୍ଷଣେ
ରାଣୀ ରାଣ୍ଡୀ ଉଭୟଙ୍କ ଚଣ୍ଡିକା ସ୍ୱଭାବ
ଭାବୀ କି କିହେବ ଭାବ ବେନିତ ଏକତ୍ର
ଶୁଣି କହେ ସାତ୍ୟକର ହେ ସୁମିତ୍ରା ଯା କହ
ସତ୍ୟକଥା ବୋଲି ଆଭାସୁଛି ମୋ ମତିକି
ଏ ସମୟେ ବାର୍ତ୍ତାବହେ କୁବାର୍ତ୍ତା ମନ୍ଦରେ
ମନ୍ଥିଲେ ସେ ସଭାସିନ୍ଧୁ ଏହି ପରି ଭାବେ
ନମି ନୃପ ପାଦେ କରଯୋଡ଼ି ସବିଷାଦେ
ଅସ୍ତବ୍ୟସ୍ତ କେଶପାଶ ଉର୍ଦ୍ଧ୍ୱଶ୍ୱାସ ସ୍ୱରେ
ଭୋ ମଣିମା ଭୋଜବଂଶ ଅବତଂସ ରାଏ
ଶୁଣନ୍ତୁ ମଗଧବାର୍ତ୍ତା ଘୋର ଭୀତିପ୍ରଦା
ବିଧବା ବେନି ମହିଷୀ ମଗଧେ ପ୍ରବେଶି
ଭାଷିଲେ ପିତାର ପାଶେ ଯୋଡ଼ାଇ ଭିଡ଼ାଇ.
ଗୋପୁଁ ଆସି ଗୋପପତି ନନ୍ଦସୁତ ଦ୍ୱୟ
ରାମକୃଷ୍ଣ କଲେ ବୋଲି ପତିପୁତ୍ରହତ
ତେଣୁ ବହୁ ସେନା ବାହି ଜରାସନ୍ଧ ଭୂପ
ମଥୁରା ଧ୍ୱଂସ ସାଧନେ ଆସୁଛନ୍ତି, ରୋଷେ
ତାଙ୍କ ସଙ୍ଗେ ଷଣ୍ଣବତି ସହସ୍ର ନରେଶ
ରହିଛନ୍ତି ନିଜ ନିଜ ସୈନ୍ୟବଳ ଧରି
ଯମୁନାରେ ଅଜାଡ଼ିବେ ମଥୁରା ଉଜାଡ଼ି
ରାମକୃଷ୍ଣେ ବେଢ଼ିଦେଇ ବାନ୍ଧିନେବେ ପରା

ନିବେଶ ନିବେଶି ପୂତ ସରସ୍ୱତୀ ତୀରେ
ରହିଛନ୍ତି ଇଛନ୍ତି ସେ ଆସିବାକୁ ଆଜ
ଏଥିକି ଯାହା କର୍ତ୍ତବ୍ୟ କରନ୍ତୁ ମଣିମା !
ଶୂରବୀର ପ୍ରତାପୀ ସେ ମଗଧ ନରେଶ
ଏହି ବିଷ ବାହାରନ୍ତେ ସର୍ବ ସଭାଜନ
କର୍ଣ୍ଣମୁଖେ ପାନ କରି ହେଲେ ବିଷାଦିତ
ଶୁଣି ଉଗ୍ରସେନ ସଭାସ୍ଥଳେ ଭଜି ଉଗ୍ର
ଭାଷିଲେ ଏ ଭାଷାରାଶି ରୋଷବଶ ହୋଇ
ଲାଞ୍ଜମଡ଼ା ସର୍ପ ଯେହ୍ନେ ଗର୍ଜେ ଫୁତ୍କାରେ
ଆସୁରେ ଦର୍ପିଷ୍ଟ ଜରାସନ୍ଧ ମନ୍ଦ-ମତି
ମଣିଛ ତା ମନେ ମୋତେ ପୌରୁଷବିହୀନ
ଦେଖିବା ନା କେତେ ଶକ୍ତି ବହେ ସେ ପାମର
ଡରଇ କି ଉଗ୍ରସେନ ସେ ଦୁଷ୍କଛାରକୁ
ସୁସଜ୍ଜିତ କରସେନା ନ ଆସିବା ପୂର୍ବୁ
ମିତ୍ର ସାମନ୍ତ ରାଜାଙ୍କୁ ଡକାଅ ତଡ଼ତି
ସାତ୍ୟକୀ ପ୍ରସନ୍ନାଜିତ ଶତ୍ରୁଜିତ ତିନି
ପୁର ତିନିଦ୍ୱାରେ ଜଗିରହ ସେନାଧରି
ସମ୍ମୁଖର ଦ୍ୱାରେ ସେନା-ସହ ମୁଁ ରହିବି
ଦେଖାଯିବ ପଶିବ କିରୂପେ ପୁରମଧ୍ୟେ
ପାଶେ ବସି ରାମକୃଷ୍ଣ ହସ୍ତେ ନାସା ସ୍ପର୍ଶି
ହସନ୍ତି ସଧୀରେ ଶୁଣି ଅଜାଙ୍କ ପହିର୍ଯ୍ୟ
ମନେ ବିଚାରନ୍ତି ଜରାସନ୍ଧ ବାଘ ଆଗେ
ଅଜା ଅଜାବତ ବେଗେ ପଳାଇବେ ନାହିଁ
ଦେଖିବା କୌତୁକ ଆଜି ଆଜି ଯେବେ ହୁଏ
ନ ବରଜି ମଧୁପୁର ଧରନ୍ତି କି ଧୈର୍ଯ୍ୟ;
ରାଜାଦେଶେ ଜବେ ଯାଇ ପାର୍ଶ୍ୱ ପାର୍ଶ୍ୱ ଦେଶେ
ସନ୍ଦେଶବହ ନିବହ ନିମନ୍ତେ ରାଜାଙ୍କୁ
ଆସନ୍ତି ସସୈନ୍ୟେ ତେଣୁ ମିତ୍ର ସାମନ୍ତାଦି

ରାଜାବୃନ୍ଦ ବୀରବେଶେ ବୀରବାଦ୍ୟ ଘୋଷେ ,
ଏଣେ ଆଜ୍ଞା ଘେନି ଶତ୍ରୁଜିତ ଆଦି ତିନି
ତିନିଦ୍ୱାର ଜଗିଲେ ମୁରାଟେ ଥାଟ ଧରି
ହୋଇଅଛି ନିଶା ଅର୍ଦ୍ଧ ନିସ୍ତବ୍ଧ ଜଗତ
ମଧୁପୁର-ବାସୀ ସର୍ବେ ନିଦ୍ରା ଅଚେତନ
ଧ୍ୱାନ୍ତମୟୀ ବିଭାବରୀ ସାଇଁ ସାଇଁ ରାବେ
ଝିଙ୍କାରୀ ଝଙ୍କାର ମିଶି ଶଙ୍କା ଜାତ କରେ
କୀଟକ ନିକୁଞ୍ଜେ ରହି ପେଚକ ନିକର
ବେଳେ ବେଳେ କରୁଛନ୍ତି ଚକ ଚକ ରବ
ଶୃଗାଳକୁଳର ଶୁଣି ଭୀଷଣ ନିସ୍ୱନ
ସଂଭ୍ରମେ ରଟନ୍ତି କାକ ବକ ଥରେ ଥରେ
ନିଶା-ଯୋଷା ନୟନ ଉନ୍ମେଷ ଛଟା ବହି
ଖଦ୍ୟୋତ ସ୍ୱଗାତ୍ରୁଂ କାହିଁ ଦ୍ୟୁତି ପ୍ରକାଶନ୍ତି
ଏକାଳେ ଶୁଭିଲା ଦୂରୁ ଘୋର ରଣବାଦ୍ୟ
ଦୁମ୍ ଦୁମ୍ ନାଦେ ହୃଦେ ଭୀତି ଉପୁଜାଇ
ସୀମା ନିକଟେ ପ୍ରକଟ ଥାଟ ହେବା କାଳେ
ଉଇଁ ଗଲେ ପୂର୍ବାଚଳ ଚୂଳେ ଅଂଶୁମାଳୀ
ମଣ୍ଡିଦେଲେ ମହୀ ଦେହ କନକ କିରଣେ
ଦେଖାଇଲେ ନିଜ ପରତାପ ଦେଇତାପ
ଯେଣୁ ସେ ଗ୍ରୀଷମ କାଳ ଧରାବକ୍ଷଃ ରକ୍ଷ
ଦିବାଭାଗ ବର୍ଦ୍ଧମାନ ବିଭାବରୀ କ୍ଷୀଣ,
କଟକ ନିକଟେ ପୁଣି ଥାଟ ଯେତେବେଳେ
ସୈନ୍ୟରେଣୁ ଦେଖାଦେଲା ଗଗନ ଆଚ୍ଛାଦି
ରଥଘୋଷ ଅଶ୍ୱହ୍ରେଷା ଗଜଙ୍କ ଗର୍ଜନ
ବୀରନାଦେ ରଣବାଦ୍ୟେ କମ୍ପିଲା ଅବନୀ
ବୃଦ୍ଧି ଉଦଧିର ବିଧି ମାଡ଼ି ପଡ଼େ ଆସି
ତ୍ରୟୋବିଂଶ ଅକ୍ଷୌହିଣୀ ଜରାସନ୍ଧ ସେନା
ସେନା ପୁଣି ଷଣ୍ଡବତି ସହସ୍ର ଭୂପଙ୍କ

ଜଣେ ଜଣକର ଦଶବିଂଶ ଅକ୍ଷୌହିଣୀ
ଦଳ ଦଳ କମ୍ପେ ମହୀ ପଦାତିଙ୍କ ପଦେ
ସେନା କୋଳାହଳ ଶୁଭେ ସିନ୍ଧୁଘୋଷ ଜାଣି
ଦିବସେ ଅନ୍ଧାର ନଭଃ ରବିକର ଗ୍ରାସି
ସୈନ୍ୟରେଣୁ ଉଡ଼ିବାରୁ ନିବିଡ଼େ ଆକାଶେ
ଝଲକନ୍ତି ଶସ୍ତ୍ରେ ଜାତବେଦର ସଂଜାତ
ଘନଘଟା ଘୋରନାଦେ ବାଜେ ରଣବାଦ୍ୟ
ପ୍ରଳୟ ମେଘ ପରାଏ ଧାବନ୍ତି ମାତଙ୍ଗ
ଶୁଣ୍ଡ ଊର୍ଦ୍ଧ୍ୱେ ଟେକି ନାଦି ପ୍ରଚଣ୍ଡ ଆରବେ
ଝଟକେ ହାଟକ ପରିସ୍ତୋମ ପୃଷ୍ଠଦେଶେ
ବିଦ୍ୟୁତ ଦ୍ୟୁତିକି ଜିତି ସ୍ୱକୀୟ ଝଳିରେ
ଧରଣୀ ଉଖାଡ଼ି ଖୁରାଘାତେ ଖୁରିଗଣ
ପ୍ରଖରେ ଧାବନ୍ତି ବହି ରତନ ବାଖର
ଛତ୍ର ଚାମର ଆଲମ୍ବ ବିଲମ୍ବ ପତାକା
ବଳାକାଦି ପକ୍ଷିଦଳ ବୁଲିବା ଆଭାସେ
ବିଲୋକି ମଥୁରାବାସୀ ଭଜିଲେ ଆକୁଳ
ଭାବିଲେ ପ୍ରଳୟକାଳ ଆସିଲା ଏକାଳେ
ରକ୍ଷା ନାହିଁ ଅରକ୍ଷରକ୍ଷକ ହରି ବିନା
ତେଣୁ ଏକାଗ୍ରଚିତ୍ତେ ସେ ଚିତେଇଲେ ତାଙ୍କୁ
ଯଥା ଯୋଗୀ ଧ୍ୟାନ ଯୋଗେ ଚିନ୍ତନ୍ତି ଅଚ୍ୟୁତେ
ଜାଣି ଜନଭାବ ଭାବଗ୍ରାହୀ ଅନ୍ତର୍ଯ୍ୟାମୀ
ମଥୁରା ଅପାୟ ନାଶେ ରଚିଲେ ଉପାୟ
ବିଚାରିଲେ ଯାଦବେ ତ ନୁହନ୍ତି ନା ବୈରୀ
ଜ୍ଞାନଅନ୍ଧ ଜରାସନ୍ଧ ରାଜାର କେବେହେଁ
ଆମ୍ଭେ ଦେଖାଦେଇ ହେଲେ ଏଠାରୁ ଅନ୍ତର
ମଥୁରାର ଛାରଖାର ଏଥର ନୋହିବ
ତେଣୁ ଦୁଇଭାଇ ଯାଇ ରଥେ ରଥେ ବସି
ସଂଭ୍ରମେ ସେନାର ମଧ୍ୟେ ପ୍ରବେଶିଲେ ଧୀରେ

ଭୂପବୃନ୍ଦ ଚିହ୍ନି ତାଙ୍କୁ କହୁଁ ଜରାସନ୍ଧେ
ଆଦେଶିଲେ ବେଢ଼ି ବାନ୍ଧିବାକୁ ସେ ବେନିଙ୍କି
ଆଜ୍ଞା ମତେ ମୂଢ଼ନୃପେ ବେଢ଼ନ୍ତେ ଧାରଣେ
ମାୟାଧର ମାୟା ଭିଆଇଲେ ତହିଁ ଏକ
କୁହୁକୀ ବିସ୍ତାରେ ଯେହ୍ନେ କୁହୁକର ବଳେ
ଆନର ନୟନ ବନ୍ଦି ଅଦ୍ଭୁତ କୌଶଳ
ତେହ୍ନେ ସମଗ୍ର ଅଗ୍ରତେ ରାମ କୃଷ୍ଣ ଉଭା
ସର୍ବ ଜନମନ ଲୋଭା ଦିବ୍ୟ ଶୋଭା ବହି
ରୂପ ଚାହିଁ ହତଚେତ ଯାବତ ବାହିନୀ
ହସ୍ତପଦ ଇନ୍ଦ୍ରିୟାଦି ସର୍ବ ଜଡ଼ବତ
ଜଳ ଜଳ ଚାହୁଁଛନ୍ତି ଭୂପାଳ ସକଳ
ଯଥା ଭିତ୍ତି ପୃଷ୍ଠ ଲେଖା ଆଲେଖ୍ୟ ନିକର
ଚଳିଯାନ୍ତି ଦୁହେଁ ସେନାସାଗର ସନ୍ତରି
ଅନ୍ତେ ଦେବ ମାୟାଧର ମାୟା ସଂହରନ୍ତେ
ଦେଖନ୍ତି ଭୂପତିତତି ପଳାନ୍ତି ଉଭୟେ
ତେଣୁ ଗଲା ଗଲା ନାଦ ସକଳ ବଦନେ
ଶୁଣାଗଲା ସେହି କାଳେ ସିନ୍ଧୁଘୋଷ ଜାଣି
ତହୁଁ ଧାଇଁଲେ ସେ ଦୁଷ୍ଟ ଭୂପବୃନ୍ଦ ହୃଷ୍ଟେ
ବଳେ ଧରିବାକୁ ତାଙ୍କୁ ସାହସ ଦେଖାଇ
ଗ୍ରାମ ପଶା ମୃଗେ ଦେଖି ଯେହ୍ନେ ଗ୍ରାମବାସୀ
ଅସ୍ତ୍ର ଶସ୍ତ୍ର ଧରି ଧାଏଁ ଧରିବାକୁ ବଳେ,
ଯାର ମାୟାବଳେ ଗ୍ରସ୍ତ ସମସ୍ତ ଜଗତ
ତାଙ୍କର କପଟ ଦୁଷ୍ଟେ ବୁଝିବେ ବା କାହିଁ
କେବେ ଦୃଶ୍ୟ କେବେ ଅବା ଅଦୃଶ୍ୟ ହୁଅନ୍ତି
ନିକଟେ ପ୍ରକଟ କେବେ ଧରା ଦେବା ପରା
କେବେ ଧରୁ ଧରୁ କରୁ ଖରେ ଖସିଯାନ୍ତି
ପୁଣି ଆସି ପ୍ରବେଶନ୍ତି ତାଙ୍କର ସମ୍ମୁଖେ
ଏହି ମତେ କେତେ ଛଳ କୌଶଳ ପ୍ରକାଶ

କଲେ ଦୁଇଭାଇ ତହିଁ ଛାୟାବାଡ଼ି ବତ
ସ୍ୱଚିତ୍ତେ ଚିନ୍ତିଲେ ଛନ୍ଦି ନେଇ ଅନ୍ୟସ୍ଥଳୀ
ବିହିତ ଶାସ୍ତିକି ତହିଁ ବିହିବା ତାଙ୍କର
ଏବେ ଯେବେ ଜରାସନ୍ଧେ ବଧିବା ଅକାର୍ଯ୍ୟେ
ତେବେ ତ ନୋହିବ ଧର୍ମରାଜ ଭାବୀ କାର୍ଯ୍ୟ ,
ତେଣୁ ଶ୍ରେଷ୍ଠ କାର୍ଯ୍ୟ ତାକୁ ରଣେ ପୃଷ୍ଠ ଦେବା
ମାତ୍ର କିଛି ଦୁଷ୍ଟ ନଷ୍ଟ କରିନେବା ଆଗେ
ଭାଳି, ପଳାଇବା ବ୍ୟାଜେ ଗଲେ ଦୂରମାର୍ଗ
ଯହିଁ ରାଜେ ଗନ୍ଧାନିଳ ମଞ୍ଜୁଳ ଅଚଳ
କର୍ପୂର ଅଗୁରୁ ସର୍ଜରସ ମୃଗମଦେ
ଆମୋଦେ ଯେ ଗିରିରାଜ ବାୟୁ ସ୍ପର୍ଶ ବଶେ
ଗନ୍ଧବତୀ ନଦୀ ଗତି କରେ ତାର ପଦେ
କଳ କଳ ସୁନିନାଦେ ରଚି ମୃଦୁବୀଚି
ସୁଗନ୍ଧବସ୍ତୁ ସଂଯୁତ ହେତୁ ଜଳସ୍ରୋତ
ଅବିରତ ସୁବାସିତ ହୁଅଇ ତାହାର
ଯେହ୍ନେ ଅଙ୍ଗରାଗ ଉପଚିତ ରମା ଅଙ୍ଗ
ଉଠିଲେ ସେ ଗିରିମାଥେ ରଥ ବାହିନେଇ
ନ ଦେଖିଲେ କେହି ତାଙ୍କୁ ମାୟାର ପ୍ରଭାବୁଁ
ଅଦୂରେ ଶୋଭଇ ତାର ପ୍ରତ୍ୟନ୍ତ ପର୍ବତ
ଅଗୁରୁ-ଚନ୍ଦନତରୁ-ଅଗାର, ମଳୟ
ଶୋଭେ ଯଥା ପିତାକୋଳେ ସୁଲଳିତ ବାଳ
ତା ତଳେ ମଳୟ ପଦା ପ୍ରଶସ୍ତ ପ୍ରାନ୍ତର
ସଂଗ୍ରାମରେ ଉପଯୁକ୍ତ ସମତଳ କ୍ଷେତ୍ର
ତହିଁ ଦ୍ରୁତେ ଉପନୀତ ହୋଇ ବେନି ଭାଇ
ରଣ ଅପେକ୍ଷାରେ ସ୍ଥିତ ସୁସଜ୍ଜିତ ଭାବେ
ବଜ୍ରହଳ, ସତୃନନ୍ଦ-ମୁଷଳ ସେ ରାମ
ସୁଦର୍ଶନ ଚକ୍ର ପାଞ୍ଚଜନ୍ୟ-ଶଙ୍ଖ କୃଷ୍ଣ
କରେ କରେ ବହି ରହିଛନ୍ତି, ରଥୋପରି

ଧରି ବରଠାଣି ବୁଭୁକ୍ଷିତ ସିଂହ ଢାଣି;
ଏଆଡ଼େ ପର୍ବତବେଢ଼ି ଦୃଢ଼େ ମୂଢ଼ ନୃପେ
ନ ପାଇ ବିରସେ ବସି, ପେକ୍ଷେ ଚାର ଶେଷେ
ଚାରି ଆସି ବିଭାଷନ୍ତେ ତେଜି ସମାଚାର
ପୁଣି ପ୍ରଧାବିତ ଭୂପଗଣ ଧାଡିକାରେ
ପଦା ଅଭିମୁଖେ ଦୁଃଖେ ପଦାତିକ ଘେନି
ଦେଖି ରାମକୃଷ୍ଣ ଦୁହେଁ ତହିଁ କରି ଯୁଦ୍ଧ
ବଧ କଲେ ବହୁ ଶତ୍ରୁଯୋଦ୍ଧା କ୍ଷଣ ମଧ୍ୟେ
ପିପଲୀଭୁକ୍ ନାଶେ ଯଥା ପିପିଲିକା ପଲେ
ଜରା ନିଧନ ସାଧନେ ରାମ ବାମ ହୋଇ
ତୋଳନ୍ତେ ମୁଷଳ ହଳ ଭୟଙ୍କର ବେଶେ
ହୋଇଲା ଆକାଶବାଣୀ ଗୁଣିଅଛ ଯାହା
ପୃଷ୍ଠଭଙ୍ଗେ ପାଳ ତାହା ହଳ-ଚକ୍ର ପାଣି
ତେଣୁ ଦୈତ୍ୟକୁଳାନ୍ତକ ଦୁହେଁ ପଳାନ୍ତିକ
ହୋଇ ପ୍ରବେଶିଲେ ଯାଇ କଞ୍ଚନକାନନେ
କାଞ୍ଚନ ବରନେ ଯହିଁ ଫୁଟିଛି କୁସୁମ
ସୁସମ ଭାବେ ସୁବାସ ପ୍ରସାରି ଚୌଦିଗେ
ବିହରନ୍ତି ମଧୁକର କୁହରନ୍ତି ପିକ
ଅଧିକେ ସୁଷମା ବହେ ତେଣୁ ସେ କାନନ
ତହିଁ ରାଜେ ଅଭିରାମ କଞ୍ଚନ-ଶିଖରୀ
ଘନଦ୍ରୁମାବଳୀପୂର୍ଣ୍ଣ ଶ୍ୱାପଦ ବିହୀନ
ନର୍ମଦା ତଟିନୀ ଖଟେ ତାର ପାର୍ଶ୍ୱ ଦେଲେ
ଖରତର ସ୍ରୋତା ଭୀମତରଙ୍ଗମାଳିନୀ
କି ସେ ଶୈଳ ବକ୍ଷଃଚ୍ୟୁତା ମୁକ୍ତା-ଏକାବଳି
ତାକୁ ପାରି ହୋଇ ପରପାରେ ଦୁର୍ବାସାଙ୍କୁ
ଦେଖି ଶିଖିଲେ ପାଦୁକାମନ୍ତ୍ର ତାଙ୍କ ପାଖୁ
ତହୁଁ ବିଷ୍ଣୁ-ପୁରେ ଖରେ ପ୍ରବେଶନ୍ତେ ଯାଇ
ନିରେଖିଲେ ମୂର୍ଖ କ୍ଷିତିପତିଙ୍କୁ ପଶ୍ଚାତେ

ତେଣୁ ପୁଣି ପଳାନ୍ତକ ହୋଇ ଦୁଇ ଭାଇ
ଗିରୀଶ-ନିବାସ ଶିବଗିରି ଆଦରିଲେ
ଦରୀ ମଧ୍ୟେ ପଶି ତହିଁ ଶିବସେବା ଶେଷି
ବିଶ୍ରାମନ୍ତେ ଶ୍ରମନାଶ ଆଶେ ଶିବବାସେ
ପ୍ରବେଶି ମହେଶ ଆସି ଭାବିଲେ ଏଭାଷା
ନୋହିବ ତୁମ୍ଭର ହାତେ ଜରାସନ୍ଧ ହତ
ଯୁଧିଷ୍ଠିର ସାନ ବୀର ଭୀମସେନ ହାତେ
ହତ ଏ ହୋଇବ କଳେ ବଳେ ବେନିଫାଳ
ଶୁଣି ଶିବବାଣୀ ରାମକୃଷ୍ଣ ହେଲେ ତୁଷ୍ଟ
ଦୃଶକୁ ନୋହିଲେ ଦୃଶ୍ୟ ଆଉ ସେ ଗିରୀଶ
ଚାରମୁଖୁ ସମାଚାର ପାଇ ପୁଣ ନୃପେ
ତହିଁକି ଆସିଲେ ରୋଷେ ପ୍ରକାଶି ପୌରୁଷ
ମୁଖଗୋଳ ବାଦ୍ୟରୋଳ ଗଜଘଣ୍ଟାସ୍ୱନ
ଏସର୍ବ ନିବାରି ପଦଚାରୀ ହୋଇ ଗର୍ବେ
ଶିବଗିରି ତିନିପାର୍ଶ୍ୱେ ଭାନୁମତି ଧୁନି
ପ୍ରବହେ କ୍ଷୁଦ୍ର ପ୍ରବାହେ ବହି ମନ୍ଦଗତି
କି ସେ ଗିରୀଶ୍ୱର ଚାରୁ ନିତମ୍ବ ମେଖଳା
ଉତପ୍ତ ସଲିଳା ଯେବା ଚିତ୍ରଭାନୁ ସମେ
ଉଚ୍ଛ୍ୱସାଏ ଜଳରାଶି ତପ୍ତ ଦୁଗ୍ଧବତ
ଏକେ ଗ୍ରୀଷ୍ମକାଳ ତହିଁ ପଥଶ୍ରାନ୍ତ ବଳ
ଭୃତ୍ୟ ସାମନ୍ତାଦି ସର୍ବେ ତୃଷାରେ ଆରତ
ଅନ୍ଧକାର ରାତ୍ର ବାରି ନ ପାରି ତା ବାରି
ଝସାଇ ପଶନ୍ତେ ସେନା ଜଳ ପାନ ଆଶେ
ପୋଡ଼ିଲା କା କର ପଦ ମୁଖ କଣ୍ଠ ଓଷ୍ଠ
ସ୍ଫୋଟକ ଜନ୍ମାଇ ଚାଣେ ବିସ୍ଫୋଟକ ପରି
ମଚିଗଲା କୋଳାହଳ ରଚିଲେ ବୋବାଳି
ଗଜବାଜୀ ପଦାତି ନୃପତି ଆଦି ସର୍ବେ
କେତେ ମଲେ କେତେ ହେଲେ କ୍ଷତଯୁକ୍ତ ତହିଁ

ଗଜବାଜୀ ଖର ଉଷ୍ଟ୍ର ମଲେ ଅବା କେତେ
ବିଦଗ୍ଧ ହେବାରୁ ତହିଁ ତାଙ୍କ ଯୁଦ୍ଧ ଶଧ
ମେଣ୍ଟିଲା କଣ୍ଟିଲେ ଭାଇ ଉପାଳସକଳ
ତାଙ୍କ ଦଶା ଦେଖି ରାମକୃଷ୍ଣ ଦୁଇଭାଇ
କର କର ହସନ୍ତି ସ୍ୱମୁଖେ ବାସ ଭାରି
ମାୟାଧର ମାୟାବଳେ ଅଣାଇଁ ସେ ଦୁଷ୍ଟେ
କଷ୍ଟଦେଇ ନଷ୍ଟକଲେ କେତେ ସେ ସରିତେ
ତହୁଁ ଯାଇ ଦୁଇଭାଇ ମନର ହରଷେ
ଖରେ ହେଲେ ଉପଗତ ମହେନ୍ଦ୍ର ପର୍ବତେ
ମହେନ୍ଦ୍ର ସେବିତ ଗିରି ଅତି ରମଣୀୟ
ପଶୁପକ୍ଷୀ ନାଦେ ଯେବା ସଦା ଝଙ୍କାରିତ
ତରୁଲତା ନତ ପୁଣି ପୁଲ ଫଳ ଭରେ
ବିଦୁଷ ବିଦୁଷୀ ଯଥା ବିଦ୍ୟାଗୁଣ ଜ୍ଞାନେ
ଭ୍ରମନ୍ତି ଭ୍ରମରବୃନ୍ଦ ଶୁକ ପିକ ସଙ୍ଗେ
ଆବର କୁରଙ୍ଗକୁଳ ନାନାରଙ୍ଗେ ଖେଳି
ଉତ୍ତୁଙ୍ଗ ତରଙ୍ଗ କର ଊର୍ଦ୍ଧ୍ୱେ ସୁବିସ୍ତାରି
ଘୋର ରବେ ରେବା ଯାର ଧୁଅଇ ପୟର
ତହିଁ ରହିଁ କାମଧେନୁ ସ୍ମରି ଦୁଇଭାଇ
ବାସ ଗ୍ରାସ ଉଭୟକୁ ଲଭିଲେ ସୁଲଭେ
ପୁଣି ଦୂତ ନିବେଦନ୍ତେ ବେନିଙ୍କ ଉଦନ୍ତ
ଧରାପତି ବୃନ୍ଦଘେନି ତହିଁ ଯାଉଁ ଜରା
ପଳାଇଲେ ଭାବୀ ଯୁଦ୍ଧେ ବଳାଇ ମାନସ
କରଞ୍ଜ ନାମକ ସୁରଞ୍ଜନ ପରବତେ
ଅଙ୍ଗୀରା ନାମକ ଋଷିବର ପୂର୍ବେ ଯହିଁ
ବିହିଥିଲେ ତପସ୍ୟାକୁ ରହି ବହୁକାଳ
ପବିତ୍ର ମାନସୀକୁଣ୍ଡ ତପସ୍ୟା ସଂଭୂତ
ସ୍ଥିତ ଗିରି ନିମ୍ନ ଦେଶେ ଋଶ୍ୟାଶ୍ରମ ପାଶେ
କିବା ସେ ଶକୁଳରାଜ ବିଳାସଦର୍ପଣ

ସୁଷମା ଯେ ବହେ ଘେନି କମଳ କହ୍ଲାର
ପୁଣି ହଂସ କାରଣ୍ଡବ ଜଳଚରଖଗେ;
ବିଦିତ କାର୍ତ୍ତିକ ପଦା ତାହାର ଅଦୂରେ
ଶରଜନ୍ମା ଜନ୍ମିଥିଲେ ପୂର୍ବେ ଯେଉଁସ୍ଥାନେ
ଶରବନର ପ୍ରାନ୍ତର ହୋଇଥିଲା ଯେବା
ତହିଁ ଦୁତେ ଉପନୀତ ହେଲେ ବେନି ଭ୍ରାତା
ଯୁଦ୍ଧ ଉପଯୁକ୍ତ କ୍ଷେତ୍ର ଚିତୋଇ ସ୍ୱଚିତ୍ତେ
ଅପେକ୍ଷିଲେ ତହିଁ ସୈନ୍ୟ ନିଧନ ସାଧନେ
ରଣ ଆଶେ ପ୍ରହରଣ ଘେନି ବେନି ଭ୍ରାତା
ଅପେକ୍ଷେ ବେନି ହର୍ଯ୍ୟକ୍ଷ କି ସେ ମୃଗପଲେ
ଦେଖି ଚାରି ସମାଚାର ଦିଅନ୍ତେ ଦ୍ୱୟଙ୍କ
ଧାଇଁଲେ ଭୂପକଦମ୍ବ ଦମ୍ଭ ପରକାଶି;
ଯାନ ବାହନ ବିହୀନ ଥିବାରୁ ସେ ଦୁହେଁ
ଇନ୍ଦ୍ର ନନ୍ଦୀଘୋଷ ପୁଣି ତାଳଧ୍ୱଜ ରଥ
ପେଷିଲେ ଦେବସାରଥି ମାତଳିର ହାତେ
ଅସ୍ତ୍ର ଶସ୍ତ୍ର ଦେବବାସ ଭୂଷା ସାଥେ ଦେଇ
ତେଣୁ ରାମକୃଷ୍ଣ ବେନି ଘେନି ସେ ସମସ୍ତ
ସାମର୍ଥ୍ୟ ପ୍ରକାଶ କଲେ ବେନି ରଥେ ବସି .
ବିନାଶିଲେ ଶତ୍ରୁସେନା ଅନାୟତ୍ତ କରି
ଅଙ୍ଗ ଭଙ୍ଗ ବହି ହଳମୁଷଳ ରଥାଙ୍ଗେ .
କଦଳି କାନନେ ଯେହ୍ନେ ପଶି ମତ୍ତହସ୍ତୀ
କଦଳିକନ୍ଦଳୀଦଳ ଦଳେ ଅବହେଳେ;
ତହୁଁ ଦୁଇଭାଇ ଗନ୍ଧମାଦନ ପର୍ବତେ
ଅସ୍ତ୍ର ଶସ୍ତ୍ର ରଥ ଥୋଇ ସୂର୍ଯ୍ୟାସ୍ତ ସମୟେ
ପାଦୁକା ମନ୍ତର ସ୍ମରି ଦକାହୀନ ମନେ
ଜବେ ଯାଇ ମଥୁରାରେ ହେଲେ ଉପସ୍ଥିତ
ପୁରେ ପଶି ଉଗ୍ରସେନ ବସୁଦେବଙ୍କର
ଚରଣ ଅର୍ଚ୍ଚିଲେ ଦୁହେଁ ଭକ୍ତିଯୁକ୍ତ ହୋଇ

ଶୁଣାଇଲେ ଆଦ୍ୟୋପାନ୍ତ ଯୁଦ୍ଧର ବୃତ୍ତାନ୍ତ
ଜରାବଧ ନିଷେଧର ଦୈବବାଣୀ ସଙ୍ଗେ
ମଥୁରା ରକ୍ଷାର୍ଥେ ତାଙ୍କ ପୃଷ୍ଠଭଙ୍ଗଦେବା
ବନ୍ଧୁକାର୍ଯ୍ୟେ ବନ୍ଦୀଭୂପେ ନ ବଧିବା ଆଦି
ପୁଣି ହିଁ ଆସିବ ଜରା ଜାଣି ଅନ୍ତର୍ଯ୍ୟାମୀ
ନିଜତେଜ ନିଯୋଜିଲେ ଯାଦବ ସମାଜେ
ରବି ଯେହ୍ନେ ଯୁକେ ତେଜ ଜ୍ୟୋତିଷ୍କ ନିକରେ
ତେଣୁ ସେହି ତେଜେ ସର୍ବେ ଗର୍ବେ ଭଜି ଗୁରୁ
ଗର୍ଜନ ସର୍ଜି ଭାଷିଲେ ଦକାହୀନମନେ
ଆସୁ ନା ବିପକ୍ଷେ ଜରା ଲକ୍ଷେ ରାଜା ଘେନି
ଲକ୍ଷ ନୋହିବ ଆମ୍ଭର ତୁମ୍ଭେ ପକ୍ଷଥିଲେ
ବୁଝି ଜନମନୋଭାବ ଦେବ ଭାବଗ୍ରାହୀ
ତେଜ ଓଜ ମିଶା ଭାଷେ ଭାଷିଲେ ଏସନ
ଜଗତେ ବିଖ୍ୟାତ ଆମ୍ଭ ଏହି ଯଦୁବଂଶ
ସୁରାସୁର ଜୟକାରୀ ବିଜୟୀ ସଂଗ୍ରାମେ
ଅଛବୀର ମହାବୀର ରଥୀ ମହାରଥ
ଏକେ ଏକେ ବିଶ୍ୱଜୟେ ସାମର୍ଥ୍ୟ ତୁମ୍ଭର
ତେବେ ଛାର ଅରି ଜରାସନ୍ଧେ ଡରି କରି
ତେଜିବ ସେ ନିଜରାଜ୍ୟ ଅଛି କେ ନିର୍ବୀର୍ଯ୍ୟ
ଶତ୍ରୁପଦଲେହି ଶତ୍ରୁ ଉପାନହ ବହି
ରହିବାକୁ ଅଛି ଏଥେଁ କେଉଁ ହୀନଶ୍ୱାନ
ବିସର୍ଜିବା ପଛେ ପ୍ରାଣ ସର୍ଜିବା ହେ ରଣ
ପ୍ରହରଣ ଘେନି ଶତ୍ରୁଟାଣ ଭାଙ୍ଗିଦେବା
ଯାବତ ଚନ୍ଦ୍ରାର୍କ ନଭେ ଉଇଁଥିବେ ରହି
ତେଜିବରେ ନିଜରାଜ୍ୟ କେଉଁ କାପୁରୁଷ
ଜନନୀ ଜନମଭୂମି ସ୍ୱର୍ଗୁ ଗରୀୟସୀ
ଦେବା କିହେ ବୀରେ ତାହା ନେଇ ବୈରୀକରେ
ଚିରବନ୍ଦୀ ହୋଇ ପିନ୍ଧି ଦାସତ୍ୱ ଶୃଙ୍ଖଳ
ବଞ୍ଚି ରହିବା ନା ସଞ୍ଚି ଏ ଛାର ଜୀବନ

ତେଜ ଓଜ ବୀର୍ଯ୍ୟ ଥାଉଁ ଥାଉଁ ଏ ଜୀବିତ
ଜନ୍ମଭୂମି ତେଜିବ କେ ନିର୍ବୀର୍ଯ୍ୟ ଏକୁଳେ
ସତ୍ୟଧର୍ମ ନ୍ୟାୟ ପାଇଁ ଜନ୍ମଭୂମି ପାଇଁ
ପ୍ରାଣ ବିସର୍ଜିବା ଜାଣ ବୀରୋଚିତ କର୍ମ
ସତ୍ୟବଳ ଧର୍ମବଳ ପୁଣି ନ୍ୟାୟବଳ
ଅଛିତ ଆମ୍ଭର ବୃଥା ଚିତ୍ତେ କିପାଁ ଚିନ୍ତା
ତିନିମଧ୍ୟୁଁ ଏକଯାର ଜୟୀ ସେ ଜଗତେ
ତ୍ରିତୟ ଏକତ୍ର ଯହିଁ ତହିଁ କେଉଁ ଭୟ
ବାନ୍ଧ ହେ ସାହସ ହାସ୍ୟଆସ୍ୟେ ଅସ୍ତ୍ରଧର
କରିବା ବୈରୀ କି ବୀରେ ଦୂର ପରାହତ
ବୀରୋଚିତ କାର୍ଯ୍ୟ ନୁହେ ସମର ଭୀରୁତା
ଭୀରୁକୁ ବିଜୟଲକ୍ଷ୍ମୀ ତେଜଇ ହେ ଦୂରୁ
ଯଦି ଜରା ବାହିଅଛି ବହୁ ଅନିକିନୀ
ତଥାପି ସେଥିକି ଭୀତି କିକେ ଯଦୁବୀରେ
ସହସ୍ର ସହସ୍ର ଶଶ ମିଶନ୍ତିଟି ଯେବେ
ସିଂହ ଦଳ ଆଗେ କିସେ ପ୍ରକାଶନ୍ତି ବଳ
ବଳେ କଳେ କଉଶଳେ ଯେ କୌଣସି ମତେ
ଅନ୍ୟାୟୀ ଶତ୍ରୁକୁ ଯୁଦ୍ଧେ ସାଧିବା ସୁବିଧି
ବିଷର ଔଷଧି ବିଷ ହୁଅଇ ସମୟେ
ସୁଧା ନିଯୋଜିଲେ ସୁଦ୍ଧା ନ ଫଳଇ ଫଳ
ପରରାଜ୍ୟ ପରୈଶ୍ୱର୍ଯ୍ୟ ଅର୍ଜନାଭିଳାଷୀ
ରାଜା ନ ହେଜଇ କେବେ ନ୍ୟାୟାନ୍ୟାୟ ପଥ
ଅହିତେ ମଣଇ ହିତ ଲୁବ୍ଧ କ୍ଷୁଧା ଜାଣି
ତହିଁର ବିହିତ ଶାସ୍ତି ପାଇବ ହେ ଏବେ
ଦୁରାଚାରୀ ପୁଣି ପ୍ରଜାପୀଡ଼କ ରାଜାକୁ
ବିହି ନ ସହି ଆନର ହସ୍ତେ ବିହେ ଶାସ୍ତି
ସତ୍ୟବଳ ଧର୍ମବଳ ନ୍ୟାୟବଳ ତିନି
ମଧ୍ୟୁଁ ଏକ ନାହିଁ ତାର ରହିବ କି ଟେକ
ଉଠ ବୀରେ ବୀରବେଶେ ଧର ଅସ୍ତ୍ର ଶସ୍ତ୍ର

ମାର ଅବା ମର ରଣେ ନ କରହେ ଭୟ
କ୍ଷତ୍ରରକ୍ତେ ଏହି ଦେହ ନାହିଁ କିହେ ଗଢ଼ା
ତେବେ ବୈରୀ କିରେ ପୀଡ଼ା ସହିବା କି କହ
ଦାସତ୍ୱେ ବଞ୍ଚିବା ଇଛି ସ୍ୱ ସମ୍ମାନ ଲେଛି
ଏଡ଼େ ନିର୍ଲଜ୍ଜ ଏକୁଳେ ଉପୁଜିଛି କେବା
ନାରୀ ହୋଇ ମାରିଛନ୍ତି ମହା ମହା ଦୈତ୍ୟ
ନାନାରୂପେ ମହାମାୟା ଶୁଣିଥିବ କର୍ଣ୍ଣେ
ପୁରୁଷ ହୋଇକି ହେବା ଅପୁରୁଷ ତେବେ
ଭୀରୁ ହୋଇ ଭୀରୁ ଭାବେ ଏଭବେ ରହିବା
ଯାବତ ଏ ଧମନୀରେ ବହୁଥିବ ରକ୍ତ
ତାବତ ବିରତ ରଣେ ନୁହ ବୀରଗଣେ
ଯୋଗାଏ ଦୁର୍ଲ୍ଲଭ ସ୍ଥାନ ରଣର ମରଣ
ତେବେ କି କାରଣେ ତବ ରଣେ ଭୟ ବୀରେ
ଶୁଣି କୃଷ୍ଣବାଣୀ ତହିଁ ଯାଦବକଦମ୍ବ
ଜୟନାଦ କରି ହୃଦେ ବହିଲେ ଉତ୍ସାହ
ତାହା ଚାହିଁ କୃଷ୍ଣ ପୁଣି କହିଲେ ତାହାଙ୍କୁ
କହଇଁ ଯା ଶୁଣ ସର୍ବେ ଶ୍ରବଣନିବେଶି
ଆମ୍ଭ ଆଗମନ ଶୁଣି ପୁଣି ଜରାସନ୍ଧ
ବାହିବ ବାହିନୀ ଆଜି ଆଜିର ଶ୍ରଦ୍ଧାରେ
ଯୋଦ୍ଧାଗଣ ରଣ ପାଇଁ ରହନ୍ତୁ ଏଭାବେ
କରିବା ସଂଗ୍ରାମ ଗ୍ରାମେ ପ୍ରକାଶି ବିକ୍ରମ
ଆସୁନା ଅସଂଖ୍ୟ ସେନା ଧରି ଜରାଦୁଷ୍ଟ
ନଷ୍ଟ ଭ୍ରଷ୍ଟ କରିଦେବା ସମ୍ମୁଖ ସଂଗ୍ରାମେ
ଆବରି ଉତ୍ତରଦ୍ୱାର ରହନ୍ତୁ ମୁଷଳୀ
ହଳମୁଷଳ ସହିତ ତାଳଧ୍ୱଜେ ବସି
ଜବେ ଯାଇ ଦକ୍ଷିଣେ ଜାଣନ୍ତୁ ଉଗ୍ରସେନ
ଅନାଦୃଷ୍ଟ ଉଦ୍ଧବ ବେନିଙ୍କି ସଙ୍ଗେ ଘେନି
କଂସ ସାନ ସୁନାମାଙ୍କ ଅପତ୍ୟ ସୁରଥ

ପଶ୍ଚିମେ ଜଗନ୍ତୁ ଦ୍ୱାର ସ୍ୱରଥେ ଆରୋହି
ସାତ୍ୟକୀ ସହସ୍ରାଚିତ କୃତବର୍ମା ବୀର
ତିନିହେଁ ଯାଅନ୍ତୁ ସଙ୍ଗେ ଅଙ୍ଗବନ ଘେନି
ରହିବି ମୁଁ ପୂର୍ବଦ୍ୱାର ଆବରି ଏକାକୀ
ଆଉ ବୀରେ ପୁରେ ଧନଜନ ସମ୍ଭାଳନ୍ତୁ
କୃଷ୍ଣ ଆଜ୍ଞାମତେ ସର୍ବେ ସୁସଜ୍ଜିତ ହୋଇ
ରହିଲେ ଆବରି ଦ୍ୱାର ମଥୁରାପୁରର
ଦୂତବାର୍ତ୍ତା ଶୁଣି ପୁଣି ବୀର ଜରାସନ୍ଧ
ଧାଡିକାରେ ଧାଇଁଲେ ସେ ଧରାଭୂପଧରି
ବେଢ଼ିଲେ ମଥୁରାପୁର କରି ଶତପୁର
ଦୃଢ଼େ ଦୃଢ଼ବପୁଃ ମୂଢ଼ ଭୂପତି ପଠାଇ
ଦୃଢ଼େ ବେଢ଼େ ଗୁଢ଼େ ଯଥା ପିପିଲିକା ପଲ
ରହିଲେ ଦକ୍ଷିଣେ ଦମଘୋଷ ରୋଷ ବହି
ପଶ୍ଚିମେ ସେ ଦନ୍ତବକ୍ର ପୂରୁବେ ରୁକ୍ମଣ
ଜରାସନ୍ଧ ଶାଲ୍ୱ ଶିଶୁପାଳାଦି ଉତ୍ତରେ
ଲାଗିଲା ଘୋର ସମର ଯାଦବଙ୍କ ସଙ୍ଗେ
ରଥୀ ରଥୀ ପତ୍ତି ପତ୍ତି ସେନାନୀ ସେନାନୀ
ସାଦୀ ସାଦୀ ନିଷାଦୀ ନିଷାଦୀ ସହ ଯୁଝେ
ଶର ଶରାସନ ଅସି ଉଲ୍ଲ ଶୂଳ ଶେଲ
ଗଦା ଖଡ୍ଗ ଚକ୍ର ଆଦି ଅସ୍ତ୍ର ଶସ୍ତ୍ର କରେ
ଶତ୍ରୁବକ୍ଷଃ ଲକ୍ଷ୍ୟ ରଖି-ତହିଁ ବେନିପକ୍ଷ
ବରଷାନ୍ତି ଶରରାଶି ଆସାର ସମାନ
ଶରେ ଆଛନ୍ନ ଆକାଶ ସୂରକର ଗ୍ରାସି
ଦିବସ ତମସ ବଶେ ଦିଶେ ଭୟଙ୍କର
ସନ ସନ ଶୁଭେ ବାଣ ଘନ ଘନ ବାଦ୍ୟ
ରଣ ରଣ ହସ୍ତିଘଣ୍ଟ ଝଣ ଝଣ ଖଡ୍ଗ
ହ୍ରେଷେ ଅଶ୍ୱ ଘୋଷେ ରଥ ରୋଷେ କାହିଁବୀର
ଧର ଧର ମାର ମାର ଶବ୍ଦ ଶୁଭେ କାହିଁ

ଝକଝକେ ବର୍ମ କାହିଁ ଧକଧକେ ଚର୍ମ
ଛକ ଛକେ ଚକ୍ର କାହିଁ ସକସକେ ଅସି
ଛିଡ଼ୁଅଛି ମୁଣ୍ଡ କାହିଁ ଗଡ଼ୁଅଛି ପିଣ୍ଡ
ଛାଡ଼ୁଅଛି ରଡ଼ି କେବା ଯାଉଅଛି ମାଡ଼ି
ନିପତନ୍ତେ ଗଦା କାହିଁ ପଦାତିକେ ପଦା
ଭୟଯାତେ ମଲ୍ଲ କାହିଁ ହୁଏ କଲବଲ
ଶରେ ଶର ଖଡ୍ଗେ ଖଡ୍ଗ ପରିଘେ ପରିଘ
ଭଲ୍ଲେ ଭଲ୍ଲ ବାଜି କାହିଁ ଉପୁଜେ ଅନଳ
କାହିଁ ଖଡ୍ଗାଘାତେ ଦନ୍ତିଦନ୍ତୁ ବହ୍ନି ଉଠୁ
ଲିଭାନ୍ତି କରଣୀକରେ ଭୟେ କରିଗଣ
ଶିର କର ପୟର ଆବର କଟି କର୍ଣ୍ଣ
ଛିଡ଼ି ପଡ଼ୁଅଛି କାହିଁ ଭୀମରଣ କ୍ଷେତ୍ରେ
କାହିଁ ଛିନ୍ନ ଶର କରବାଳ ଅସି ତାଳ
ଛିନ୍ନ ଭର୍ମବର୍ମ ଆଦି ପଡ଼ୁଅଛି ତଳେ
କାହିଁ ଭଗ୍ନରଥ ରଥଚକ୍ର ଧ୍ୱଜଦଣ୍ଡ
ପଡ଼ୁଅଛି ଛିନ୍ନ ଗଜବାଜୀ ପିଣ୍ଡ ସଙ୍ଗେ
ଗଣ୍ଡି ମୁଣ୍ଡ ନୃତ୍ୟ ଚାହିଁ ଭୟାଳୁଙ୍କ ପିଣ୍ଡ
ପ୍ରକମ୍ପଇ କାହିଁ ବାତେ ରମ୍ଭାପତ୍ରବତ
ବିଷ୍ଣୁ ତେଜେ ତେଜୋବନ୍ତ ହୋଇ ଯଦୁବୀରେ
ନାଶିଲେ ଅସଂଖ୍ୟ ସୈନ୍ୟ ନିଃଶଙ୍କ ମାନସେ
ପଡ଼ିଲେ ସମର କ୍ଷେତ୍ରେ ରାଉତ ମାହୁନ୍ତ
ପତ୍ତି ସେନାପତି ରଥ ଗଜବାଜୀ ସହ
ଅସ୍ଥି ମାଂସ ରସ ରକ୍ତ ମଜ୍ଜା ମେଦ ଆଦି
ମିଶି କର୍ଦ୍ଦମାକ୍ତ ହୁଏ ସଙ୍ଗର ପ୍ରାଙ୍ଗଣ
ଆସିଲେ ଶ୍ମଶାନଚଣ୍ଡୀ ଦଳବଳ ସଞ୍ଜି
ନାଚିଲେ ଅଟଟ୍ଟ ହାସେ ଚାହିଁ ଶବରାଶି
ବହଇ ରକତ ସ୍ରୋତ ଭାସିଯାନ୍ତି ଶବ
ମହୋତ୍ସବ ହୁଏ ଗୃଧ୍ର ଗୋମାୟୁ ଶ୍ୱାନଙ୍କ

ଖଣ୍ଡି ଶବ ମୁଣ୍ଡଗଣ୍ଡି ମୁଖନଖ ଥଣ୍ଟେ
ଆଣ୍ଟେ ଝିଙ୍କାଝିଙ୍କି ହୋଇ ଭକ୍ଷୁଛନ୍ତି ରଙ୍ଗେ
ମାତ୍ର ମଥୁରାର ଧନ ଜନ ହତ ଚିନ୍ତି
ତହୁଁ ପୃଷ୍ଠ ଦେଲେ ହୃଷ୍ଟେ ପୁଣି ବେନିଭ୍ରାତା
ଭୁଜ ବଳେ ବଳନାଶି ମାୟାରେ ପଳାଇ
ଜୟନ୍ତ ପର୍ବତ ଗାତ୍ର ମଣ୍ଡି ଦେଲେ ଚାଣ୍ଡେ
ଦେଖି ଜରାସନ୍ଧବୀର ମଥୁରା ଉପେଖି
ରହିଲେ ଯମୁନାକୂଳେ ଅପେକ୍ଷି ବେନିଙ୍କି
ତେଣୁ ପୁରେ ଆସି ଦୁହେଁ ଭାବୀ ଯୁଦ୍ଧ ଭାବି
ଭାଷିଲେ ଯାଦବ ଗଣେ ଏହି ଭାଷାରାଶି
ପୁରେ ଥିଲେ ବାଳବୃଦ୍ଧ ନାରୀ ଧନରତ୍ନ
ତାରକ୍ଷଣେ ତାର ରଣେ ଭଜଇ କଣ୍ଟକ
ତେଣୁ ସେହି ସର୍ବ ନେଇ ରାଜା ଉଗ୍ରସେନ
ଯାଇ ରହନ୍ତୁ ଗୁପତେ ଗୋମନ୍ତ ପର୍ବତେ
ଯୋଦ୍ଧାଗଣ ରଣ ଆଶେ ରହନ୍ତୁ ଏଥିରେ
ସୁସ୍ଥିରେ କରିବା ଯୁଦ୍ଧ ସୈନ୍ୟବଧ ସାଧି
କୃଷ୍ଣ ଆଜ୍ଞା ମତେ ଧନକୁଟୁମ୍ବ ସମସ୍ତ
ଘେନି.ଉଗ୍ରସେନ ଗଲେ ଗୋମନ୍ତ ପର୍ବତେ
ମଥୁରାରେ ଥିବା ଶୁଣି ପୁଣି ଭାଇବେନି
ସରୋଷେ ବାହିଲେ ଜରା ବାହିନୀ ବହନେ
ପୁନଃ ଯୁଦ୍ଧେ ବହୁଯୋଦ୍ଧା ବଧି ବେନି ଭାଇ
ମନ୍ଦରକାନନେ ଯାଇ ରହିଲେ ଗୋପନେ
ଶତ୍ରୁସାଧ୍ୟ ନୋହିବାରୁ ସେ କ୍ରୋଧେ ଅଧୀର
ହୋଇ ଜରା ରକ୍ତମୁଖେ ବିରକ୍ତି ପ୍ରକାଶି
କହିଲେ ନୃପତଗଣେ କେହି ହେଲେ ଜଣେ
ଏତେ ରଣେ ଧରି ନ ପାରିଲାଁ ଗଉଡ଼ଙ୍କୁ
ଧିକ ଆମ୍ଭ କ୍ଷତ୍ରପଣ ଦୁଃଖହିଁ ସେ ସାର
ହସିବେ ସଂସାର ଶୁଣି ଲଜ୍ଜାରେ ମଜ୍ଜିବା

ବଡ଼ ମାୟାବୀ ବେନିହେଁ ନୁହନ୍ତି ସାମାନ୍ୟ
ଧରୁଁ ଧରୁଁ କରୁ ଖସି ପଳାନ୍ତି କୌଶଳେ
କେବଣ ବିଧିରେ ତାଙ୍କୁ ଧରିବା ତା କହ
ଅଛ ଏଥେ ମହାରଥ ସମରଥ ଯୋଦ୍ଧା;
ଶୁଣି ଭାଷେ ଦମଘୋଷ ହେ ରାଜାଧିରାଜ !
ପଳାନ୍ତକ ଲୋକର କି ଧୈର୍ଯ୍ୟ ବୀର୍ଯ୍ୟ ଥାଏ
ସ୍ୱଭାବେ ଗଉଡ଼ ମୂଢ଼ ଯୁଦ୍ଧ ନ ଜାଣନ୍ତି
ପଳାନ୍ତି ଦେଖିଲେ ଟାଣରଣ ପ୍ରାଣଭୟେ
ନାହିଁ ଦୁହିଁଙ୍କରଠାରେ ଲବେ ମାତ୍ର ଓଜ
ଓଜ ଥିଲେ ଲଜ୍ଜାବର୍ଜି ପଳାନ୍ତେ କି ଦୁହେଁ
ଏଥିକି ଶୋଚନା ତୁମ୍ଭପରି ମହାମନା
ବ୍ୟକ୍ତିର କରିବା ଯୁକ୍ତି ନୁହେ ମହାବାହୋ !
ହାରିବା ଜିଣିବା କ୍ଷତ୍ରଙ୍କର ଅଟେ ଧର୍ମ
ଅନୁଚିତ କର୍ମ ତହିଁପାଇଁ ଅନୁଚିନ୍ତା
ସମୟେ ବାହିନୀ ବାହି ଆସି ଏ ମଥୁରା
ରୁନ୍ଧି ବାନ୍ଧି ଘେନି ଯିବା ବେନିଙ୍କି ସେଥର
ପରବେଶ କଲା ଆସି ବରଷା ସମୟ
ସମର ନିବାରି ଫେରିଯିବା ସମୁଚିତ
ବରଷିଲେ ଆମ୍ଭେ ଥାଟ ଗଣ କଷ୍ଟ ହେବ
ଭିଜି ଭିଜି ଗଜବାଜୀ ନିମଜ୍ଜିବେ ଦୁଃଖେ
ଶୁଣି ଦମଘୋଷ ବାଣୀ ଜରା ହେଉଁ ମୌନ
ସଚିବ ଗୁଣଭୂଷଣ ଅଚିରେ ସୂଚିଲେ
ସତ୍ୟ ସତ୍ୟ ମହାରାଜ !  ରାଜରାଜେଶ୍ୱର !
ଭାଷିଲେ ଯା ଦମଘୋଷ ବିବେକୀ ନୃମଣି
ଆଗତ ବରଷା ରସା ହେଲେ କର୍ଦ୍ଦମାକ୍ତ
କଷ୍ଟେ ନିମଜ୍ଜିବେ ଥାଟ ପୁଣି ନରରାଟ
ଆଦେଶନ୍ତୁ ନିଜ ଦେଶେ ଯାଅନ୍ତୁ ନରେଶେ
ନୀରଦ ହୀନ ଶରଦେ ଅଣାଇବା ପୁଣି
ମନ୍ତ୍ରୀ ବାକ୍ୟ ଶୁଣି ମନେ ମନେ ଗୁଣି ଜରା

ଭାଷିଲେ ତେବେ ଏକାର୍ଯ୍ୟ କରି ଯିବା ରାଜ୍ୟେ
ଜାତ ମୋର କ୍ରୋଧ ଶତ୍ରୁ ନୋହିବାରୁ ସାଧ୍ୟ
ବିଧ୍ୱଂସ ମଥୁରା କଂସ ସଦନ ନ ଧ୍ୱଂସି
ଆଜ୍ଞାମତେ ପଦାତିକ ପୁଣି ଭୃତ୍ୟ ନେଇ
ଭାଙ୍ଗିଲେ ପାଚେରୀ ପୁର ଦ୍ୱାର ନୃପବରେ
ବାସ ଭୂଷା ଧନରତ୍ନ ଥିଲା ତହିଁ ଯାହା
ତୁଚ୍ଛା କରି ଇଚ୍ଛାମତେ ଆଣିଲେ ସମସ୍ତ
ଘରେ ଘରେ ଲଗାଇଲେ ଅଗ୍ନି ଆଣି ପୁଣି
ଜ୍ୱଳିଲା ମଥୁରାପୁର ତ୍ୱରା ହୁହୁ ହୋଇ
ଦେଖି ଜରାସନ୍ଧ ବହି ହୃଦୟେ ଆନନ୍ଦ
ଫେରାଇଲେ ସୈନ୍ୟବଳ ଭୂପାଳଙ୍କ ମେଳେ
ଆଦେଶିଲେ ପଥେ ନରନାଥେ ଏହିମତେ
ଯାଅ ସର୍ବେ ନିଜ ଦେଶେ ଆସିବ ଆଦେଶେ
ଆଜ୍ଞା ମୋ ଅବଜ୍ଞା କଲେ ହେବ ରାଜ୍ୟଭ୍ରଷ୍ଟ
ଗିରିକାଟ ହେବ ପୁଣି ସୁନିଷ୍ଠୁର ଭାବେ
ଏତେ ଭାଷି ଦୁଃଖେ ଭାସି ସେନାଘେନି ସାଥେ
ଚଳିଗଲେ ଜରା ନିଜରାଜ୍ୟେ ପଥ ବାହି
ଦୁଷ୍ଟର ସ୍ୱଭାବ୍ ଏହା ଭାବ ହେ ମାନବ
ପରାନିଷ୍ଟ ବିନା ତେଜଇ ମନଃ କଷ୍ଟ
ବାର୍ତ୍ତା ପାଇ ଦୁଇଭାଇ ମଥୁରା ପ୍ରବେଶି
ବିଶ୍ୱକର୍ମା କରେ ପୁଣି ନିର୍ମାଇଲେ ପୁର
ଉଗ୍ରସେନେ ଧନେ ଜନେ ଅଣାଇ ନଗରେ
ରହିଲେ ହୃଦ ଆହ୍ଲାଦେ ଭୀତି କି ନ ଚିନ୍ତି
ଦୁଃଖେ ପଡ଼ିଲେ ହେଁ ଯେ ନ ଛାଡ଼େ ନ୍ୟାୟଧର୍ମ
ଶୁଭ ଫଳ ପ୍ରାପତ ହୁଅଇ ତାକୁ ନିତ୍ୟେ

ଇତିଶ୍ରୀ ଜରାସନ୍ଧବଧ ବାକ୍ୟେ ସପ୍ତବାର ଜରାସନ୍ଧ ଆକ୍ରମଣେ
ନାମ ଦଶମଃ ସର୍ଗଃ ।

---

## ଏକାଦଶ ସର୍ଗ

ବିଷମ ଗ୍ରୀଷମ ଅନ୍ତେ ବରଷା ନରେଶ
ପ୍ରବେଶିଲା ଜବେ ଭବେ ପ୍ରକାଶି ପ୍ରଭାବ
ପ୍ରତ୍ୟକ୍ଷ ଅଦଭ୍ର ଅଭ୍ରେ ଅଗ୍ରେ ଦିଗ୍‌ବଳୟେ
ପେଷନ୍ତେ ଧାଇଁଲେ ବ୍ୟଗ୍ରେ ଧରି ଉଗ୍ରମୂର୍ତ୍ତି
ପ୍ରକମ୍ପାଇ ବିଶ୍ୱ ଘୋର ଉଦଗ୍ର ନିନାଦେ
ଗ୍ରାସିଲେ ସମଗ୍ର ନଭଃ ଅଗ୍ରଗତି ବହି
ସଦରେ ଉଦରେ ରହି ତାରା ରବି ଶଶୀ
ନିଜ ତେଜ ବଣଜିଲେ ଧରାଜନ ପରା
ଘନଘଟା ଘୋର ଅନ୍ଧକାର ଦଶ ଦିଶେ
ଘୋଟିଦେଲା ଅତ୍ୟୁତ୍କଟ ବେଶେ ତେଣୁ ଆସି
ପ୍ରବଳେ ସଲିଳ ଢାଳି ବରଷା-ଆସାର
ସୁଶୀତଳ କଲା ତାପ ଭରା ଧରା ଦେହ
ବିଜୁଳି ଝଟକେ ଘନ ନାଦି ଘଟଘଟେ
ଫୁଟାଇଲା ବଜ୍ରବାଣ କର୍ଣ୍ଣବିଷାୟନ
ଚଡ଼ ଚଡ଼ କଡ଼ କଡ଼ ଶବ୍ଦ ଶୁଣି ଯାର
ଚମକି ଚକିତ ଭଢେ ବିଶ୍ୱବାସୀ ଜୀବ
କେବେ ଅବା ଅଙ୍ଗେ ବହି ଶକ୍ରଶରାସନ
ଦେଖାଏ ବିବିଧରଙ୍ଗ ରଞ୍ଜି ସପ୍ତରଙ୍ଗେ
ଜନ୍ମାଇ ଦୁର୍ଦ୍ଦିନ କେବେ ଦିନକରେ ରାତ୍ର
ରାତ୍ର କରେ ମହାରାତ୍ର ଗାଢ ତମ ବଶେ
ନଦୀନାଳ ଖାଲ ଝିଲ ଆଦି ଜଳେ ପୂର୍ଣ୍ଣ
କେତେ ବନ୍ଧଭାଙ୍ଗି ବଳେ ପଳାନ୍ତି ସିନ୍ଧୁକୁ
ଯାବତ ବିଷମ ସ୍ଥଳ ଦିଶେ ସମତଳ
ନୀରପୂର ହୋଇବାରୁ ଅକୂପାର ରୂପେ
ଧରଣୀ ପଙ୍କିଳ ପୁଣି ସରଣି ପିଚ୍ଛିଳ

ଖସେ ପଥିକର ପଦ ହସେ ଜାନପଦ
ହଜାଇ ଖୋଜଇ ପନ୍ଥା ପାନ୍ଥ ଶ୍ରମ ପାଇ
ଯବସର ବର୍ଣ୍ଣୁ ହେଉଁ ଗମ୍ୟ ପନ୍ଥା ଭ୍ରମ
ତରୀ ଘେନି ନଦୀତୀରେ ଜଗଇ ତରାଇ
ତିତୀର୍ଷୁକୁଳକୁ କୂଳେ ଲଗାଇବା ଲାଗି
ଜ୍ୟୋତିରିଙ୍ଗଣ ଗଣ ଏକାଳେ ରାତ୍ରେ ଜ୍ୟୋତି
ପ୍ରକାଶନ୍ତି ଥରେ ଥରେ ଅଥୟ ଗତିରେ
ଝଙ୍କାରିଏ ଝିଁ ଝିଁ ରୁତ ନିଭୃତେ ଝଙ୍କାରି
ରଜନୀର ଭୀଷଣତା ବଢାନ୍ତି ଦ୍ୱିଗୁଣେ
ଝଞ୍ଜାନିଳ ଗ୍ରହିବାରୁ ଶୀକର ନିକର
ଶୈତ୍ୟ ଆସି ପ୍ରବେଶଇ ଶରୀରୀ ଶରୀରେ
ଡାହୁକ ଶାମୁକ ଭେକ କରେ ମକମକ
ଆଶା ବର୍ଣ୍ଣୁ ଲଭି ନବ ଆସାରକିସର
ହରିତ ସତୃଣେ ଶୋଭେ ଇନ୍ଦ୍ରଗୋପକୀଟ
ମରକତ ସଙ୍ଗେ ଯୁତ ମାଣିକ୍ୟ ସଂଘାତ
ଛତ୍ରର ଆକାରେ ଫୁଟେ ଛସକ ନିକର
ଧରାଏ ଧରାକୁ ନିଜ ଛତ୍ର ବା ବରଷା
କୃଷକେ ଚଷନ୍ତି କ୍ଷେତ୍ର ଗ୍ରାମ୍ୟଗୀତ ଗାଇ
ସଞ୍ଚିତ ଶସ୍ୟରାଶିକୁ ବିଞ୍ଚି କ୍ଷେତ୍ର ମଧ୍ୟେ
ଜାତୀ ଯୂଥି କରବୀର ମାଳତୀ ତଗର
କେତକ କଦମ୍ବ ଆଦି କୁସୁମ-କଦମ୍ବ
ବିକାଶ ହୁଅନ୍ତି ବନ ଉପବନେ ରହି
ବରଷାର ପରସାଦୁଁ ପାଇ ନବନୀର
ଏଭାବେ ବରଷାରାଜା ରାଜତ୍ୱ ସାରନ୍ତେ
ତଦନ୍ତେ ନୀରଦହୀନ ଶରଦ ପ୍ରବେଶ
ଏକାଳେ ଦିନେ ବୈକାଳେ ବୃହଦ୍ରଥବାଳ
ନୋହିବାରୁ ଶତ୍ରୁସାଧ୍ୟ ଅଧୀର ମାନସେ
ନିମନ୍ତି ମନ୍ତ୍ରିକି ଖରେ ମନ୍ତ୍ରଣାର କକ୍ଷେ

ଭାଷିଲେ ବକ୍ଷଃଯନ୍ତ୍ରଣା ରାଶିକୁ ଏ ଭାବେ
କେଉଁ ବୁଦ୍ଧି ବଳେ ହେବ ଶତ୍ରୁମୋର ସାଧି
କହ ବୁଦ୍ଧିମନ୍ତ ମନ୍ତ୍ରୀ ! ଆଧି ହେଉ ଦୂର
ନୁହନ୍ତି ସାମାନ୍ୟ ବେନି ବଡ଼ ସେ ମାୟାବୀ
ଧରୁ ଧରୁ କରୁ ଖସି ପଳାନ୍ତି କୌଶଳେ
କାର୍ଯ୍ୟ ଇଚ୍ଛି ଷଣ୍ଡବତି ସହସ୍ର ନରେଶ
ସଙ୍ଗେ ଘେନି ଗଲି କାର୍ଯ୍ୟ ନୋହିଲା ତ କିଛି
ଶୁଣି ଗୁଣଭୂଷଣ ଭାଷଣ କଲେ ଏହା
ଭୋ ମଣିମା ଧୈର୍ଯ୍ୟହୀନେ ନୁହେ କାର୍ଯ୍ୟ ଭଲେ
ବଳେ ନୋହିଲେ କୌଶଳେ ଶତ୍ରୁ ହେବ ସାଧି
ସେଥି ପାଇଁ ବୃଥା ବ୍ୟଥା କିପାଁ ମହାରାଜ !
ଅଛନ୍ତି ମହୀରେ ମହା ମହା ଶୂରବୀର
ତେଜ ଓଜ ପ୍ରତାପେ ଯା ଭାସନ୍ତି ତ୍ରିଦଶ
ଅବାଧ୍ୟ ଅସାଧ୍ୟ ପୁଣି ନେତାଙ୍କର ଜେତା
ପ୍ରୀତି ବଶେ ସେମାନଙ୍କୁ ଅଣାଇବା ରଣେ
ଧନରତ୍ନ ବାସ ଭୂଷା ଉପହାରମାନ
ଭୃତ୍ୟେ ହାତେ ଦେଇ ଦୂତ ପେଷି ମିତ୍ରଭାବେ
ତାହେଲେ ଅବଶ୍ୟ ବଶ କରି ଅରାତିଙ୍କି
ବାନ୍ଧି ଆଣିଦେବେ ତବ କତିକି ହେ ଦେବ !
ପଶ୍ଚିମ ସୋମରାଷ୍ଟ୍ରରେ ଧୃତରାଷ୍ଟ୍ରଚାଟ୍
ମହାଗର୍ବେଶ୍ୱର ଦୁର୍ଯ୍ୟୋଧନ ନାମେ ରାଜା
ଧନବନ୍ତ ବଳବନ୍ତ ନୃପତିମଣ୍ଡଳ
କରେ ଯା ବିରାଜେ ଶଙ୍ଖନିଧି ପଦ୍ମନିଧି
ଉନଶତ ଭ୍ରାତା ତାର ପୁଣି ସପ୍ତରଥୀ
ଜଣେ ଜଣେ ପୃଥ୍ୱୀ ମନ୍ଥି ପାରନ୍ତି ସେ ରଣେ;
ବାରୁଣାବନ୍ତର ଧର୍ମବନ୍ତ ଯୁଧିଷ୍ଠିର
ଯାର ବେନିଭ୍ରାତା ଭୀମାର୍ଜୁନ ଜଗଜ୍ଜୟୀ
ସହଦେବ ନାମେ ଭ୍ରାତା ତ୍ରିକାଳ ଦରଶୀ
ବାମ କର ନିରେଖିଲେ ଦୃଶ୍ୟ ହୁଏ ସବୁ

ପୁଣି ଏକ ଭାଇ ତାର ନାମ ଯା ନକୁଳ
ବହେ ଅରାତିଅନ୍ତକ କୁନ୍ତ ଅସ୍ତ୍ରଗୋଟି
ବୋଲାନ୍ତି ପଞ୍ଚପାଣ୍ଡବ ବିଖ୍ୟାତ ଜଗତେ
ଶୌର୍ଯ୍ୟେ ବୀର୍ଯ୍ୟେ ତାଙ୍କ ସମ ନାହିଁ ଏ ମହୀରେ;
ଉତ୍ତରକୋଶଳେ ରାଜେ ଶଙ୍ଖପୁର ରାଜ୍ୟ
ତହିଁ ରାଜା ଯମାଇଷ୍ଟ ସଂଗ୍ରାମେ ଗରିଷ୍ଠ
ଯମବରେ ବାମକରେ ବହେ କାଳଚକ୍ର
ତେଣୁ ରଣେ ବୀରପଣେ କାହାକୁ ନ ଗଣେ
ଦକ୍ଷେ ଲେଖି ବାମେ ପୋଛେ ଯେବେ ଶତ୍ରୁନାମ
ସେନା ସହ ଶତ୍ରୁ ପିଣ୍ଡ ହୁଏ ବେନିଖଣ୍ଡ;
କରବୀର ପୁଣ୍ଡରୀକ ବାସୁଦେବ ବୀର
ଶ୍ରଦ୍ଧାହୀନେ ସ୍ପର୍ଦ୍ଧା ରଖି ବାସୁଦେବ ପ୍ରତି
କାଷ୍ଠର ଗୁରୁଡ଼େ ଚଢ଼େ ବହି ଚାରି ଭୁଜ
ଶୂନ୍ୟପଥେ ଗମେ ପୁରି ଯନ୍ତ୍ରର କୌଶଳେ
ଶିଳ୍ପ କଳା ବିଶାରଦ ଶତ୍ରୁଭୀତିପ୍ରଦ
ମାୟାବୀ କାମଚାରୀ ସେ ବଳେ ବଳୀୟାନ;
ବଳିରାଜା ବଂଶଧର ବାଣାସୁର ଶୂର
ଶୋଣିତପୁରର ଅଧୀଶ୍ୱର ଅଟେ ଯେବା
ହରବରେ ସହସ୍ରକର ସେ ବହେ ଦେହେ
ସଂଗ୍ରାମେ ଯୋଟିବ ତାକୁ କିଏ ଏମହୀରେ
ତିନିକାଳଜ୍ଞାତା ତାର କୁଷ୍ମାଣ୍ଡ, ଅମାତ୍ୟ
ଜଣାଏ ଛାମୁରେ ଆସି ଶତ୍ରୁ ଛେଦ ଭେଦ
କର୍ଣ୍ଣେ ନ୍ୟସ୍ତ କରି ହସ୍ତ ଜାଣି ସେ ସମସ୍ତ
କାମେଶ୍ୱରୀ-ପୁରେଶ୍ୱର ନରକ ଅସୁର
ବରାହର ବୀର୍ଯ୍ୟେ ଜାତ ମହୀଆଳୀ ଗର୍ଭୁ
ଜଳ ସ୍ଥଳ ଅନଳେ ସେ ନୁହଇ ବିନାଶ
ସମରେ ଦୁର୍ବାର ପୁଣି ଦୁର୍ଜ୍ଜୟ ଜଗତେ;
ଶାଖାପୁର ମହୀଶ୍ୱର ବୀର ବଜ୍ରନାଭ
ବଜ୍ରଭେଦି ନପାରେ ଯା ଦୁର୍ଭେଦ୍ୟ ଶରୀରେ

ଅଗ୍ନିର ପ୍ରାଚୀର ତପ୍ତ ଘୃତର ପରିଖା
ପୁରେ ବିରାଜଇ ତାର ଗଡ଼ର ସ୍ୱରୂପେ
ବଡ଼ସେ ମାୟାବୀ ପୁଣି ଅଟେ କାମରୂପୀ
ଜିଣଇ ଦେବଦାନବ କି ଛାର ମାନବ;
ସରରବତି କ୍ଷିତିପତି ନାମ ଯା ଶମ୍ବର
ସ୍ୱୟଂବରଣ କରଇ ବଇରୀକି ଯେବା
ଜାଣେ ନାନାମାୟେ ଦୈତ୍ୟ ଧରେ ନାନାକାୟା
ରଣେ ନ ଯୋଟନ୍ତି ଜଣେ ନାଗସୁରାସୁର
ଶୂରବୀର ପ୍ରତାପୀ ସେ ପୁଣି ରଣରାହୁ
ଶତଶତ୍ରୁ ଶିର ତୁଟେ ଅସି ଚୋଟେ ତାର;
କାଉଁରୀପାଟଣାରାଟ ଗୋସିଂହ ଦାନବ
ଉଚ୍ଛାଇ ମାନବ ଯେବା ଜୀବନ୍ତେ ଆହରି
ଶୂନ୍ୟପଥେ ଗମେ ତାର ଲୌହମୟ ରଥ
ସୁରାସୁରଜୟୀ ପୁଣି ବିଜୟୀ ତା ବାନା
ଅନିର୍ବାର ବଜ୍ରଶକ୍ତି ବଳେ ଏ ଶୟଳେ
ଇନ୍ଦ୍ର ରୁଦ୍ର ହେଲେ ମଧ୍ୟ ନ ଡରଇ ଯୁଦ୍ଧେ;
ମେରୁମେଖଳ ପାଳକ ନାମ ମୃଗସେନ
ମୃଗୀ ଗର୍ଭୁ ବ୍ୟାସବୀର୍ଯ୍ୟୁ ଯାହାର ଉଭବ
ବଜ୍ରସମ ଦୃଢ଼କାୟ ପୁଣି ଚିରଜୀବୀ
ଜୀବିତେ ବାନ୍ଧଇ ଶତ୍ରୁ ମସ୍ତକ ନ ହାଣି;
ଚନ୍ଦ୍ରକାନ୍ତି-ପୁରକାନ୍ତ ସେ କାଳ-ଦମନ
ଦମନ କରି ପାରଇ ନାମକୁ ସମରେ
ଜନ୍ମୁ ନବ ଯୁବା ଯେବା ସଦାଶିବ ବାକ୍ୟେ
ଅବାଧ ଅବାଧ୍ୟ ଶତ୍ରୁକୁଳକାଳାନ୍ତକ
ଯଦୁବଂଶ ଧ୍ୱଂସ ଅର୍ଥେ ତାହାର ଜନମ
ତେବେ ବେନି ଭ୍ରାତା ତାକୁ କେତେକ ମାତର;
ମନ୍ତ୍ରୀବାଣୀ ଶୁଣି ଜରାସନ୍ଧ ମହାନନ୍ଦେ
ତତକ୍ଷଣି ଡକାଇଲେ ଦୂତଭୃତ୍ୟଚୟ

ଲେଖଲେଖି ମୁଦ ମୁଦି ଦେଇ ଦୂତହାତେ
ପୁଣି ଉପହାର ଭାର ସ୍ୱଭୃତ୍ୟେ ବୁହାଇ
ପ୍ରେରିଲେ ଅଚିରେ ମିତ୍ରରାଜାଙ୍କ ଗୋଚରେ
ନିଜ ଲଘୁତ୍ୱ ବିଚାରି ପ୍ରଚାର ନ କରି
ଆବର ବରଗି ଦୂତ ଧରାରୂପ କତି
ପେଶିଲେ ଝଟତି ଆଶୁ ଆସିବା ନିମିତ୍ତ
କେତେ ଦିନ ଅନ୍ତେ ପୁଣି ଶତ୍ରୁସାଧ୍ୟ ଚିନ୍ତା
ପଶନ୍ତେ ଜରାସନ୍ଧଙ୍କ ଚିତ୍ତନିକେତନେ
ଆମନ୍ତ୍ରି ମନ୍ତ୍ରିକି ଆଶୁ ଆପଣାର ପାଶେ
ବିଭାଷିଲେ ସାଜ ଆଜ ଯାବତ ବାହିନୀ
ଆହୂତ ବହୂତ ରାଜା ଆସିଥିବେ ଏଥେ
ଅଥବା କେ ଆସିନାହିଁ କହ ମୋ ଅଗ୍ରତେ
ଶୁଣି କହେ ମନ୍ତ୍ରିମଣି ଭୋଦେବ ! ଶୁଣନ୍ତୁ
ବିରାଜିତ ଏତେ ରାଜା ଯୁଦ୍ଧେରଖି ମଜା
ଶାଲ୍ୱ ଶିଶୁପାଳ ଦନ୍ତବକ୍ର ଦମଘୋଷ
ବଜ୍ରନାଭ ସ୍ୱୟଂବର ନାରକା ରୁକ୍ମଣ
ଗାନ୍ଧାରସେନ ବିରାଟ କୋନ୍ତଭୋଜ ବାଣା
ଦୁର୍ଯ୍ୟୋଧନ କାଳିଞ୍ଜନ ଅଭୟେ ନନ୍ଦନ
ତ୍ରିଗତ ତ୍ରିକାଳବାସୁଦେବ ପୁଣ୍ଡରୀକ
ସୌଦାସ ଶଶାଙ୍କ ଶିବ ଭରିଶ ମଲ୍ଲର
ଦୁଷ୍ମନ୍ତ କଳିଙ୍ଗସେନ ନିର୍ଭୀତ୍ୟ ନିଶଙ୍କ
ଜୀବଧର ଯଦୁରଥ ଯାଚା ନାଶକର
ଉଗଦତ୍ତ କଉଶିକ ଚୂଡ଼ଙ୍ଗ ତ୍ରିଲିଙ୍ଗ
ଜ୍ୟୋତିଲିଙ୍ଗ ସାରସ୍ୱତ ଜୟସିଂହ ଭବ
ଅସ୍ୱପ ତୁରୁକ ହିନ୍ଦୁ ଯବନ କିରାତ
ଇତ୍ୟାଦି ବହୁରାଜନ ବହୁ ସେନା ଘେନି;
ଅକଳିତ ଅକୂପାର ପ୍ରାୟେ ସେନା ମାଡ଼ି
ରହିଛନ୍ତି ଇଛନ୍ତି ସେ ଯୁଦ୍ଧ କ୍ରୋଧ ବହି;

ମୂର୍ଦ୍ଧାଅଭିଷେକୀ ଯେ ନୁହନ୍ତି କାର ବଶ
ସେହି ରାଜାମାନେ ମାତ୍ର ନଇଲେ ଏସ୍ଥାନେ
କାଳଦମନ, ଗୋସିଂହଦୈତ୍ୟ, ମୃଗସେନ,
କିଷ୍କିନ୍ଧ୍ୟାରାଜନ, ଉଗ୍ରସେନ, ଯୁଧିଷ୍ଠିର
ଅଯୋଧ୍ୟାର ଯୋଦ୍ଧାବର ଲଗ୍ନାଜିତ ରାଜା,
ମହେନ୍ଦ୍ର ଦେଶରେ ଶିବପାଳ, ମହୀଶ୍ୱର
ଜଙ୍ଘାରପର୍ବତନାଥ ସେ ନଳ ଭୂପାଳ,
ଏମାନଙ୍କ ଭିନ୍ନ ଥିଲେ ଅନ୍ୟ ବହୁ ଭୂପ;
ଏ ବାହାରେ ହସ୍ତିନାର ଭୀଷ୍ମ ମହେଷ୍ୱାସ
ଗଙ୍ଗାବରେ ଇଚ୍ଛାମୃତ୍ୟୁ ଅଛି ଟି ଯାହାର
ଅଟଳ ପ୍ରତିଜ୍ଞ ଚିରକୁମାର ବରତୀ
ମେଣ୍ଟାଇଥିଲେ ଯେ ପର୍ଶୁରାମ ଯୁଦ୍ଧ ଶଧ;
ଦୃଷ୍ଟିଭେଦୀ ଦ୍ରୋଣାଚାର୍ଯ୍ୟ ବୀରକୁଳବର୍ଯ୍ୟ
ବ୍ୟୂହ ରଚନାରେ ଯେବା ଅଟେ ଧୁରନ୍ଧର
ଧନୁର୍ଦ୍ଧର କୃପବ୍ରହ୍ମା ବ୍ରହ୍ମଶରଘାତୀ
ମହାରଥ ଅଶ୍ୱଥାମା ଚିରଜୀବୀ ଯେବା;
ସିନ୍ଧୁରାଜ ଜୟଦ୍ରଥ ଉମାନାଥ କରୁ
ଲଭିଛି ଯେ ଭୟଙ୍କର ଶତ୍ରୁଧ୍ୱଂସୀ ଶୂଳ,
ଅଙ୍ଗରାଜ୍ୟରାଜ କର୍ଣ୍ଣ ବୀରଚୂଡ଼ାମଣି
ଦେଇଛନ୍ତି, ସୂର୍ଯ୍ୟ ଯାକୁ ଅମୋଘ ମଣିକି
ଆବର ବଜ୍ରକବଚ ଅମୃତ କୁଣ୍ଡଳ
ବଜ୍ରପାଣି ଆଖଣ୍ଡଳ ଡରେ ଯାକୁ ରଣେ
ମଦ୍ରନାଥ ମଲ୍ଲଶଲ୍ୟ ଯା ବଜ୍ରବାଟୁଳି
ଘାତେ ଗିରିବର ଫୁଟେ ଛାର ଶତ୍ରୁଗାତ୍ର,
ବୀରଭାନୁ ଭୂରିଶ୍ରବା ଦୁହେଁ ମହାକ୍ଷତ୍ର
ଅକ୍ଲେଶେ ଜିଣିପାରନ୍ତି ସସାଗରାଧରା,
କୂଟକପଟ ଭଣ୍ଡାର ଗାନ୍ଧାର ଶକୁନି
ଦୁର୍ଜ୍ଜୟ ଅଶନିସୃଙ୍କେ ଯେହୁ ବିନା ଘନେ,

ଯୁଯୁତ୍ସୁ ବିକର୍ଣ୍ଣ ଆଦି ମହାଯୋଦ୍ଧା ଗଣ;
ଆସି ମିଶିଛନ୍ତି ପୁଣି ସେନା ସିନ୍ଧୁ ସଙ୍ଗେ
ତା ଶୁଣି ଆନନ୍ଦେ ଜରା ମଜ୍ଜା ନିମଜ୍ଜାଇ
ଯାଇ ସଭାଜନ କଲେ ଆହୂତ ରାଜନେ
କହିଲେ ହେ ମିତ୍ରବୃନ୍ଦ ! ତବ ଉପଗତେ
ଲଭିଲି ମୁଁ ତୋଷ ଦୋଷ ନ ଘେନିବ ମନେ
ବାସ ଗ୍ରାସ ନିତ୍ୟନିଧି ମାନଙ୍କେ ଅବିଧି
ହୋଇଥିବ ଅବା ବୋଲି ମାନସେ ମୋ ଚିନ୍ତା
ଶୁଣି ତହିଁ ରାଜାଏ ଭାଳନ୍ତି ମହାରାଜ !
ନାହିଁ କିଛି କଷ୍ଟ ତୁଷ୍ଟ ଭାବେ ଅଛୁଁ ସର୍ବେ
ତୁମ୍ଭ ଉପକାର କରିବାକୁ ଚିତ୍ତେ ଅଧାୟି
ଆସିଅଛୁଁ କିବା ଇଚ୍ଛ କହ ମିତ୍ରବର !
ଭାଷିଲେ ମଗଧାଧୀଶ ନନ୍ଦଗଉଡ଼ର
ବଡ଼ମନ୍ଦ ରାମକୃଷ୍ଣ ନାମେ ପୁତ୍ରଦ୍ୱୟ
ଅକାରଣେ ନାଶିଲେ ମୋ ନପ୍ତା ଜାମାତାଙ୍କୁ
ମୂଢ଼ ପଣେ ବିନାରଣେ ମଥୁରା ପ୍ରବେଶି
ବହୁରଣେ ସେହୁ ସାଧ୍ୟ ନୋହୁଁ ବାଧ୍ୟ ହୋଇ
ଅଣାଇଲି ସେ କାରଣେ ତୁମ୍ଭ ସମସ୍ତଙ୍କୁ
ସଙ୍ଗେ ଘେନି ଷଣ୍ଣବତି-ସହସ୍ର ନରେଶ
ସପ୍ତବାର ଆକ୍ରମିଲି ବିକ୍ରମ ପ୍ରକାଶି
ବହୁ ମାୟାବୀ ବେନିହେଁ ଧରୁ ଧରୁ କରୁ
ଖସି ଯାନ୍ତି ମରଣର ଡରେ ରଣ ସ୍ଥଳୁ
ତୁମ୍ଭେ ସର୍ବେ ବୁଦ୍ଧିମନ୍ତ ବଳବନ୍ତ ଯୋଦ୍ଧା
ଏକେ ଏକେ କରିଯାର ହେଲେ ପୃଥ୍ୱୀ ସାଧ୍ୟ
କି ବୁଦ୍ଧି କରିବା ତାଙ୍କୁ ଧରିବା କି ଭାବେ
ତହିଁକି ଉପାୟ ବିହ କୃପା ପରକାଶି
ଏକତା ସୃଜଇ ସିନା ବହୁଜନ ପ୍ରୀତି
ତାର ଯୋଗେ କରିହୁଏ ଅସାଧ୍ୟସାଧନ

ବଳିଷ୍ଠ ଶାର୍ଦ୍ଦୂଳଦଳ ହୋଇଲେ ସଂକୁଳ
ନ ନାଶେ କି ଶଶକବଂଶକୁ ଅନାୟାସେ
ମହା ମହା ରାଜା ପୁଣି ମହା ମହା ବୀର
ଯୋଟିଛ ଏକତ୍ର ବେନି ଶତ୍ରୁ କେତେ ମାତ୍ର
ଦେଖାଅ ପ୍ରଭାବ ଏକତାର ମିତ୍ରତାର
ମତ୍ତଇଭେ ବାନ୍ଧିବାର ତୃଣଗୁଚ୍ଛ ନିଭ
ଦେଖୁ ଶତ୍ରୁ ତୁମ୍ଭ ତେଜ ଓଜ ଶୌର୍ଯ୍ୟ ବୀର୍ଯ୍ୟ
ବିଜୟର ଧ୍ୱଜ ଉଡୁ ବିଶ୍ୱ ମଧ୍ୟେ ତବ
ଶୂର କୁଳେ ଜନ୍ମବହି ବହି ବାହୁବଳ
ଶତ୍ରୁ ନ ନାଶିଲେ ମିତ୍ରେ କିବା ଫଳ ତହିଁ
ନ୍ୟାୟାନ୍ୟାୟ ବିଚାର କି କାର୍ଯ୍ୟ ଉଜ କାଳେ
ନାନାମତେ ଅରାତିକି ନିପାତିବା ବିଧି
କେଶରୀ କେସରି ତାକୁ ହେଲେ ହେଲେ ତାହା
ପଡ଼ଇ କୌଶଳ ବଳେ ବ୍ୟାଧଜାଳ ଜାଲେ
କି କହିବି ସୁହୃଦେ ହେ ଅର୍ପୁଛି ହୃଦୟ
ସଦୟ ହୋଇ ମୋ କାର୍ଯ୍ୟ ସାଧ ଶରଧାରେ
ଲଭିଛି ତୁମ୍ଭଙ୍କୁ ଭାଗ୍ୟ ଯୋଗେ ମିତ୍ରପଣେ
ମୋ ପଣ କର ରକ୍ଷଣ ରଣଯାତ୍ରା କରି
ଶୁଣି ବଜ୍ରନାଭ ରାଜା ଗର୍ଜି ଘୋରନାଦେ
ସର୍ଜିଲା ଭାଷଣ ଜରାସନ୍ଧେ ଏହି ଭାବେ
ଏ ତୁଚ୍ଛ କଥାକୁ ମିତ୍ର ! ମନେ ଘେନି ପୀଡ଼ା
ମୂଷା ନାଶେ ମୂଷା ଲୋଡ଼ା ମତ୍ତଙ୍ଗଜ ଯୂଥ
ଅଛି ପାଶ ମୋର ପାଶ ବିନାଶ ନକରି
ବନ୍ଦୀ ରୂପେ ବାନ୍ଧି ତାଙ୍କୁ ସମର୍ପିବି ପାଶେ
ଚାଲ ସାଥ ମନୋରଥ ସାର୍ଥ ହେବ ତବ
ଦେଖାଅ ମଥୁରାପଥ ଆହେ ନୃପନାଥ !
କହୁଁ, ଶୁଣାନ୍ତେ ଘୋଷଣା ସର୍ବରାଟଥାଟ
ବାହାରିଲେ ବାହାନାଦେ ମୁରାଟକୁ ବହି

ବାଜିଲା ସମରବାଦ୍ୟ ଘନ ଘନ ନାଦେ
ପଟଟହ ଆନକ ଝମ୍ପା ଝର୍ଝରା ଘୁମୁରା
ଢୋଲଦମା ଭେଦୀ ତୂରୀ ରଣଶିଙ୍ଗା ଆଦି
ପଦାତିଙ୍କ ପଦାଘାତେ କମ୍ପିଲା ଅବନୀ
ଧାବନ୍ତି ଦୁର୍ମଦ ଯୋଧେ ବୀରମଦେ ମାତି
ଆୟୁଧ ଆସ୍ଫାଳି କ୍ରୋଧେ ବୃଦ୍ଧିଅଛି ବିଧି,
ବହୁଦୂର ପଥବାହି କେତେ ଦିନ ଗତେ
କଳିନ୍ଦନନ୍ଦିନୀ ତୀରେ ହେଲେ ଉପନୀତ
ଦୂତ ସେ ଉଦନ୍ତ ଘେନି ଉଗ୍ରସେନ ପାଶେ
ଜଣାନ୍ତେ, ଜାଣିଲେ ଦେବ ମାୟାଧର କୃଷ୍ଣ
ରଚିଲେ ମାୟା ସଂଭୂତ ଅଦ୍ଭୁତ କୌଶଳ
ନ ଜାଣେ ଯା ସୁର ନାଗ ଦାନବ ମାନବ,
କାକଚକ୍ଷୁସମପ୍ରଭା ଅସୀମ ଗରଭା
ଯମୁନା ଭଜିଲା ଶୁଷ୍କ କ୍ଷୀଣସ୍ରୋତେ ରାଜି
ଦିଶିଲା ସୈକତବ୍ରାତ ତିଳସ୍ତୂପବତ
ପ୍ରକାଶିଲା ନଦୀ ହୃଦେ ସୁରମ୍ୟ-ପଦବୀ
ଚାହିଁ ଭୂପବୃନ୍ଦ ବହି ହୃଦୟେ ଆନନ୍ଦ
ଝସାଇ ପଶିଲେ ନଦୀଗର୍ଭେ ସେନା ସହ
ଯମୁନା ମଧ୍ୟବର୍ତ୍ତିନୀ ସେନା ହେବା କାଳେ
ବଢ଼ିଲା ପ୍ରବଳେ ଜଳ ଘୋର ନାଦେ ନାଦି
ଧାଇଁଲା ଯମୁନା ଫେନପୁଞ୍ଜ ଉଦଗାରି
ଭ୍ରମିଲା ଭଉଁରୀଜାଳ ଜଳ ଉଦ୍ବେଳାଇ
ପଡ଼ିଗଲା ହାହାକାର ଯୋଦ୍ଧୃବର୍ଗ ମୁଖେ
ଦୁଃଖେ ରଡ଼ି ଛାଡ଼ିଲେ ତହିଁରେ ଗଜବାଜୀ
ଭାସିଗଲେ ଅଶ୍ୱଗଜ ପତ୍ତି ନରପତି
ଶିବିର ଶିବିକା ଖଟ ପର୍ଯ୍ୟଙ୍କ ଶକଟ,
ଆବର ଛତ୍ର ଚାମର କିରୀଟ କୁଣ୍ଡଳ
ଅସ୍ତ୍ର ଶସ୍ତ୍ର ବାସ ଭୂଷା ବହିଗଲେ କେତେ

ବହୁଯୋଧ ପୁଣି ମଲେ ଗଜବାଜୀ ତୁଲେ
କେତେ ବା ଲାଗିଲେ କୂଳେ ହୋଇ ହତଜ୍ଞାନ
ଭାସିଯିବା ଦେଖୁଛନ୍ତି ପରସ୍ପରେ ଯୋଦ୍ଧା
ମାତ୍ର ରକ୍ଷକାର ତହିଁ ହୁଏ କେ କାହାର
ଉଗ୍ରମୂର୍ତ୍ତି ବଜ୍ରନାଭ ଥିଲେ ଅଗ୍ରବର୍ତ୍ତୀ
କାହିଁ ଭାସିଗଲେ ତାର ନାହିଁ ଆଦିଅନ୍ତ
କଳାକଲ୍ଲୋଳମାଳିନୀ ଯମୁନାର ତହିଁ
ଯମଭଗ୍ନୀ ବୋଲାଇବା ସାର୍ଥ ହେଲା ନାମ
ଏହି ମତେ ମୃତ ଅର୍ଦ୍ଧମୃତ ହୋଇ ଯୋଦ୍ଧା
ତହୁଁ ପରପାରେ ଲାଗିଗଲେ-ତଟେ ଘାଟେ
ବହୁଛି ଶୀତଳବାୟୁ ଶୀକରସ୍ୱରଣି
କମ୍ପନ୍ତି ଯୋଦ୍ଧାଏ ସିକ୍ତ ବସ୍ତ୍ର ଗାତ୍ର ହୋଇ
ରାଜାବ୍ରଜ ଗର୍ବ ଗଞ୍ଜି ବିଷ୍ଣୁ ମାୟାବଳେ
ବଧ ନ ସାଧିଲେ ତାଙ୍କ ବନ୍ଧୁକାର୍ଯ୍ୟ ପାଇଁ
ଆକୁଳେ କୂଳେ ଯେକାଳେ ଲାଗିଲେ ସକଳେ
ଶୋଭାଇଲେ ଯେ ଯାହାର ସୈନ୍ୟବଳ ମାନ
ବହ୍ନି ଜାଳି ବର୍ଷ୍ମ ବସ୍ତ୍ର ବେନିଙ୍କି ଶୁଖାଇ
ରହିଲେ ସୁକଷ୍ଟେ ନଦୀତଟ ଆଶ୍ରାକରି
ବିରାଟ ଥାଟର ଦୁଃଖ ଦେଖି ଜରାସନ୍ଧ
ଶିରେ ନିବେଶିଲେ କର ପରିତାପେ ତାପି
ନିମଜ୍ଜନ ବାର୍ତ୍ତା ଯାଇ ବଜ୍ରନାଭଙ୍କର
ବହୁଜନ ନେଇ ଖୋଜାଇଲେ ନିଜେ ଯାଇ
ଦେଖିଲେ କେତେହେଁ ଦୂରେ ତୀରେ ପଡ଼ିଛନ୍ତି
ଛିଡ଼ିଅଛି ଆଣ୍ଠୁ ଗଣ୍ଡି ମୁଖ ଓଷ୍ଠ ଆଦି
କର ସମାର୍ଜ୍ଜନେ ତାଙ୍କ ସାନ୍ତ୍ୱନାକୁ ବିହି
ଆହରିଲେ ବାସ ସ୍ଥାନେ ଦେଖାଇ ସମ୍ମାନ
ଦୀନଭାବେ ସେହି ଦିନ ରହି ନଦୀ ତୀରେ
ରନ୍ଧନ ଭୋଜନ କରି ଯାପିଲେ ରଜନୀ

ମାୟାଧର ମାୟା ବୁଝି ନ ପାରି ସେ ଦୁଷ୍ଟେ
ପୁଣିହିଁ ଯୁଦ୍ଧ ଉଦ୍ୟମେ ବଳାଇଲେ ମନ
ପରଦିବସ ପ୍ରତ୍ୟୁଷେ ସଜାଇ ବାହିନୀ
ଚଳିଲେ ମଥୁରାପଥେ ଭୂପତି କଦମ୍ବ
ତେଣେ ସୁସଜ୍ଜିତ ହୋଇ ଦକ୍ଷଯଦୁବୀରେ
ରଣ ଅପେକ୍ଷାରେ ଜଗି ରହିଲେ ନଗର
କୃଷ୍ଣାଦେଶେ ଉଗ୍ରସେନ ଧନଜନ ଘେନି
ଗନ୍ଧମାଦନ ପର୍ବତଗାତ୍ର ଆଶ୍ରା କଲେ
କଟକେ ବିରାଟଥାଟ ପ୍ରବେଶି ରଉସେ
ଦୃଢ଼େ ବେଢ଼ିଲେ ତା ଚାରିଆଡ଼େ ସୈନ୍ୟପେଷି
ତେଣୁ ବେନିଦଳ ମଧ୍ୟେ ତୁମୁଳ ସମର
ଲାଗିଗଲା ବହୁକାଳ ଅକଳନା ଭାବେ
ବିଷ୍ଣୁବଳେ ବଳୀୟାନ ହୋଇ ଯଦୁବୀରେ
ବଧିଲେ ଅମାପ ଯୋଦ୍ଧା ସଙ୍ଗରର ରଙ୍ଗେ
ବହିଲା ରକତସ୍ରୋତ ଭାସିଯାନ୍ତି ଶବ
ନାଚନ୍ତି କବନ୍ଧବୃନ୍ଦ ଖେଚର ସହିତ
ତହିଁ ବହୁ ସୈନ୍ୟନାଶି ପୁଣି ଦୁଇଭାଇ
ତହୁଁ ଖରେ ପଳାଇଲେ ମଣିଉଦ୍ଭାଚଳେ
ହରିତୁଙ୍ଗାନଦୀ ଯାର ଶିଖରୁ ଉଭବି
ଧୋଉଅଛି ଗିରିଗାତ୍ର ଝର ଝର ନାଦେ
ନିର୍ମଳ ନାମକ ବଟ ସେ ସରିତତଟେ
ବଟ ତରୁ ଅଙ୍କେ ଗୁମ୍ଫା ସଙ୍କେତ ନାମକ
ଯେ ଗୁମ୍ଫାରେ ରହି ପୂର୍ବେ ଦୁର୍ବାସା ମହର୍ଷି
ତପସ୍ୟା ଆଚରି ଥିଲେ ଦଶ ସମ୍ବତ୍ସର
ତହିଁରେ ଅମରେଶ୍ୱର ଶିବ ନିବସନ୍ତି
ଯାହାର ଉରଗହାର ଜଟାଜୁଟଶିର
ବ୍ୟାଘ୍ର ଚର୍ମାମ୍ବର ପୁଣି ଭାଲେ ବାଳ ଶଶୀ
ତହିଁ ଯାଇ ଦୁଇଭାଇ ଶିବସେବା ସାରି

ବିଶ୍ରାମିଲେ ରଣଶ୍ରମ ଦୂର ହେବା ପାଇଁ
ଦୂତବାର୍ତ୍ତା ଦେଉଁ, ଜରା ତହିଁକି ବିଜୟ
କରନ୍ତେ, ଚଳିଲେ ତହୁଁ ରଷ୍ୟଶୃଙ୍ଗାଚଳେ
ମଣିଭଦ୍ରା ନାମେ ନଦୀ ଯମୁନାରୁ ଆସି
କଳନାଦେ ବହୁଛି ସେ ଗିରିପାର୍ଶ୍ୱଦେଶେ
ଚାମଣ୍ଡା ପଦା ନାମେ ସେ ନଦୀର ଦକ୍ଷିଣେ
ରହିଛି ପ୍ରାନ୍ତର ଏକ ସୁପ୍ରଶସ୍ତ ଭାବେ
ଯହିଁ ନୃମୁଣ୍ଡମାଳିନୀ ଚଣ୍ଡୀ ଚଣ୍ଡବହି
ଧୂମ୍ରଲୋଚନର ପିଣ୍ଡ ଖଣ୍ଡିଥିଲେ ଖଡ୍ଗେ
ପୁଣି ଯା ଚାମଣ୍ଡାଦଳ ପଶି ରଣଦାଣ୍ଡେ
ନାଶିଲେ ଅସଂଖ୍ୟ ରକ୍ଷୋବଳ କୁତୂହଳେ
ଚୋବାଇ ରାକ୍ଷସମଣ୍ଡ ମଣ୍ଡାପୂପ ପରି
ଲେହି ଦୈତ୍ୟ ଗାତ୍ର ବସା ଲେହ୍ୟର ସଦୃଶେ
କର ଚରଣୁ ସେ ମହ୍ୟକଛ ସ୍ୱାଦୁ ପାଇ
ରୁଧିର ପ୍ରପାନପାନେ ଚିତ୍ତ କଲେ ବୋଧ
ବହୁଦୈତ୍ୟ ହତହେତୁ ସେ ସ୍ଥାନ ମୃତ୍ତିକା
ଲୋହିତ ବରନ ଧରେ ଗୈରିକ ସମାନ
ରଣଯୋଗ୍ୟ ପ୍ରାଙ୍ଗଣ ବିଚାରି ତହିଁଯାଇ
ଅପେକ୍ଷିଲେ ଜରା ସୈନ୍ୟ ନିଧନସାଧନେ
ଚଳାଇ ବିରାଟଥାଟ ତହିଁ ଯାଉଁ ଜରା
ଲାଗିଲା ପ୍ରଚଣ୍ଡ ଯୁଦ୍ଧ ରବି ଅସ୍ତ ଯାଏ
ବିନାଶି ଅଗଣ୍ୟ ସୈନ୍ୟ ଦୁଇଭାଇ ତହିଁ
ମଣିଭଦ୍ରା ଗିରିହ୍ରଦେ ଯାଇ ବିହରିଲେ
ମହା ମନୋରମ ଗିରି ମାଣିକ୍ୟ ମସ୍ତକ
ହୀରା ନୀଳା ମରକତେ ତନୁ ସୁଗଠିତ
ସୁଚିତ୍ର ପ୍ରତିମାବତ ତେଣୁ ଗିରୀଶ୍ୱର
ଦିଶଇ ରୁଚିର ଶୁଚିରୁଚିଦ୍ୟୁତି ବହି
ବୈରୀ ସାଧ୍ୟ ନୋହୁଁ ଜରା ହୋଇ ଅତିକ୍ରୁଦ୍ଧ

ଦୂତେ ଅପେକ୍ଷିଲେ ତହୁଁ ଦୃଢ଼କକ୍ଷା ଧରି
ଦୂତ ଆସି ନିବେଦନ୍ତେ ବେନିଙ୍କ ବୃତ୍ତାନ୍ତ
ମଣିଭଦ୍ରର ଦୂରତ୍ୱ ପଚାରି ଜାଣିଲେ
ତହୁଁ ରୋଷେ ଶିରିଝୁଣି ଜରା ବୀରମଣି
ଆକର୍ଷିଲେ ଶତ୍ରୁଘାତୀ ଗଦା ଦକ୍ଷହସ୍ତେ
ଲକ୍ଷ୍ୟ ରଖି ବେନିଭ୍ରାତେ ହୁଂକାର ନିନାଦେ
ଦ୍ୱାତ୍ରିଂଶ ବାରକୁ ଗଣି ପ୍ରଖରେ ଘୂରାଇ
ଫିଙ୍ଗି ଦେଉଁ ଗଦାବର ପାଦଗତି ଦାନେ;
ଗମିଲା ଗଗନଦେଶେ ଖରତର ବେଗେ
ବାତାବଳୀ ଆନ୍ଦୋଳାଇ ଗର୍ଜନ୍ତେ ପ୍ରଚଣ୍ଡେ
ତାଶୁଣି ପାଇଲେ ତ୍ରାସ ଚରାଚର ଜୀବେ
କମ୍ପିଲା ଧରଣୀ ପୁଣି କମ୍ପିଲା ଆକାଶ
କମ୍ପିଲେ ତ୍ରିଦଶ ସ୍ୱର୍ଗେ ପାତାଳେ ଉରଗ
ଦେବକୁଟ ବଶେ ଗଣା ହେଉଁ ଏକ ଊଣା
ଲକ୍ଷ୍ୟ ଭ୍ରଷ୍ଟେ ପଡ଼ିଲା ତା ବରୁଣ ପର୍ବତେ
ଲସି ପଶି ଯାଉଁ ଗିରି ପାତାଳର ତଳେ
ହ୍ରଦ ରୂପେ ଉଦ୍ଗାରିଲା ସବର୍ଦମ ଜଳ
ଗିରିନିକଟସ୍ଥ ଅସିବରଣ କଟକ
ସମୂଳେ ବିଧ୍ୱଂସ ହେଲା ନ ରହିଲା ଅଂଶ
ଗଦାଫିଙ୍ଗି ଆନନ୍ଦିତ ଜରାସନ୍ଧ ଚିତ୍ତ
ଶତ୍ରୁହତ ହେଲେ ବୋଲି ଭାଳି ହୃଦଗତେ
ମାତ୍ର ସୈନ୍ୟଘେନି ଅନ୍ୟ ଦିବସ ପ୍ରତ୍ୟୁଷେ
ଯାଉଁ ଦେଖିଲେ ସେ ଗଦାପାତ ଖାଲ ଗୋଟି
ଫୁଟିଅଛି ହ୍ରଦାକାରେ ଉର୍ଦ୍ଧ୍ୱେ ଉଠି ଜଳ
ଦେବୀ ପ୍ରଦତ୍ତ ଗଦାର ନାହିଁ ଚିହ୍ନବର୍ଣ୍ଣ
ମନୋରଥ ବ୍ୟର୍ଥ ହେତୁ ଲଭି ମନେ ବ୍ୟଥା
ବୃଥା ପହିର୍ଯ୍ୟ ଦେଖାଇ ଧାଇଁଲେ ତଦନ୍ତେ
ଶୃଙ୍ଗଭଙ୍ଗା ବଳିବର୍ଦ୍ଦ ଗୁମାନ ସମାନେ

ତାହିଁ ସନ୍ନିକଟେ ଥାଟ ତହୁଁ ବେନିଭାଇ
ନନ୍ଦନୋଦର କାନନେ ଯାଇ ପ୍ରବେଶିଲେ
ରଙ୍ଗତରଙ୍ଗ ରଙ୍ଗିନୀ ଆବର ଶାଶ୍ୱତୀ
ସ୍ରୋତସ୍ୱତୀ ସରସ୍ୱତୀ ତୀରବର୍ତ୍ତୀ ଯେବା
ଚନ୍ଦ୍ରବଂଶୀ ପୁରରବା ରାଜନ ପ୍ରବର
ପୂର୍ବେ ହୋଇଥିଲେ ଯେଉଁ କାନନବିହାରୀ
ଶାଳ ପିଆଶାଳ ପୁଣି ରସାଳ ତମାଳ
ଆଦି ମହାତରୁକୁଳେ ସଂକୁଳ ଯେ ଅବା
କରୀ କେଶରୀ ଦ୍ୱିପିନ ବାହୁଟି ହରିଣ
ଆଦି ଜନ୍ତୁଗଣ ଯହିଁ ବିଚରଣ କରେ
କାହିଁ ତରୁଶିଳା ପରେ ମଧୁଚକ୍ରଜାତ
ନବନୀରଦ ସଂଜାତ ଆନତ ହୋଇଛି
କାହିଁ ଘନ ନଳବନ ଶିର ଉର୍ଦ୍ଧ୍ୱେ ମେଳି
ହୋଇଛି ମଞ୍ଜୁଳ ବନକୀର୍ତ୍ତି ସ୍ତମ୍ଭତୁଲ;
ତରୁଲତା ପୁଷ୍ପରାଶି ବରଷି ଏସ୍ଥଳେ
ବନଦେବୀ ହୃଦସ୍ଥଳ ମଣ୍ଡନ୍ତି କେବଳ
ପୁଷ୍ପିତା ଲତାରେ ଭ୍ରମୁ ରୋଳମ୍ୱକଦମ୍ୱ
ପୁଷ୍ପଧନୁ ଧନୁର ଟଙ୍କାର ଶୋଭା ବହେ
ଯେଣୁ ଲତାଧନୁ ଭୃଙ୍ଗଗୁଣ ଧ୍ୱନି ଧ୍ୱନି;
ତହିଁ ହେଉଁ ଜରା ପୁଣି ତହୁଁ ଦୁଇଭାଇ
ବୁଦ୍ଧପୁର ଯାଇ ବୁଦ୍ଧଗିରି ଆଶ୍ରା କଲେ
ସେ ଗିରିର ନିମ୍ନେ ଚିତ୍ର ଉଦ୍ୟାନୀ ବାଡ଼ିକା
ଭୀମ ତରଙ୍ଗମାଳିନୀ ଧନୁ ପ୍ରବାହିତା
ସୁବିରାଟ ଥାଟ ବାହି ମଗଧ ମହୀଶ
ଗୋଡ଼ାଇ ଅଛନ୍ତି ତାଙ୍କୁ ଲୋଡ଼ାଇ ଲୋଡ଼ାଇ
ବୁଦ୍ଧଗିରି ଯାଉଁ ପୁଣି ତହୁଁ ଦୁଇଭ୍ରାତା
ଦକ୍ଷିଣେ ସ୍ୱ ମୁଖ କରି ପଳାଇଲେ ଖରେ
ଶାଳଗ୍ରାମ-ଶିଳାମୟୀ ବିମଳ-ସଲିଳା

ଗଣ୍ଡକୀ-ତଟିନୀତଟେ ଉତ୍ତୁରି ତ୍ୱରିତେ
ଘନଦ୍ରୁମାବଳୀ-ପୂର୍ଣ୍ଣ କୋଳାହଳ ବନେ
ମିଳିଲେ ବେନିହେଁ ତହିଁ ରହିଲେ କୁଶଳେ
ଭାବୀ ଜରା ଆଗମନ ଏଥେ ହେବ ଭାଳି
ଦୁଷ୍ଟ ବିଧ୍ୱଂସନ ଧୂମକେତୁ ନାରାୟଣ
ରହିଲେ ଅପେକ୍ଷି ତାଙ୍କୁ ନୟନେ ନିରେଖି
ମାୟାବଳେ କିଛି ଦୁଷ୍ଟ କରିବାକୁ ନଷ୍ଟ
ତହିଁ ଯାଉଁ ଜରାବହି ବିରାଟ ବାହିନୀ
ଦାବ ବହ୍ନି ଘୋଟିଗଲା ତାଙ୍କ ଚାରିପଟେ
ବିକଟାଳ ମୂର୍ତ୍ତି ବହି ଦହେ ତରୁ ତୃଣ
ଚଡ଼ଚଡ଼େ ପଡ଼ ପଡ଼େ ମହାଶିଖା ଟୋଳି
କରାଳ ସପତଜିହ୍ୱା ଲହ ଲହ କରି
ଲମ୍ୱାଇ ଆସଇ ଧାଇଁ ଧୂମୋଦ୍ଗାର ସହ
ତାହିଁ ଭୂପକଦମ୍ୱ ସ୍ୱଦୟ ପରିହରି
ଇତସ୍ତତଃ ହେଲେ ତ୍ରାସେ ଅସୁନାଶ ଚିନ୍ତି
ପଳାଇବା ପାଇଁ ମନ ବଳାଇଲେ ହେଲେ
ନାହିଁ ବାଟ ଚାରିପଟେ ଘୋଟିଛି ଅନଳ
ମଚିଗଲା କୋଳାହଳ କଲେ ଆର୍ତ୍ତନାଦ
ଅଶ୍ୱ ଗଜ ପଦାତିକ ହେଲେ ଖଲବଲ
କୋଳହଳ ନ ଜନ୍ମାଇ ଥିଲେରେ କାନନ
ବ୍ୟର୍ଥ ହୁଅନ୍ତା ନା ତୋର କୋଳାହଳ ନାମ
କାହାର ପୋଡ଼ିଲା କର ପଦ ପୃଷ୍ଠ ପେଟ
ଜଙ୍ଘା ଜାନୁ ଜଘନାଦି ଉର ଗିର ଧରି
ଦଗ୍ଧ ହୋଇ ବଧ ଭଜେ ତହିଁ ବହୁ ଯୋଧ
ଆବର ବାରଣ ବାହ ବାହତ ନିବହ
ହତଗର୍ବ ହୋଇ ସର୍ବେ ଗ୍ରହି ଗ୍ରହି ରବ
ଉଚ୍ଚାରଣ କଲେ ଉଚ୍ଚେ ଦୀନଭାବ ବହି
ନିରେଖି ସୈନ୍ୟ ଦୁର୍ଦ୍ଦଶା ହୋଇ ଦୟାବଶ

ଆଦେଶିଲେ କୃଷ୍ଣ ମେଘଓଘେ ବର୍ଷିବାକୁ
ଆଜ୍ଞାମାତ୍ରେ ବରଷନ୍ତେ ଆସାର କସର
ଲିଭିଲା ଦାବାଗ୍ନି ତୃର୍ଣ୍ଣ ପୂର୍ଣ୍ଣ ହେଲା ବନ
ତହିଁ ଯୁଦ୍ଧ ଶଧ ବର୍ଜି ଦୁଷ୍ଟ ରାଜା ବ୍ରଜ
ରହିଲେ ଶିବିର ବିନା ଦୀନଭାବେ ବନେ
ତହୁଁ ଯାଇ ଦୁଇଭାଇ ଖଣ୍ଡଗିରି ଶିର
ସୁଚାଣ୍ଡେ ମଣ୍ଡିଲେ ଦଣ୍ଡେ ନକରି ବିଳମ୍ବ
କ୍ଷତ୍ର କୁଳକାଳାନ୍ତକ ଭାର୍ଗବେ ନିରେଖି
ଗୌରବେ ବନ୍ଦିଲେ ପଦ ଉପେକ୍ଷି ଗୁରୁତା
ଗୁରୁ ପଦେ ନମେ ଯଥା ସୁବିନୟୀ ଶିଷ୍ୟ
ତାଙ୍କ କରୁ ପଞ୍ଚଶର ଲଭି ସୁହରଷେ
ରହିଛନ୍ତି ଏହିକାଳେ ମିଳେ ଜରା ଥାଟ
ତେଣୁ ରାମ କୃଷ୍ଣ ଦୁହେଁ ବିକ୍ରମ ପ୍ରକାଶି
ଘୋର ଯୁଦ୍ଧେ ବହୁ ଯୋଦ୍ଧା ବଧ କଲେ ପୁଣି
ଆବର ବଜ୍ରନାଭର ଗର୍ବଖର୍ବ କରି
ହୃଷ୍ଟ ହୋଇ ପୃଷ୍ଠ ଦେଇ ପଳାଇଲେ ତହୁଁ
ସେ ମାର୍ଗେ କଞ୍ଚନଗିରି ଗୋମତୀ ନଦୀକି
ପାରି ହୋଇ ପ୍ରବେଶିଲେ ସନ୍ଥ ଗିରିଠାରେ
ଧୁଅଇ ପୟର ଯାର ମାଳତିତଟିନୀ
ମୃଦୁବୀଚି ରଚି କଳ କଳ ମଧୁସ୍ୱରେ
ଭାଷେ ମୁଗ୍ଧାବଧୂ ଯେହ୍ନେ ପ୍ରିୟପତି ପାଶେ
ଯହିଁ ବିରାଜନ୍ତି ମତ୍ସ୍ୟମାଧବ ମୂରତି
ଆର୍ତ୍ତଙ୍କର ଆର୍ତ୍ତିନାଶେ ବୀରତି ପ୍ରକାଶି
ପୁଣି ଜଇମିନୀ ପୂର୍ବେ ତପସ୍ୟା ଆଚରି
ଥିଲେ ଯହିଁ ବହୁକାଳ କାଳଗ୍ରସ ନାଶି
ପୁନଃ ଜରା ରାଟ ବାହି ଆସନ୍ତେ ଏଠାକୁ
ଅପାର ଯୋଦ୍ଧାଙ୍କୁ କଲେ ଯୁଦ୍ଧେ ନିଶୋଧନ
ସମରେ ଶମ୍ବରାସୁର ନାରକା ଆଦିର
ଗର୍ବ ଖର୍ବ କଲେ ରାମକୃଷ୍ଣ ଦୁଇଭାଇ

ଦଶଶତକର ବାଣାସୁରର ଆବର
ଦରପଦଳନ କଲେ, ରାମବାମ ହୋଇ
ତଦ୍ଦ୍ୱାରେ ଦୁଇଭାଇ ପଳାଇ ଚପଳେ
ମାର୍ଗେ ଯାଉଁ ନିରେଖିଲେ କହ୍ଣୀ ଶିଖରୀ
ତଦନ୍ତେ ଦେବନଦୀର ତୀର ଅବସ୍ଥିତ
କୋମ ନାମକ ନଗରେ ଉପସ୍ଥିତ ହେଲେ
ତହିଁକି ଆସନ୍ତେ ଜରା ସୈନ୍ୟବଳ ଧରି
କାଳିଞ୍ଜନ ଅଚଳେ ଚଳିଲେ ତ୍ୱରା ହୋଇ
ମହେନ୍ଦ୍ରଗିରି ସଂଭୂତା କୋନ୍ତା ନଦୀଶ୍ୱରୀ
ଯା ପଦ ବନ୍ଦନ କରେ ସୁମନ୍ଦ୍ର ନିନାଦେ
ତହିଁ ଯାଉଁ ଜରା ପୁଣି ତହୁଁ ଦୁଇଭାଇ
ପଦ୍ମବନ ରାଜ୍ୟେ ଯାଇ ପ୍ରବେଶିଲେ ଖରେ
ଆବର ସେ ଠାବେ ଜରା ଥାଟ ଯିବାଦେଖି
ସୁଲଳିତ ମାଲ୍ୟବନ୍ତ ଗିରି ଆଦରିଲେ
ଏଠି ଭିଆଇ ସମର ଦୁହେଁ ପୁନର୍ବାର
ହତ କଲେ ସୈନ୍ୟବ୍ୟୂହ ବୁହାଇ ରକତ
ବହୁକଷ୍ଟ ସହି ଅଷ୍ଟବାର ଅନିର୍ବାର
ଆକ୍ରମଣ କରି ଜରାସନ୍ଧ ନୃପରାଣ
ବରଷା ଆଗତ ରସା ସିକ୍ତ ହେବା ଭାବି
ବିରତ ହୋଇ ଫେରିଲେ ନିଜ ରାଜଧାନୀ
ଧରା ଧରାପତି ପୁଣି ମିତ୍ର ରାଜାବ୍ରଜ
ଫେରିଲେ ସ୍ୱବାସେ ତେଣୁ ନିରାଶ ଅନ୍ତରେ
ରଣରେ ହୋଇଲା ସାର ସୈନ୍ୟର ମରଣ
ଧରି ମାରି ନ ପାରିଲେ ଅରିଙ୍କି ସମରେ
ଅବିଚାରେ କାର୍ଯ୍ୟ ଯେବା କରଇ ସାଧନ
ସୁସମ୍ପନ୍ନ ନୋହି ହୁଏ ବର୍ଦ୍ଧନ କ୍ଷତିର

ଇତିଶ୍ରୀ ଜରାସନ୍ଧ ବଧ କାବ୍ୟେ ଜରାସନ୍ଧ ଅଷ୍ଟବାର ଆକ୍ରମଣ ବର୍ଣ୍ଣନେ ନାମ ଏକାଦଶଃ ସର୍ଗଃ ।

—

# ଦ୍ୱାଦଶ ସର୍ଗ

ଆସନ୍ତେ ଶିଶିର ଅନ୍ତେ ସୁକାନ୍ତ-ବସନ୍ତ
ବହିଲା ମହୀମହିଳା ମନୋହର ବେଶ
ଋତୁରାଜ ଜାଣି ଭୟେ ଶୀତଗ୍ରୀଷ୍ମ ବେନି
ମଧ୍ୟେ ରଖି ବେନିପାଖେ ରହିଲେ ଉଭୟେ
ଅତି ପରିମଳମୟ ମଳୟ ସମୀର
ବହିଲା ଦକ୍ଷିଣୁ ଧୀରେ ଦହିଲା ବିରହୀ
ବଉଳିଲା ତରୁଲତା ପଲ୍ଲବିଲା ବନ
ମଉଳିଲା ଶୀତ କ୍ଷୀଣ ହେଲା ରାତ୍ର ଗାତ୍ର
ପଙ୍କଜ କାନନେ ପଦ୍ମେ ହେଲେ ବିକସିତ
ବିହରିଲେ ମଧୁଜୀବୀ କୁହରିଲେ ପିକ
ବନ ଉପବନେ ଫୁଟି ବାସନ୍ତୀ ନିଆଳୀ
ବାସ ପ୍ରସାରିଲା ଆନ ଆନ ପୁଷ୍ପ ସହ
ମଧୁଗନ୍ଧେ ଅନ୍ଧହୋଇ ରୋଳମ୍ବକଦମ୍ବ
ଗୁଣୁରବେ ଗୁଞ୍ଜରିଲେ ପୁଞ୍ଜ ପୁଞ୍ଜ ହୋଇ
ପରିହରି ଗୁରୁତା ବିବାଦ ରାତ୍ରଦିବା
ବସନ୍ତର ସମାଗମେ ଭଜିଲେ ସମତା
ଏକାନ୍ତ ବସନ୍ତ କାଳେ ଦିନେକ ଏକାନ୍ତେ
ଭ୍ରମିବାକୁ ଗଲେ ଜରାବୀର ଉପବନେ
ପୁଷ୍ପରାଶି ଚାରୁଶୋଭା ଚାହିଁ ହୋଇ ଲୋଭା
ହରଷେ ତୋଳିଲେ ଫୁଲ ଶୁକ୍ଳବର୍ଣ୍ଣେ ବାଛି
ସ୍ତବକିତ କରି ତାକୁ ଧରିଛନ୍ତି ହସ୍ତେ
ଏକ ମଧୁକର ଆସି ବଶେ ମଧୁ ଲୋଭେ
ଦେଖି ମନେ ପଡ଼ିଯାନ୍ତେ ରାମକୃଷ୍ଣ ବେନି
ରାଗେ ଜର ଜର ହୋଇ ଫିଙ୍ଗି ଦେଲେ ତାକୁ
ତହୁଁ ନିଜ ବାସେ ଆସି ନିମନ୍ତ୍ରି ମନ୍ତ୍ରିକି

ଭାଷିଲେ ଏ ଭାଷାରାଶି ନିରାଶ ଅନ୍ତରେ
ଶତ୍ରୁସାଧି ନପାରିଲି କଲି ବହୁବୁଦ୍ଧି
କି ବିଧିରେ ସିଦ୍ଧି ଭଜେ କହ ମନ୍ତ୍ରିମଣି !
ଶୁଣି ଗୁଣଭୂଷଣ ଭାଷଣ କଲେ ଏହା
ପୁଣି ବନ୍ଦୀଭୂପ ମିତ୍ରନୃପବୃନ୍ଦ ଆଣି
ବାହିବା ବାହିନୀ ମଥୁରାକୁ ଆଉଥରେ
ସେଥିରେ ନୋହିଲେ କାର୍ଯ୍ୟ ଫେରି ନିଜ ରାଜ୍ୟେ
ବଳେ ବଳେ କଉଶଳେ ଯେ କୌଣସି ମତେ
ଧାର୍ଯ୍ୟ କରିବା ନା କାର୍ଯ୍ୟ ରାଜରାଜେଶ୍ୱର !
ନାନାବିଧ ମନୋମୁଗ୍ଧକର ସୁସମ୍ଭାର
ଭାର କରି ଉପହାର ଧରି ନିଜେ ଯାଇ
ଚନ୍ଦ୍ରକାନ୍ତିପୁରକାନ୍ତ ସେ କାଳଦମନେ
ଆଣି ମରାଇବା ରାମକୃଷ୍ଣ ବେନିଭ୍ରାତେ
ଉଚିତ ବିଚାର ବୋଲି ଚିତ୍ତେ ମୋ ଆସଇ
ଏଥିକି ଯା ହିତାହିତ ଚିନ୍ତ ନୃପନାଥ !
ଯଦୁବଂଶ ଧ୍ୱଂସ ଅର୍ଥେ ତାହାଙ୍କ ଜନମ
ମହାବଳୀୟାର ବଳୀ-ବଳଦର୍ପଭଞ୍ଜା
ଶୁଣି ମନ୍ତ୍ରୀ ବାଣୀ ଜରାସନ୍ଧ ନୃପମଣି
ନିମନ୍ତ୍ରିଲେ ରାଜାବ୍ରଜ ଦୂତେ ଦୂତ ପେଷି
କେତେ ଦିନ ଅନ୍ତେ ପୁଣି ସୁକରାଟ ଥାଟ
ଘେନି ଅଭିଯାନ କଲେ ମଥୁରା କଟକେ
ବାଜଇ ସମର ବାଦ୍ୟ ଘନ ଘନ ନାଦେ
ଢୋଲି ଜମା ଦାଉଣ୍ଡି ଟମକ ବଜିଘୋଷ
ଭେରୀ ତୂରୀ ରଣଶିଙ୍ଗା ଜଗଝମ୍ପ ଆଦି
ଚଳଯାନ୍ତି, ରଥ ଗଜ ଅଶ୍ୱ ପଦାତିକେ
ଦଲ ଦଲ କମ୍ପେ ପୃଥ୍ୱୀ ସେନା ପଦାଘାତେ
ନବୀନ ଉତ୍ସାହେ ମାତି ନବମ ଦିବସେ
ପ୍ରବେଶିଲେ ମଧୁପୁର ବୋବା ପରବତେ;

ଉଦନ୍ତ ଦିଅନ୍ତେ ଦୂତ ଜରା ଆଗମନ
ଜାଣିଲେ ଯାଦବେ ରାମ ମାଧବ ସହିତ
ବଣ୍ଟୁଁଟାଣ ପଣ କରି ହୃଦୟେ ଧାରଣ
ନ କଲେଟି ରଣପାଇଁ ମରଣେ ସେ ଭୟ
ଆବରି ରହିଲେ ଦ୍ୱାରବାର ମଥୁରାର
ଅସ୍ତ୍ର ଶସ୍ତ୍ର ସୈନ୍ୟବଳ ସ୍ୟନ୍ଦନାଦି ଧରି
ମାତ୍ର ମଧୁପୁର ଜନଜାତର ଅର୍ଦ୍ଦନ
ହଳଧାରୀ ଜନାର୍ଦ୍ଦନ ବିଚାରି ସ୍ୱଚିତ୍ତେ
ଜରାରଟ ଥାଟ ହେଉଁ କଟକ ନିକଟେ
ସେହି ପଥେ ରଥେ ବସି ପଶିଲେ ଭିତରେ
ଚାହିଁଛନ୍ତି ଭୂପଜାଳ ଜଳ ଜଳ ନେତ୍ରେ
ଚଳିଯାନ୍ତି ହଳୀ ବନମାଳୀ ତରତରେ
ଗଲା ଗଲା ଶବ୍ଦ ଉଚ୍ଚେ ଉଚ୍ଚାରି ବଦନେ
ଧାଇଁଲେ ଅଚିରେ ତହୁଁ ବହୁ ନରପତି
ସେନା ସେନାପତି ତତି ଘେନି ନିଜ ସଙ୍ଗେ
ସଙ୍ଗରର ରଙ୍ଗେ ରୋଷେ ରଙ୍ଗନେତ୍ର କରି
ଚାହିଁ ଦୁଇଭାଇ ଯାଇ ଗୋମତ ପର୍ବତ
ପ୍ରସ୍ଥେ ଉପସ୍ଥିତ ହେଲେ ପଳାଇ ଚପଳେ
ଦେଖି ଭୂପବୃନ୍ଦ ଲଭି ହୃଦୟେ ଆନନ୍ଦ
ଯାଇ ଜଣାଇଲେ ଜରାସନ୍ଧେ ସେ ସନ୍ଦେଶ
ଶୁଣି ଜ୍ଞାନଅନ୍ଧ ଜରାସନ୍ଧ ମହାନନ୍ଦେ
ଆଦେଶିଲେ ଭୁବୀଶ୍ୱର କଦମ୍ବେ ଏଭାବେ
ଦୃଢ଼େ ବେଢ଼ ସେ ଗିରିକି କରି ଗାଢ଼ଯତ୍ନ
ସୈନ୍ୟ ସାମନ୍ତାଦି ଧରି ନ ଯାନ୍ତୁ ଭବୁରି
ଫାନ୍ଦେ ପଡ଼ିଛନ୍ତି ବୈରୀ ବନ୍ଧା ହେବେ ଆଜ
ଯାଅ ଖାଇ ଖୋଳାଅ ଗିରିରେ ଚାରି ପାଖେ
ଜଗ ଯା ଯାଇ ନିର୍ବନ୍ଧେ ସୈନ୍ୟେ ଗଡ଼ ବାନ୍ଧି
ପିପିଲିକା ଏକ ଯେହ୍ନେ ନପାରେ ପଳାଇ
ଶୁଣି ସର୍ବ ଦଣ୍ଡଧାରୀ ଗର୍ବ ହୃଦେ ଭରି

ବାହାରିଲେ ଶିରେ ଧରି ଜରାର ବ୍ୟାହାର
ଧାର୍ଯ୍ୟ ମତେ କାର୍ଯ୍ୟ ଲାଗି ବହୁ ଭୃତ୍ୟଆଣି
ଖୋଳାଇଲେ ଖାଲ କ୍ଷଣେ ଖନିତ୍ର ଲଗାଇ
ସୁବିରାଟ ଆଟ ଆଣି ପୂରାଇ ସେ ଗିରିର
ଚାରିଆଡ଼େ ଜଣାଇଲେ ଅତି ଦୃଢ଼ ଭାବେ
ବହିର୍ଗତ ହେବା ପାଇଁ ଆହବେ ସେ ଦୁହେଁ,
ଭଟବ୍ୟୂହ କୁହାଟିଲେ ଡାକହାକ ଦେଇ
ମାତ୍ର ସୁପ୍ତ ସିଂହ କେବେ ଭେକ ଡାକ ଶୁଣି
ଚଳଇ କି ନିଜ ସ୍ଥାନୁ ବିଚଳିତ ହୋଇ
ବହୁକାଳ ଅପେକ୍ଷି ନ ଦେଖି ଚିହ୍ନ ବର୍ଣ୍ଣ
ଜରାଜ୍ଞାରେ ଲଗାଇଲେ ଦହନ ବହନେ
ପ୍ରବଳେ ପ୍ରଜ୍ୱଳି ବହ୍ନି ଶିଖା ଉର୍ଦ୍ଧ୍ୱେତୋଳି
ଚଡ଼ଚଡ଼େ ପୋଡ଼େ ଗିରି ତରୁ ଗୁଳ୍ମଲତା
ଯେତେଥିଲେ ପଶୁପକ୍ଷୀ କୀଟ ପତଙ୍ଗାଦି
ତ୍ରାସେ ଅସ୍ତବ୍ୟସ୍ତ ହେଲେ ଚାହିଁ ଜଳଦଗ୍ନି
ଜୀବକୁଳ ଆର୍ତ୍ତବାଣି ଆର୍ତ୍ତ-ଚିନ୍ତାମଣି
ହୃଦୟେ ସୁଦୟା ବହି ବିହିଲେ ଉପାୟ
ସଙ୍କର୍ଷଣେ ଜଣାଇଲେ ଅଇଶାନ୍ୟ କୋଣେ
ଲମ୍ଫିଯାଅ ଦେବ ! ଝାମ୍ପିଆସେ ଜାତବେଦ
ଏଡ଼େ କହି ତମ ବହି ବାମ କରାଙ୍ଗୁଷ୍ଠ
ଚାପନ୍ତେ ପର୍ବତ ପୃଷ୍ଠେ ଶର୍ବ ଭଜେ ଗିରି
ତେଣୁ ମହାବଳୀ ହଳୀ ଅବଲୀଳା କ୍ରମେ
ଲମ୍ଫି ଅତିକ୍ରମ କଲେ ଚପଳେ ଅଚଳେ
ଡିଏଁ ଯଥା ବାଲିସ୍ତୂପେଁ ବାଳ ଖେଳା ଲୋଳେ
ଲସନ୍ତେ ଅଚଳ ରସାତଳୁଁ ଜଳ ଉଠି
ଲିଭନ୍ତେ ଅନଳ ଜୀବକୁଳ ତୁଷ୍ଟି ଲଭେ
ଆରତଭଞ୍ଜନ ନାଥ ଜୀବ ଆର୍ତ୍ତ ନାଶି
ମହାମହିମା ପ୍ରକାଶ କଲେ ସେ ପର୍ବତେ
ହଳପାଣି ଓହ୍ଲାଇବା ଜାଣି ଭୂପଶ୍ରେଣୀ

ସୁଦୃଢ଼େ ବେଢ଼ିଲେ ଗୁଡ଼େ ଯଥା ପିପିଲିକା
କୋଟି ସିଂହ ପରାକ୍ରମ ବହନ୍ତି ଯେ ରାମ
ଚାହିଁ କାଳାନ୍ତକ ମୂର୍ତ୍ତି ଧରିଲେ ତ୍ୱରିତେ
ହଳ ମୁଷଳ ବେନିଙ୍କି ବେନି ହସ୍ତେ ବହି
ସୁନିର୍ଘାତେ ପ୍ରହାରିଲେ ଦେଇ ସିଂହନାଦ
ନୃପେ ମୂର୍ଚ୍ଛାଗତ ପୁଣି ସୈନ୍ୟେ ହତ ହେଉଁ
ଜରାକୁ ଯାକିଲେ କାଖେ ତହୁଁ ହଳଧାରୀ
ଗମିଲେ ପ୍ରଚଣ୍ଡ ବେଗେ ଚଣ୍ଡରୂପ ବହି
ଘେନି ଚଳେ ମୃଗେ ଯେହ୍ନେ ମୃଗରାଜ ହେଳେ
ଉପନୀତ ହେଲେ ଯାଇ ରୈବତ ପର୍ବତେ
ଜରାବଧ ନିଷେଧର ପୁଣି ଦୈବବାଣୀ
ଶୁଣି ସେହି ସ୍ଥାନେ ତାକୁ ସେକ୍ଷଣି ଛାଡ଼ିଲେ
ଗୁର୍ବ୍ବାଦେଶେ ଶିଷ୍ୟ ଯଥା ତ୍ୟଜେ ପାପ କାର୍ଯ୍ୟ
ଘୋର ଅପମାନ ପାଇ ମାନସେ ସେ ଜରା
ହତଧୈର୍ଯ୍ୟେ ହତବୀର୍ଯ୍ୟେ ଫେରିଲେ ଗୋମତେ
ଚାହିଁ ଭୂପବୃନ୍ଦ ତାଙ୍କୁ ହୋଇ ଆନନ୍ଦିତ
ବଧ ନ ସଞ୍ଚିବା କଥା କହି ପ୍ରବୋଧିଲେ
ଏକାଳେ ବରଷାଋତୁ ହୁଅନ୍ତେ ଆତୁର
ରସା ପ୍ରବେଶିବା ପାଇଁ ତରତର ହୋଇ
ଦେଖି ଜରା ଦୁଃଖି ହୋଇ ଫେରିଲେ ସ୍ୱବାସେ
ଆଦେଶିଲେ ଧରାଇଶେ ଦେଶେ ଯିବା ଲାଗି
ଅପମାନେ ପୂର ଜରା ସ୍ୱପୁରେ ପ୍ରବେଶି
ନିବେଶିଲେ ଶତ୍ରୁସାଧ୍ୟ ଚିନ୍ତା ସଦା ହୃଦେ
ଚାଟ ଯୋଗଇ ଯେସନ ସଦା ସନ୍ଥପାଠ
ବରଷାର ଅନ୍ତେ ପୁଣି ଆସନ୍ତେ ଶରଦ
ଶସ୍ୟ ଭରା ହେଲା ଧରା ସରଣି ବିଶୁଷ୍କ
ତେଣୁ ବନ୍ଦୀ ଭୂପ ମିତ୍ରନୃପ ନିମନ୍ତ୍ରଣେ
ବରଶିଲେ ଦୂତବ୍ରତ ଜରା କରି ତ୍ୱରା

ସ୍ମରି ପୂର୍ବ ମନ୍ତ୍ରୀଗୀର ନିମନ୍ତି ମନ୍ତ୍ରିକି
କହିଲେ ଯାଅ ସହର ଚନ୍ଦ୍ରକାନ୍ତିପୁର
ସେ କାଳଦମନେ କହ ଜଣାଇ ମଣାଇ
ନାନା ଉପହାର ଦେଇ ଜନ୍ମାଇ ଉଲ୍ଲାସ
ଛାର ମୂଢ଼ ଗଉଡ଼କୁ ନପାରିଲାଁ ସାଧି
ଆଧି ବ୍ୟାଧି ତାଙ୍କ ଯୋଗୁଁ ଭୋଗିଲା ନି କେତେ
ଶୁଣି ନୃପମଣି ବାଣୀ ମନ୍ତ୍ରୀ ହୋଇ ସଜ
ଉପହାର ଭାରଧରି ଗମିଲେ ସଧୀରେ
ସଙ୍ଗେ କୁଚକ୍ରକୁଶଳ ଦନ୍ତବକ୍ର ରାଜା
ଘେନି ବେନି ସଙ୍ଗୀ ହୋଇ ଗିରିବ୍ରଜ ପୁରୁ
କେତେ ଦିନ ଅନ୍ତେ ଯାଇ ଚନ୍ଦ୍ରକାନ୍ତି ପୁରେ
ବାର୍ତ୍ତାଜାଳ ଜଣାଇଲେ ସେ କାଳଦମନେ
ଶୁଣି ଯଦୁକୁଳକାଳ ସେ କାଳଦମନ
ଶମନ ସମାନ କରି ନୟନ ରକତ
ବ୍ୟକତ କଲେ ଏ ବାଣୀ ଆଣି ପରକାଶି
ଏତୁଚ୍ଛ କଥାର ଲାଗି ମିଛେ ଜରାମିତ୍ର
ବ୍ୟଥା ପାଉଛନ୍ତି, ବୃଥା, ଥରେ ମାତ୍ର ଯାଇ
ବନ୍ଦୀ ରୂପେ ବାନ୍ଧି ତାଙ୍କୁ ଆଣି ସମର୍ପିବି
ଏତେ ଭାଷି ଚିତ୍ତେ ରୋଷି ବୀରକେଶ ସ୍ପର୍ଶି
ବାହାରିଲେ ବହୁ ମ୍ଳେଚ୍ଛ ଦଳବଳ ଘେନି
ଶାର୍ଦ୍ଦୂଳ ସଦଳେ ଯେହ୍ନେ ମୃଗୟା ସକାଶେ
ଗତି କରେ ରୋଷେ ବହି ବିକଟାଳ ମୂର୍ତ୍ତି
ଜରାମନ୍ତ୍ରୀ ଅଗ୍ରବର୍ତ୍ତୀ ହୋଇ ବ୍ୟଗ୍ରେ ଚାଲି
ଦେଖାନ୍ତି ଯଥାର୍ଥ ଭାବେ ମଗଧର ପଥ
କେତେ ଦିନେ ଗିରିବ୍ରଜ କଟକନିକଟେ
ହୁଅନ୍ତେ ଆସିଲେ ଜରା ସସୈନ୍ୟେ ପାଛୋଟି
ଆଶ୍ଳେଷି ସାଦରେ ତାଙ୍କ ଗାତ୍ର ମିତ୍ର ଭାବେ
ବିଶ୍ଳେଷିଲେ ନ ଆସିବା ଚିନ୍ତା ଚର୍ଚ୍ଚୁଁ ଜବ

ଭାଷିଲେ ଭୋ ମିତ୍ର ! ରଖି କୃପାକୁ ଅପାର
ଆସିଲ ମୋ ମନକଷ୍ଟ କରିବାକୁ ନଷ୍ଟ
ମଣେ ଆପଣାକୁ ତେଣୁ ବଡ଼ ଭାଗ୍ୟବାନ
ଥିବ ଏ କରୁଣା ଊଣା ନୋହିବ ହୃଦୟୁ
ଶୁଣି ହରଷେ ଭାଷିଲେ ସେ କାଳଦମନ
ବୃଥା କଥା ଲାଗି ବ୍ୟଥା କିପାଁ ମିତ୍ରବର !
ଥରେ ମାତ୍ର ଯାଇ ବନ୍ଦୀ ରୂପେ ବାନ୍ଧି ଆଣି
ବେନିଙ୍କି ଅର୍ପିବି ଭୟ ଆଣି ରକ୍ଷା ପାଇଁ
ଆଗେ ଦୂତ ଯାଉ ଦ୍ରୁତେ ଏ ଉଦନ୍ତ ଘେନି
ଯାଦବ କଦମ୍ବେ ଦେଉ ଯହିଁ ରାମ କୃଷ୍ଣ
ପଛେ ବାଛିବା ନା ତାଙ୍କ ଗୁଣଦୋଷ ଯାକ
ବାକ୍ୟ ନ ଘେନିଲେ ଦେବା ବିହିତ ଶାସ୍ତିକି
ଏତେକ ବଚ୍ଛି ହାଟକଗଠିତ ପେଟିକା
ଆଣି ଭରିଲା ତା ଗର୍ଭେ କାଳକାଳ ଗୋଟି
ବିଷଦ ବିଷଧର ସେ ଦଂଶିବ ଯାହାକୁ
ଇନ୍ଦ୍ର ବ୍ରହ୍ମା ହେଲେ ମଧ୍ୟ ନବର୍ତ୍ତିବେ କେହି
ନୃପତି ଉଗ୍ରସେନାଦି ଯାଦବ କତିକି
ଏମତେ ତ୍ୱରିତେ ତହୁଁ ପତ୍ର ଲେଖି ବସେ
ବୀରଶ୍ରୀ ରାଜେନ୍ଦ୍ର ମୌଳିମଣି ବୀରାଗ୍ରଣୀ
ବଳୀବଳ ଦର୍ପୀ ଦର୍ପହନ୍ତା ଦନ୍ତାବଳ
ଅରିନାରୀ ନେତ୍ରବାରି ନିଃସ୍ରାବଣକାରୀ
ପରିପନ୍ଥୀ ଛାଗଓଘ ମୁଣ୍ଡମୋଡ଼ା ବାଘ
ଚନ୍ଦ୍ରକାନ୍ତିପୁରକାନ୍ତ ଗୋପାବଳୀ ବଳା
ଜଗତେ ବିଜୟବାନା ଉଡ଼େ ଯାଇ ନାମେ
ରଣଭେରୀ ନାଦେ ଯାର କମ୍ପିତ ଜଗତ
ପଦାନତ ନୃପଗଣ ଦନ୍ତେ ଘେନି ତୃଣ
ଶରଣବତ୍ସଳ ରଣରଙ୍ଗୀ ଶଙ୍କାହୀନ
ସୂରାତପ-ପ୍ରତାପୀ ଶୂରହା ପରନ୍ତପ
ମାନେ ମେରୁ ଜ୍ଞାନେ ଗୁରୁ ବିକ୍ରମେ କେଶରୀ

ପ୍ରଭାବେ ବାରିଧି ପ୍ରତିଜ୍ଞାରେ ଯେ ଅଶନି
ସସାଗରାଧରାକୁ ଯେ ପାରେ ଲେଉଟାଇ .
ଦ୍ୱିଧା କରିପାରେ ବିଧା ମାରି ବସୁଧାକୁ
ମେରୁଗିରି ପିଣ୍ଡ ମର୍ଦ୍ଦି ଗୁଣ୍ଡ କରିପାରେ
ଚନ୍ଦ୍ର ସୂର୍ଯ୍ୟ ଧରି ଆଣି ପାରେ ଯେ କଚାଡ଼ି
ମୁଁ ସେ କାଳଦମନ ରେ ତୁମ୍ଭକୁଳକାଳ
ଦେଇଛି ଏଭାଷାଘେନ ମୋ ଆଦେଶ ଘେନି
ରାମକୃଷ୍ଣ ଦୁହେଁ ପରା ମହାବଳୀୟାର
ଫିଟାଇ ବୋଲ ପେଟିକା ଗୋଟି ତାଙ୍କ ହାତେ
ଜାଣିବା ନା ବଳବୀର୍ଯ୍ୟ କେତେ ସେ ବହନ୍ତି
ତେଣୁ ଏ ପେଟିକା ଗୋଟି ପଠାଇଛି ଇଛି
ଏହାପରେ ରାମକୃଷ୍ଣ ବେନି ଘେନି ସାଥେ
ମୋ କରେ ସମର୍ପ ଆଣି ଆଣିକି ବିରଜି
ନତୁ ମିତ୍ର ଜରାସହ ବାହି ମୁଁ ବାହିନୀ
ଧ୍ୱଂସିବି ଯାଦବ ବଂଶ ନ ଥୋଇ ପୃଥ୍ୱୀରେ
ପ୍ରାଣେ ଯଦି ଆଶା ଆସି ପଶ ମୋ ଶରଣ
ମରଣେ ବରଣ ବୃଥା ନକରି ଯାଦବେ
ଏତେ ଲେଖି ମୁଦଦେଇ ଖଡ୍ଗଫଳକର
ପେଟିକା ସହ ପ୍ରମୋଦେ ଦେଲା ଦୂତ ହସ୍ତେ
କେତେଦିନ ଅନ୍ତେ ଦୂତେ ମଥୁରା ପ୍ରବେଶି
ଯାଦବକଦମ୍ବେ ଦେଲେ ରାମକୃଷ୍ଣ ଯହିଁ
ଦୂତବ୍ରତ ହାତେ ଦେଖି ହାଟକପେଟିକା
ଅନ୍ତର୍ଯ୍ୟାମୀ ଜାଣିଲେ ତା ଅନ୍ତରକପଟ
ତେଣୁ ଚୁଟକି ଫୁଟାଇ ଫିଟାଇ ପେଟିକା
ଦେଖାଇଲେ କାଳବ୍ୟାଳ ଯାଦବକଦମ୍ବେ
ଗର୍ଜ୍ଜଇ ଭୁଜଙ୍ଗରାଜ ଫୁତ୍‌ଫୁତ୍କାର ସ୍ୱନେ
ଲହ ଲହ ଜିହ୍ୱାଚାଳି ନେତ୍ରୁଁ ଅଗ୍ନିବର୍ଷି
ମାତ୍ର ନ ତୋଳଇ ଫଣା ନ ତୋଳଇ ଗାତ୍ର
କୃଷ୍ଣଙ୍କ ଗାରୁଡ଼ି ମନ୍ତ୍ରେ ସ୍ଥିତ ସେହି ସ୍ଥାନେ

ନିରେଖି ଯାଦବେ ତାଙ୍କୁ ଭୀତିଗ୍ରସ୍ତ ହୋଇ
ଆଉଜିଲେ ଯାଇ ରାମକୃଷ୍ଣଙ୍କ ପଶ୍ଚାତେ
କାଳୀୟସର୍ପର ଦର୍ପ ଗଞ୍ଜିଛନ୍ତି ଯେବା
ଛାର କାଳବ୍ୟାଳ ତାଙ୍କୁ କେତେକ ମାତର
ତା ଦର୍ପ ଭଞ୍ଜନ ପାଇଁ ଏକ ପିପିଲିକା
ନିବେଶିଲେ ପେଟିକାରେ କଟୁ ପରକାଶି
ତତକାଳ ମାଳ ମାଳ ପିପିଲିକା ଜନ୍ମି
ନାଶିଲେ ସେ ଆଶୀବିଷେ ରକ୍ତମାଂସ ଶୋଷି
ରହନ୍ତେ ପେଟି ଅନ୍ତରେ ଅସ୍ଥିମାତ୍ର ସାର
ଦୂତ ହସ୍ତେ ପ୍ରତ୍ୟର୍ପିଲେ ଭାଷି ଏହିଭାଷା
କହ ଆହେ ଦୂତେ ଯାଇ ସେ କାଳଦମନେ
ଆବର ସେ ଜରାବୀରେ ଆସନ୍ତୁ ସଂଗ୍ରାମେ
ସହସ୍ର କାଳଦମନ ସହସ୍ରକ ଜରା
ଆସିଲେ ନାଶିବୁଁ ଆଶୀବିଷର ସଦୃଶ
ବାର୍ତ୍ତାବହେ ପଥବାହି ବହି ସେହି ବାର୍ତ୍ତା
ଦିଅନ୍ତେ କାଳଦମନେ ପେଟିକା ସହିତେ
ଚାହିଁ ସର୍ପର ବିନାଶ ହୋଇଲା ତାଟକା
କପାଳକଣ୍ଡିଲା କରେ ବିଷାଦିତ ଚିତ୍ତେ
ମାତ୍ର କୃଷ୍ଣ କଟୁବାଣୀ ଶୁଣି ସେ ଉତ୍କଟେ
ଗର୍ଜିଲା ପ୍ରଚଣ୍ଡ କ୍ରୋଧେ ଦନ୍ତେ ଓଷ୍ଠଦଂଶି
ବାହ୍ୱାସ୍ଫୋଟ ପ୍ରକଟାଇ ନେତ୍ର କରି ରଙ୍ଗ
ଆଉଁସି ପୁଣି ସେ ବୀରକେଶ ବୀରବର
ଅଧୀର ଭାବେ ବିଧାଏ ମାରନ୍ତେ ଧରାରେ
ଲସି ପଶି ଗଲା ଧରା ଦଲ ଦଲ ହୋଇ
କମ୍ପିଗଲେ ମର୍ତ୍ତ୍ୟବାସୀ ମହାତ୍ରାସ ବଶେ
କମ୍ପିଲେ ଆକାଶଦେଶେ ସର୍ବସ୍ୱର୍ଗବାସୀ
ପାତାଳେ ଉରଗବର୍ଗ ଭଜିଲେ ସ୍ତବଧ
କହିଲା ତହୁଁ ସେ ନିଜ ମିତ୍ରେ ଏହି ମତେ
କକ୍ଷା ମୁଁ କରୁଛି ମିତ୍ର ! ସାକ୍ଷାତ ଲଭିଲେ

ରକ୍ଷା ନ ପାଇବେ କେବେ ସଖା ହେଲେ ଇନ୍ଦ୍ର
ଦେଖିବ ହେ ନୃପନାଥ ! ଚାଲ ମୋର ସାଥ
ଦେଖାଅ ମଥୁରା ପଥ ମନୋରଥ ପୂରୁ
କହୁଁ ଶୁଣାନ୍ତେ ଘୋଷଣା ସର୍ବରାଟ ଥାଟ
ବାହାର କରାଟ ଭାବେ ମୁରାଟକୁ ବହି
ରଥ ଗଜ ହୟ ମୟ ପଦାତିକ ପଦେ
ଦଳ ଦଳ କମ୍ପେ ଧରା ହୋଇଣ ଅଧୀରା
ସେନାପତି ପଦେ ବରି ସେ କାଳଦମନେ
ବଜାଇଲେ ରଣବାଦ୍ୟ ଘନ ଘନ ନାଦେ
ଢ଼ୋଳ ଦମା ଦାଉଣ୍ଡି ଟମକ ବିନିଘୋଷ
ଭେରୀ ତୂରୀ ରଣଶିଙ୍ଗ ଝଣଝମ୍ପ ଆଦି
ଏ ଉଦନ୍ତ ଆଣି ଦୂତ ମଥୁରାର ନାଥେ
ଜଣାନ୍ତେ ଜାଣିଲେ ବେନିଭ୍ରାତା ସବିଶେଷେ
ଯାଦବ ପ୍ରମାଦ ଜାଣି ଦେବ ଦାମୋଦର
ମାନସ ବିଷାଦେ ତହିଁ ଭାବିଲେ ଏଭାବେ
ଆସେ କାଳଦମନ ସେ ଯଦୁକୁଳକାଳ
ଯୁଦ୍ଧ କଲେ କ୍ରୁଦ୍ଧ ହୋଇ ସବଂଶେ ନାଶିବ
ଲୁଚାନ୍ତି ଯାଦବେ ଅବା କଟକ ନିକଟେ
ପରକଟ ହୋଇଯିବେ ଖୋଜାଇବ ଯେବେ
ଯଦୁବଂଶ ଧ୍ୱଂସ ଅର୍ଥେ ହୋଇଛି ସଂଭୂତ
ଆମ୍ଭ ହାତେ ବଧ ନୁହେ ଆର ସାଧ୍ୟ କାର
ତେଣୁ ମାୟାବଳେ ଛଳି କଉଶଳ କରି
ହତ କରାଇବି ଆନହାତେ ଯାଉ ଶଳ
ଏ ବାହାରେ ମଧୁପୁରେ ରହିଲେ ଆବର
ବାର ବାର ଜରାବୀର ବାହିବ ବାହିନୀ
ତେଣୁ ଏହିପୁର ତେଜି ଅନ୍ୟସ୍ଥାନ ଖୋଜି
ଯାଇ ନିବାସିବା ସବୁଠାରୁ ଶ୍ରେୟସ୍କର
ଚିନ୍ତି, ପାଥନାଥେ ଚିନ୍ତା କରନ୍ତେ, ତକ୍ଷଣି
ଉପସ୍ଥିତ ହେଲେ ଆସି ପାଶୀ ତାଙ୍କ ପାଶେ

ଭାଷିଲେ କି ଆଗେ ଆଦେଶିଲେ ହୃଷୀକେଶ
କୃପା ବହି ଦାସେ କହି ନାଶ ମୋ ସନ୍ଦେହ;
ଶୁଣି ତାର ଭାଷାତୋଷେ କମଳାବିଳାସ
ପ୍ରକାଶିଲେ ଅଛି ମଧ୍ୟେ ଦିଅ ବାସସ୍ଥଳ
ଜରା ଉପଦ୍ରବେ ସଦା ମଥୁରା ଆତୁରା
ସେ ରାଜ୍ୟ ବରଜି ଆଜି ଯିବୁଁ ରଜନୀରେ;
ଭାଷେ ପାଥନାଥ ତହୁଁ ଆହେ ଯଦୁନାଥ
ସେଥିପାଇଁ ଆଦ୍ୟୁସ୍ଥିତି ଦ୍ୱାରାବତୀପୁର
ଅତି ଗୁପ୍ତଭାବେ ଯାକୁ ରଖି ଅଛି ମଧ୍ୟେ
ପଥ ଚାହିଁ ରହିଥିଲି ସାର୍ଥ ହେଲା ଏବେ
ଆକର୍ଷି ମୋ ପାଶେ ଜଳରାଶି ବ୍ରହ୍ମରାଶି !
ଶୁଖାଇବି ସୁଖେ ବାସ କରନ୍ତୁ ସବଂଶେ;
ଏତେ କହି ଯାଉଁ ସେହି ତହୁଁ ଖଗକାନ୍ତେ
ଚିନ୍ତନ୍ତେ ଅନ୍ତରେ ଆସି ପ୍ରବେଶିଲେ ପାଶେ
ମହାନନ୍ଦେ ବଳୁ ପଦ ଭାଷିଲେ ପକ୍ଷୀଚନ୍ଦ୍ର
ହେ ବିରାଟ ! ଜରାରାଟ ସୁକରାଟ ଥାଟ
ବାହି ଆସେ ମଧୁପୁର ବିନାଶ ସକାଶେ
ଯଦୁକୁଳକାଳ କାଳଦମନ ସ୍ୱସଙ୍ଗେ
ଆଣିଅଛି ପୁଣି ଜାଣି ଯାଦବ ପ୍ରମାଦ
ତେଣୁ ଗରିଷ୍ଠ ପୃଷ୍ଠେ, ତା ଧନଜନ ବହି
ନେଇ ସ୍ଥାପ, କୃଶସ୍ଥଳୀ ଦ୍ୱାରାବତୀ ପୁରେ
ଆଜ ରଜନୀରେ କାର୍ଯ୍ୟ ଉଜଯେହ୍ନେ ଭଜେ
ତେହ୍ନେ କର ପକ୍ଷିବର ! ନୋହୁ କା ଗୋଚର
ପ୍ରଭାତିଲେ ବିଭାବରୀ ଆସି ଦୁଷ୍ଟଗୋଷ୍ଠି
କରିବେ କଟକ ନଷ୍ଟ ଧନଜନ ସହ
ଶୁଣି କୃଷ୍ଣବାଣୀ କହେ ବିନତାନନ୍ଦନ
ସୁବିନୀତ ଭାବେ ପଦେ ପଡ଼ି କରଯୋଡ଼ି
ଆଜ୍ଞା ଦିଅ ମହାବାହୋ ! ଝାଡ଼ି ବେନିପକ୍ଷ
ଅନ୍ତରୀକ୍ଷେ ଉଡ଼ାଇବି ସର୍ବ ଯୋଦ୍ଧୃବର୍ଗ

ରଣଗର୍ବ ପଣଗର୍ବ କ୍ଷଣକର ମଧ୍ୟେ
ଛଡ଼ାଇବି ମତ୍ତଗର୍ବ ଆଉଗର୍ବଙ୍କର
ନଖେ ଥଣ୍ଟେ ବିଦାରିବ ବୈରିକଂ ହୃଦୟ
ନିର୍ଦ୍ଦୟ ସ୍ୱଭାବେ ଏତେ ଭାବନା କାହିଁକି
ଶତ ଜରା ଶତକାଳଦମନ ଆସନ୍ତୁ
ନବର୍ତ୍ତିବେ ଜଣେ ଜଣେ ଦେଖନ୍ତୁ ମୋ ପଣ
ଶୁଣି ମନ୍ଦେ ହସି ହୃଷୀକେଶ ବିଭାଷିଲେ
ଜାଣେ ଖଗବର ! ତବ ଅକଳିତ ବଳ
ନାଶୁ ନାହିଁ ନରସାଇଁ ବନ୍ଧୁକାର୍ଯ୍ୟ ପାଇଁ
ଦୁଷ୍ଟ କର୍ମ କଲେ ହେଲେ ବହୁକଷ୍ଟ ଲଭି
ତୁମ୍ଭେ ବଧ କଲେ ଯୁଦ୍ଧେ ଧରାଧିପ ବ୍ରଜ
ହେବ କିସେ କାର୍ଯ୍ୟ ଆଉ ଆତ୍ମଧାର୍ଯ୍ୟ ମତେ
ଜାଣି ପ୍ରଭୁ ମନୋଭାବ ତହୁଁ ପକ୍ଷୀ ଈଶ
ଭାଷିଲା ଯେ ଆଜ୍ଞା ତବ ପାଳିବ ଭୋଦେବ
ଆସନ୍ତେ ଶଶିଭାମିନୀ ଯାମିନୀ ଏକାଳେ
ଗାଢ଼ତମ କାଳିମାରେ ନିଜ ଅଙ୍ଗ ବୋଳି
ତାରହିଁ ନିସ୍ତବ୍ଧ ଭାବ ବହିଲା ଧରଣୀ
ମଧୁପୁରବାସୀ ମଧ୍ୟ ଭଜିଲେ ନିସ୍ତବ୍ଧ
ଝଙ୍କାରୀ ଝଙ୍କାର ମାତ୍ର ଶୁଭୁଅଛି ଦୂରେ
ନିଶାଯୋଷା ପୟର ନୂପୁର ନାଦ ରୂପେ
ଥରେ ଥରେ ଖଦ୍ୟୋତିକା ଦ୍ୟୁତି ପରକାଶୁ
ରାତ୍ରୀ ନେତ୍ର ଉନ୍ମେଷ ପରାଏ ଶୋଭା ବହେ
ସାଇଁ ସାଇଁ ରବେ ଧରା ଧରେ ଯା ସ୍ୱତାନ
ବିଶ୍ୱଈଶେ ଜପେ କିସେ ଅପଭ୍ରଷ୍ଟ ଶବ୍ଦେ
କୃଷ୍ଣମାୟା ବଳେ ସର୍ବେ ନିଦ୍ରାଦେବୀ କୋଳେ
ନିଦ୍ରିତ ଚେତନା ହୀନେ ଯେହ୍ନେ ମୃତଜୀବ
ଜାଣି ପକ୍ଷୀରାଟ ଆସି ସ୍ୱପୃଷ୍ଠେ ବସାଇ
ଘେନିଗଲା ମଥୁରାର ଧନଜନ ସର୍ବ
ନେଇ ନିବେଶିଲା ତ୍ୱରା ଦ୍ୱାରାବତୀପୁରେ

ନ ଜାଣିଲେ ବ୍ରହ୍ମା, ଇନ୍ଦ୍ର ରୁଦ୍ର ଆଦି ଦେବେ
ରହିଲେ ଏକାନ୍ତେ ପୁରେ ଲକ୍ଷ୍ମୀଦେବୀ କାନ୍ତ
ମାୟା ରଚିବାକୁ କାଳଦମନ ଦମନେ
ପାହିଲା, ଶର୍ବରୀ ବରି ଆସିଲା ଧରଣୀ
ଜ୍ୟୋତିଧାମ ଦେବ ଦିନମଣିଙ୍କି ସାଦରେ
ହସିଲା କାସାରନୀରେ ପଦ୍ମିନୀ ସୁନ୍ଦରୀ
ପ୍ରୋଷିତ ଭର୍ତ୍ତୃକା ଭାବେ ନିଜ ଭର୍ତ୍ତା ଲଭି
ଭୃଙ୍ଗନାଦ ଛଳେ ଭାଷି ସ୍ୱଦୁଃଖ କାହାଣୀ
ଉଚ୍ଛ୍ୱସିଲା ଶ୍ୱାସରୂପେ ସୁରଭୀମାରୁତ
ଶୁଝନ୍ତେ, ନୟନୁ ଶିଶିରାଶ୍ରୁ ପ୍ରେମଭରେ
ଥପ ଥପ ଥପେ, ମୁକ୍ତା-ଫଳର ସଦୃଶେ
ଦେଖି ଦେବ ଦିନମଣି ସରାଗ ପ୍ରକାଶି
ସ୍ୱକର ପ୍ରସାରି ପୋଛି ଦିଅନ୍ତି ସତ୍ୱର
ତା ଚାହିଁ ସ୍ୱାଗତଭାଷୀ ବିହଗ ନିବନ୍ଧ
ହୁଳହୁଳି ଦିଅନ୍ତି ବା କୋଳାହଳ ବ୍ୟାଜେ
କାକ ବକ କଳବିଙ୍କ କଳିଙ୍ଗ ଡାହୁକ
ତୌର୍ଯ୍ୟତ୍ରିକ ଆରମ୍ଭନ୍ତି ଯେ ଯାହାର ମତେ
ଏ ଭାବେ ପ୍ରଭାତ କାଳ ପ୍ରବେଶନ୍ତେ ଧରା
ଚାହିଁ ଦୁଷ୍ଟରାଟେ ଥାଟ ଚଳାଇଲେ ବେଗେ
ପ୍ରବେଶିଲେ ଆସି ମଧୁକଟକ ନିକଟେ
ଶତପୁର କରି ପୁର ବେଢ଼ି ଦୃଢ଼ତରେ
ଭାଙ୍ଗିଲେ ପୁର ପ୍ରାଚୀର ସ୍ତମ୍ଭ ତୋରଣାଦି
ପସାଇ ପଶନ୍ତେ ଧାଇଁ ସର୍ବ ଯୋଦ୍ଧୃବର୍ଗ
ଦେଖନ୍ତି ନଗର ମଧ୍ୟେ ନାହିଁ ଧନ ଜନ
ଆଶ୍ଚର୍ଯ୍ୟ ମଣିଲେ ତେଣୁ ସର୍ବ ନରମଣି
ରାତ୍ରକ ଭିତରେ କାହିଁ ଗଲେ ସର୍ବେ ବୋଲି
ଲୁଚିଥିବେ ଅବା ଭାବି ଘରେ ଘରେ ପଶି
ଲୋଡ଼ନ୍ତି କନ୍ଦି ବିକନ୍ଦି ଭାସି ମହାନଳେ
ପୁର ଲୋକି ପ୍ରଶଂସନ୍ତି ତହିଁ ସର୍ବ ଲୋକେ

ସ୍ୱର୍ଲ୍ଲୋକେ ଦୁର୍ଲଭ ଏହା ମର୍ତ୍ତ୍ୟେ ନାହିଁ କହି
କେମନ୍ତେ ବଳିଲା ଚିତ୍ତ ପଳାଇଲେ ତେଜି
ଅବଶ୍ୟ ମରଣ ତ୍ରାସେ ଲୁଚିଛନ୍ତି କେଣେ
ଖୋଜି ଖୋଜି ବିଲୋକେ ସୁନ୍ଦରଶିଶୁ ଏକ
ବସିଛି ପୁରଅଳିନ୍ଦେ ଇନ୍ଦିବର ଗାତ୍ର
ନିରେଖି ଦୟାର୍ଦ୍ର ହୃଦେ ଯାଇ ତାର କତି
ଚିନ୍ତିଲେ ସ୍ୱଚିତ୍ତେ କେଉଁ ପାମର ରମଣୀ
ସୁନ୍ଦର ଶିଶୁକୁ ବର୍ଜି ନିଜ ପ୍ରାଣେ ହେଜି
ପଳାଇଛି ଧନ୍ୟ ଛାଡ଼ି କେଡ଼େ ତା ନିଷ୍ଠୁର
ତଦନ୍ତେ ସରାଗେ ଜରାବୀର ଜବେ ଯାଇ
ପୁଚ୍ଛିଲେ କୁମାରେ ମାର ଯାର ପଟାନ୍ତର
କିପାଁରେ ସୁନ୍ଦର ଶିଶୁ ବସୁ ଏକା ପୁରେ
ପିତାମାତା ତୋତେ ଛାଡ଼ି ଗଲେ କେଉଁ ଆଡ଼େ
ଭୟ କି ମାଡ଼ଇ ନାହିଁ ଜନଶୂନ୍ୟ ସ୍ଥାନେ
କେଣେ ଗଲେ ଜନ ପ୍ରଜା କହ ଆରେ ବାଳ !
ନିର୍ଭୟ ନିଃଶଙ୍କ ହୃଦେ ତହୁଁ ସେ କୁମାର
କହି ଆରମ୍ଭିଲେ ଦମ୍ଭେ ଜରାକୁ ଏଭାବେ
ତେଜ ଓଜ ମିଶା ଭାଷେ ଜଳଦଗମ୍ଭୀରେ
ଶୁଣହେ ପ୍ରବାସୀଜଳ ନିବେଶି ଶ୍ରବଣ
ଜନପ୍ରଜା କେଣେ ଗଲେ ନିକି ମୋତେ ଜଣା
ଜାଣିଲେ କରିବ କଣ ତୁମ୍ଭେ ବା ତାଙ୍କର
ବସନ୍ତି ସେ ବହୁଦୂରେ ଦ୍ୱାରାବତୀ ପୁରେ
ଶକ୍ୟ ବା ତୁମ୍ଭର କାହିଁ ଯିବାକୁ ତହିଁକି;
ବହୁକଷ୍ଟେ ବହୁଥାଟେ ଆସିଛ ଏଠାକୁ
ତୁମ୍ଭବ୍ୟଥା ଚିନ୍ତି ଏଥେ ଅପେକ୍ଷିଛି ବସି
ଛାଡ଼ି ଯାଇ ନାହିଁ କେହି ଇଚ୍ଛାଏ ରହିଛି
କି ଇଚ୍ଛ ପ୍ରବାସୀ କହ ସାଧିବି ମୁଁ ତାହା
କୁମାର ସୁବୁଦ୍ଧିଗୀରେ ଶୁଣି ଜରାବୀର
କହିଲେ କାଳଦମନେ ଶୁଣିଲ କି ମିତ୍ର

ଶିଶୁହୋଇ କହେ କେଡ଼େ ସିହାଣିଆ ଭାଷା
ନାହିଁ ତିଳେ ଭୟଭ୍ରାନ୍ତି ଏସେ ଶତ୍ରୁ ମୋର
ବହୁରୂପୀ ପରି ବହେ କ୍ଷଣେ ନାନାରୂପ
ଜାଣେ ବହୁ ନଟକୁଟ ଜବେ ଯାଇ ଧର
ଶୁଣି ଜରାଗୀର କୃଷ୍ଣ ଉଠି ହେଲେ ଠିଆ
ଧରିଯାନ୍ତେ ଜରାମିତ୍ର ହସି ଖସି ଗଲେ
ପୁନଃ ଜରାମିତ୍ର ତହିଁ ଯାଉଁ ପୁନଃଖସି
ପଳାନ୍ତି କୌଶଳେ ବାର ବାର ମାୟାଧର
କାଳଦମନ ଦୁର୍ଦ୍ଦାନ୍ତ ଗୋଡ଼ାଇଛି ପଛେ
ଶ୍ରୀଧର ପଳାନ୍ତି ଧୀରେ ଭୀତିଗ୍ରସ୍ତବତ
ଦେଖି ଭାବୁଛନ୍ତି ଭୂପକୁଳ ହୋଇ ଉଭା
ତତ୍କାଳ ଧରିବେ ବୈରୀ ସେ କାଳଦମନ
ମାୟାଧର ମାୟା କାହିଁ ଜାଣିବେ ଦୁରନ୍ତ
ଅନ୍ତ ପାଇନାହିଁ ଯାର ବ୍ରହ୍ମାରୁଦ୍ର ଇନ୍ଦ୍ର
ଏହି ମତେ ଛଳେ କଉଶଳେ ଛଳି ନେଇ
ମନୋହର ମଧୁବନେ ଯାଇ ପ୍ରବେଶିଲେ
ଅତିହିଁ ବସ୍ତୃତ ପୁଣି ପବିତ୍ର ସେ ବନ
ନାନାଜାତି ତରୁଲତା କୁଳେ ସେ ସଂକୁଳ
ଫଳ ପୁଷ୍ପେ ଯୁତ ହୋଇ ଶାଖା ନତଭରେ
କ୍ଷିତିତଳ ଚୁମ୍ବୁଛନ୍ତି ଆହ୍ଲାଦ ଜନ୍ମାଇ
ଡାଳେ ରହି ସୁଧାସମେ ସ୍ୱାଦୁ ଫଳଜାଳ
ପାଚି ପଚି ଝଡ଼ି ପଡ଼ୁଛନ୍ତି କେତେ ତହିଁ
ଲତା ଗୁଳ୍ମେ ସ୍ୱଚ୍ଛାକାରେ ପୁଷ୍ପଗୁଚ୍ଛ ଫୁଟି
ଚହଟଇ ବାସ ତହୁଁ ମନୋମୁଗ୍ଧକର
ସଞ୍ଚରନ୍ତି ଚଞ୍ଚରୀକଚୟ ପୁଷ୍ପେ ପୁଷ୍ପେ
ମକରନ୍ଦ ପାନକରି ଆନନ୍ଦିତ ମନେ
କୂଜନ୍ତି କୋକିଳକୁଳ ସପଞ୍ଚମ ତାନେ
ଆନ ଆନ ପକ୍ଷିଯୂଥେ ଯୁତ ହୋଇ ତହିଁ
ଦଳେ ଦଳେ ଭ୍ରମୁଛନ୍ତି କାହିଁ ମୃଗଗଣ

ଶଶକ ଶମ୍ବର ଶାଖାମୃଗଙ୍କ ସହିତ
କାହିଁ ତରୁକାଣ୍ଡେ ଶୋଭେ ମଧୁଚକ୍ରଚୟ
ଜଳଭାରେ ବିଲମ୍ବିତ ଜଳଦସଂଜାତ
ପୁଷ୍ପିତା ଲତାରେ କାହିଁ ଶୋଭେ କୁଞ୍ଜପୁଞ୍ଜ
ମଦନ କ୍ରୀଡ଼ା ସଦନ ସୁଷମାକୁ ବହି
କିନ୍ନର କିନ୍ନରୀ କାହିଁ ଲତା ଦୋଳିକାରେ
ଦୋଳୁଛନ୍ତି ମଧୁସ୍ୱରେ ପ୍ରେମଗୀତ ଗାଇ
ଆଗ୍ରେହି ଫଳିତ ବୃକ୍ଷେ କାହିଁ କପିକୁଳ
ଆନ୍ଦୋଳନ୍ତି ଡାଳ ଫଳ ଭକ୍ଷିବା ସକାଶେ
ଏ ଭଳି ସୁଷମାଶାଳୀ ସେ ମଧୁକାନନେ
ରହିଲେ ଶ୍ରୀକୃଷ୍ଣ ଆସି ମାନସ ଉଲ୍ଲାସେ
ତହିଁକି ଧାବନ୍ତେ କାଳଦମନ ଦୁରନ୍ତ
ପଳାଇଲେ ତହୁଁ ଦ୍ରୁତେ ଇନ୍ଦ୍ର ପରବତେ
ସୃଷ୍ଟିର ଶାଶ୍ୱତ ଗିରି ଅତି ରମଣୀୟ
ସୁର ସିଦ୍ଧ ଗନ୍ଧର୍ବ ସେବନ୍ତି ଯାକୁ ନିତି
ଉତ୍ତୁଙ୍ଗ ତରଙ୍ଗମୟୀ ତୁଙ୍ଗଭଦ୍ରା ନଦୀ
ଯା ରୁଚିର ଉରସ୍ଥଳ ଭେଦି ନିତସ୍ରବଇ
ଝର ଝର ଝଙ୍କାର ଝଙ୍କାରୁ ଅବିରତ
ଗିରିଦରୀ ନିନାଦିତ ହୁଏ ତାର ତେଣୁ
ଯା'ଶିଖରେ ନିବସନ୍ତି ଦେବୀ ଇନ୍ଦ୍ରେଶ୍ୱରୀ
କାମିକାମ ପ୍ରଦାୟିନୀ ଆପଦ ଧ୍ୱଂସିନୀ
ମହାତେଜା ଭରଦ୍ୱାଜ ବ୍ରହ୍ମର୍ଷି ପୂରୁବେ
ରହିଥିଲେ ଯହିଁ ତପୋନୀରେ ଅବଗାହି
ନିବିଡ଼ ନିଘଞ୍ଚ ଯହିଁ ତରୁଲତାବ୍ରତ
ବିରାଜିତ ନିତ୍ୟ ଯହିଁ ନିବିଡ଼ ତାମସ
ସେ ସ୍ଥଳୀରେ ପହୁଞ୍ଚିଲେ ଲତା ପତ୍ରେ ଗଳି
ଅକ୍ଷୁଣ୍ଣ ଶରୀରେ କୃଷ୍ଣ ସୂକ୍ଷ୍ମ ରୂପ ଧରି
ଗୋଡ଼ାଏ କାଳଦମନ ଶମନ ସମାନ
ହେଉଛି ବିଦୀର୍ଣ୍ଣ ଦେହ କଣ୍ଟାଖୁଣ୍ଟଲାଗି

ରକ୍ତେ ଜର ଜର କାୟା ଜବା ପୁଷ୍ପଜାଣି
ଜାଣି ନ ପାରଇ ବୀରମଣି ରୋଷବଶୁ
ସେ ନିର୍ଜନ ତମାଛନ୍ନ ସ୍ଥାନେ ଦିବ୍ୟଗୁମ୍ଫା
ତାମଧ୍ୟେ ବିରାଜେ ରାଜପ୍ରାସାଦ ସୁନ୍ଦର
ପ୍ରାସାଦର ଅଙ୍କେ ଦିବ୍ୟ ପର୍ଯ୍ୟଙ୍କ ଉପରେ
ଗୁପ୍ତେ ସୁପ୍ତ ମୁଚୁକୁନ୍ଦ ଗନ୍ଧର୍ବମହେନ୍ଦ୍ର
ଦେବଦତ୍ତ ବରେ ସଦା ନିଦ୍ରା ଅଭିଭୂତ
ଭସ୍ମୀଭୂତ ହୁଏ ତାଙ୍କ ନିଦ୍ରାଚ୍ୟୁତକାରୀ
ଜ୍ଞାତ ହୋଇ ତାହା ସର୍ବଜ୍ଞାତା ତହିଁ ଯାଇ
ଅଦୃଶ୍ୟ କରିଲେ କାୟା ନିଜ ମାୟା ବଳେ
ଅମର୍ଷବଶ ମାନସ ସେ କାଳଦମନ
ଗୋଡ଼ାଇ ପଶିଲା ଆସି ସେ ଗୁମ୍ଫା ଭିତରେ
ଶାୟିତ ପୁରୁଷ ଶତ୍ରୁ ଚିହ୍ନେ ତା ଚିହୋଇ
ଦୃଢ଼େ ପ୍ରହାରିଲା ପାଷ୍ଣି ଦୃଷ୍ଟାଂଭୂତ ଭାବେ
କଷ୍ଟବଶେ ଉଠିବସି ଚାହାନ୍ତେ ସେ ନେତ୍ରେ
ଭସ୍ମୀଭୂତ ଭୂତଗାତ୍ର କାଳଦମନର
ବିନା ଦୋଷେ ପରହିଂସା କରେ ଯେ ବରଣ
ମରଣ ହୁଅଇ ତାର ଜାଣ ସାଧୁଜନରେ
କପଟ ନାଟକ ପଟୁନଟ ଦେବହରି
ଆନ ହାତେ କରି ତାର ନିଧନ ସାଧନ
ଖଗେ ସୁତ୍ରପୁରେ ଯାଇ ସୁନାସୀରଠାରୁ
ଆଣି ସୁଧର୍ମାସଭାକୁ ନିର୍ଦ୍ଧିଦ୍ୱୟ ସହ
ପ୍ରବେଶ୍ଲେ କୁଶସ୍ଥଳୀ ଦ୍ୱାରାବତୀ ପୁରେ
ସପତବଂଶ ଯାଦବେ ଦେଖି ହେଲେ ସୁଖୀ
ଏଣେ ପ୍ରଣୟୀ ମିତ୍ରର ମୃତ୍ୟୁବାର୍ତ୍ତା ଶୁଣି
ଶିଳେ କର ନିବେଶିଲେ ବୀର ଜରାସନ୍ଧ
ମିତ୍ରର ଅଭାବେ ନେତ୍ର କରି ଥନଥନ
ଶୋକ କଲେ କନକନ ସ୍ୱନେ ତାପ ଲଭି
ନୋହିଲେ ଅରାତି ସାଧ୍ୟ ମିତ୍ର ହେଲେ ବଧ

ତେଣୁ ଗୁରୁତର କ୍ରୋଧେ ହୋଇ ସେ ଅଧୀର
ନେତ୍ର କରି ଆରକତ ଭରି ନିଶେ ହସ୍ତ
କମ୍ପାଇ ଶରୀର ଶିର ଓଷ୍ଠ କରି ପୁଷ୍ଟ
ଧରାଧବେ ଆଦେଶିଲେ ଯାଅ ମଧୁପୁର
ସମୂଳେ ବିଧ୍ୱଂସ, ଚିହ୍ନବର୍ଣ୍ଣ ତା ନରଖି
ଅନଳ ଲଗାଅ ପୁଣି ଘରେ ଘରେ ନେଇ
ହେଉ ଭସ୍ମମୟ ପୁର ନଥାଉ ତା ନାମ,
ପୁନଃ ପ୍ରତ୍ୟାବୃତ୍ତ ହେଲେ ଯାଦବକଦମ୍ବ
ଲଭନ୍ତୁ ଘୋର ପ୍ରମାଦ ବାସ ଗ୍ରାସ ହୀନେ
ପାଇ ଜରାସନ୍ଧ ଆଜ୍ଞା ଯାଇ ଭୂପସଙ୍ଘ
ବିଧ୍ୱଂସିଲେ ମଧୁପୁର ଭୃତ୍ୟଜନ ନେଇ
ଭାଙ୍ଗିଲେ ମେଢ଼ ମଣ୍ଡପ ଅଟ୍ଟାଳୀ ଜଗତୀ
ଅବଶିଷ୍ଟ ଯାହାଥିଲା ରୁଷ୍ଟ ଭାବ ବହି
ଅଗ୍ନି ଆଣି ପୁଣି ବାସେ ବାସେ ନିବେଶନ୍ତେ
ଜ୍ୱଳିଲା ପ୍ରଚଣ୍ଡେ ବହ୍ନି ଅତିହିଁ ପ୍ରବଳେ
ଚଡ଼ଚଡ଼େ ପଡ଼ପଡ଼େ କ୍ଷଣିକର ମଧ୍ୟେ
ତେତେ ବଡ଼ ପୁର କରିଦେଲା ଛାରଖାର
ତାହାଦେଖି ଜରାସନ୍ଧ ମନେ ହୋଇ ସୁଖୀ
ଦହ୍ୟମାନ ସ୍ୱ ମାନସେ କିଛି ଶାନ୍ତି କଲେ
ଦୁଷ୍ଟର ସ୍ୱଭାବ ଏହା ଭାବହେ ମାନବ
ନିଜଋଷ୍ଟତା ନ ତେଜେ ପରାନିଷ୍ଟବିନା
ନିର୍ମୂଳ ହୁଅନ୍ତେ ଆଶା ଲତା ହୃଦସ୍ଥଳୁ
ବରଜିଲେ ଶତ୍ରୁସାଧ୍ୟ ଚିନ୍ତା ବାଧ୍ୟ ହୋଇ
ଷଟବର୍ଗେ ଅଷ୍ଟଦଶ ବାର ବାର ଆକ୍ରମଣ
କରି କ୍ଷାନ୍ତ ହେଲେ ଅନ୍ତେ ଗିରିବ୍ରଜକାନ୍ତ
ତହୁଁ ମହାଥାଟ ବାହି ବଳୀରାଟ ସହ
ଫେରିଲେ ବିଶୁଷ୍କମୁଖେ ନିଜ ରାଜଧାନୀ

ଇତିଶ୍ରୀ ଜରାସନ୍ଧ ବଧ କାବ୍ୟେ ଜରାସନ୍ଧ ଅଷ୍ଟାଦଶବାର ଆକ୍ରମଣ ବର୍ଣ୍ଣନେ
ନାମ ଦ୍ୱାଦଶଃ ସର୍ଗଃ ।

## ତ୍ରୟୋଦଶ ସର୍ଗ

ଭାରତଭର କୌସ୍ତୁଭ ହସ୍ତିନା ନଗରେ
ରାଜଇ କୌରବସଭା ମହୀମହନୀୟା
ସଦନ ସୁଷମା ତାର ମର୍ତ୍ତ୍ୟେ ଅନୁପମ
ବିହ୍ବଳ ହୃଦୟେ ଆଣେ ଭୀତି ନିରନ୍ତର
ବିଶାଳ ତୋରଣ ଯହିଁ ଉତ୍ସର୍ଗେ ବିରାଜି
ସୁବକ୍ର ଶକ୍ରକାର୍ମୁକ ଆକାରେ ଧିକ୍କାରେ
ମୌକ୍ତିକ ମାଣିକ୍ୟ ଆଦି ରତ୍ନେ ହୋଇ ଯୁତ
କ୍ଷଣପ୍ରଭା ନିଭା ବିଭା ବହେ କ୍ଷଣେ କ୍ଷଣେ
ଶ୍ୱେତ ମତ୍ତଗଜ ବେନି ମୂର୍ତ୍ତି ବେନି ପାର୍ଶ୍ୱେ
ବିରାଜନ୍ତି ନିଜ ହସ୍ତେ ବେନି କଞ୍ଜ ଘେନି
ହାଟକ କପାଟ ପଟେ ଦନ୍ତିଦନ୍ତପଟ
ପ୍ରକଟେ ନବପ୍ରବାଳ ନାଳି ଫୁଟି ତହିଁ
ମଧ୍ୟେ ତାର ମରକତ ଟୋପ ପୁଞ୍ଜ ପୁଞ୍ଜ
ରହି ନେତ୍ରତ୍ରସ୍ତ କରେ ରତ୍ନଭବାପ୍ରଭା
ହୀରା ସ୍ତମ୍ଭମାନ ପୁଣି ହୋଇ ନୀଳାଶିର
ପଂକ୍ତି ଭାବେ ସ୍ଥିତ ଗୃହଗାତ୍ରେ ସମୁନ୍ନତେ
ବୈଦୁର୍ଯ୍ୟରକାଣ୍ଡ ଗଜମୁକ୍ତାର ଝାଲର
ଝୁଲଇ ସଧୀରେ ଧୀରସମୀରେ ଯା ବକ୍ଷେ
ଊର୍ଦ୍ଧ୍ୱେ ରତ୍ନ ବିଜଡ଼ିତ ବିତାନ ବିରାଜେ
ସ୍ୱଚ୍ଛ ମୋତି ଗୁଚ୍ଛ ଝରା ଦୋଳି ମଧ୍ୟଦେଶେ
ଗୃହତଳ ସମତଳ ସ୍ଫଟିକ-ଇଷ୍ଟକେ
ମସୃଣକ୍ଷ ବଶେ ପଦେ ଆଗେଇ ବିପଦ
ନାନାବର୍ଣ୍ଣ ରତ୍ନେ ତହିଁ ଜଳଲତା ଚିତ୍ର
ହେବାରୁ ସରସୀ ଭ୍ରମ ଆଭାସେ ମାନସେ
ତାପରେ ସୁସଜ୍ଜ ମଞ୍ଚ ଧାଡ଼ି ଧାଡ଼ି ହୋଇ

ପଡ଼ିଅଛି ଧାତୁ ରତ୍ନେ ନିର୍ମିତ ଯେ ଅବା
ହଂସୁଳି ତୂଳା ତୂଳିକା ମହାର୍ହପ୍ରଚ୍ଛଦେ
ପୁଣି ମଞ୍ଚ ପୃଷ୍ଠ ଘଞ୍ଚ ମହାମନୋହରେ
ସେ ସଭା ଶୋଭାବର୍ଦ୍ଧନ କରି ଏକଦିନ
ବସିଥିଲେ ଯୁଧିଷ୍ଠିର ଶାନ୍ତକାନ୍ତ ମୂର୍ତ୍ତି
ସଙ୍ଗେ ଚାରିଭ୍ରାତା ଭୀମକର୍ମା ଭୀମସେନ
ବିପକ୍ଷବକ୍ଷଃ ଦାରକ ଦୁର୍ଜ୍ଜୟ ହର୍ଯ୍ୟକ୍ଷ
ରଣବିଜୟୀ ଅର୍ଜ୍ଜୁନ ଧନ୍ୱିଚୂଡ଼ାମଣି
ବିଶ୍ୱଜୟୀ ବାନା ଯାର ଉଡ଼ଇ ତ୍ରିପୁରେ
ଅରାତି ଅନ୍ତକ-କୁନ୍ତଧର ସୁକୁମାର
କୁମାରବିକ୍ରମୀ ପୁଣି କୁମାର-ନକୁଳ
ତ୍ରିକାଳଜ୍ଞ ସହଦେବ ବିଜ୍ଞ ମନ୍ତ୍ରିମଣି
ଆଗତ ନିଗତ ବାର୍ତ୍ତା ହସ୍ତେ ଯା ନିହିତ
ଗର୍ବୋନ୍ନତଗ୍ରୀବ ରାଜାବିର୍ଯ୍ୟ ଦୁର୍ଯ୍ୟୋଧନ
ଦୁର୍ବିନୀତ ଜନଶତି ଭ୍ରମ ସହ ତହିଁ
ପୁନଃ ଅଟଳପ୍ରତିଜ୍ଞ ଭୀଷ୍ମ ମହେଷ୍ୱାସ,
ବୀରବର୍ଯ୍ୟ ଦ୍ରୋଣ କୃପ ଆଚାର୍ଯ୍ୟ ପ୍ରବର,
ବିସମ୍ବାଦୀ ଦୃଷ୍ଟିଭେଦୀ ମହାବୀର କର୍ଣ୍ଣ,
ମହାରଥ ଅଶ୍ୱଥାମା, ରଣଶଲ୍ୟ ଶଲ୍ୟ,
କପଟ କୌଶଳପଟୁ ସଚିବ ଶକୁନି
ରଥୀବର ଜୟଦ୍ରଥ ସମରସମର୍ଥ
ବୀର ବୀରଭାନୁ ଶୂରସାର ଭୂରିଶ୍ରବା
ଯୁଯୁତ୍ସୁ ବିଦୁର ପୁଣି ଭଲ୍ଲୁକାଦି ସ୍ଥିତ
ବୀର ମହାବୀର ଦୂତ ଭୃତ୍ୟ ଛତ୍ରଧର
ଆଲଟ ଚାମରବାହୀ ପତ୍ତି ସେନାପତି
ବିଦୂଷକ କର୍ମଚାରୀ ବୈଦ୍ୟ ଜ୍ୟୋତିଷିକ
ଶାସ୍ତ୍ରଜ୍ଞ ଦୈବଜ୍ଞ ପୌର ଜାନପଦ ସଭ୍ୟ
ଗାୟକ ବାଦକ ବକ୍ତା ନର୍ତ୍ତକ ନର୍ତ୍ତକୀ
ମନ୍ତ୍ରୀ ପୁରୋହିତ ପୁଣି ସୁକବି ପଣ୍ଡିତ

ତାମ୍ବୁଳକରଙ୍କବାହୀ ପତଦ୍‌ଗ୍ରାହୀଜନ
ଏ ଆଦିରେ ପରିପୂର୍ଣ୍ଣ ରହେ ସଭାଗୃହ
ଦିବ୍ୟବାସ ସୁବାସ ଭୂଷାରେ ହୋଇ ସଜ
ଦିଶନ୍ତି ଦେବସମାଜ ଦେବବ୍ରତ ବତ
ସେ ସଭା ଆବାସ ତେଣୁ ଭାଷବାସ ଘେନି
ଗହ ଗହ ମହ ମହ ବହେ ଅହରହଃ
ହେଉଛି ବିଚାର ତହିଁ ଅର୍ଥୀ ପ୍ରତ୍ୟର୍ଥିର
ଦେଶ ବିଦେଶର ପୁଣି ହେଉଛି ଚରଚା
ହେଉଅଛି କେବେ ହାସ ପରିହାସ ଖେଳ
ଗୀତ ବାଦ୍ୟ ନୃତ୍ୟ ଆଦି ହେଉଛି ବା କେବେ
ହରିନାମ ସୁରସିକ ଦେବର୍ଷି ନାରଦ
ଆସି ଗଲେ ତହିଁ ଖରେ କରେ ବୀଣାଧରି
ଚାହିଁ ସର୍ବେ ଉଭା ହେଲେ ସ୍ୱଆସନୁ ଉଠି
ପାଛୋଟିଲେ ଯୁଧିଷ୍ଠିର ରାଜା ତହୁଁଯାଇ
ସଭାଜନେ ସ-ଭାଜନେ ଆସନେ ବସାନ୍ତେ
ରାଜନେ ପୁଛିଲେ ଏହିମତେ କ୍ଷେମବାର୍ତ୍ତା
ଶତ୍ରୁ ଉପଦ୍ରବୁଁ ରାଜ୍ୟ କରିଛ ନା ରକ୍ଷା .
ଅଛିନା ସୌଭାତ୍ର ଭ୍ରତାମାନଙ୍କ ସହିତ
ସୁଖୀ ଅଛନ୍ତି ନା ତୁମ୍ଭ ରାଜ୍ୟପ୍ରଜାଚୟ
ଦୁଃଖୀ ତ ନାହାନ୍ତି କେହି ଆଧିବ୍ୟାଧି ବଶୁଁ
ମେଘମାଳେ ଯଥାକାଳେ ବିର୍ଷାନ୍ତି ନା ବାରି
କ୍ଷେତ୍ରକାରୀ କ୍ଷେତ୍ରୁଁଶସ୍ୟ ଲଭନ୍ତି ନା ଭଲେ
ନାହିଁତ ସ୍ୱଦେଶେ ଦସ୍ୟୁ ତସ୍କର ଉତ୍ପାତ
ନିଶା ପଶା ଯୋଷାର ନାହିଁ ତ ବ୍ୟବହାର
ବଳ ଦୁର୍ଗ କୋଷ ଘୋଷ ରଚ୍ୟ ନା ଆକଟେ
ଅସ୍ତ୍ର ଶସ୍ତ୍ର ବହୁ ଭାବେ ରଖିଛନା ଗୃହେ
ଦଣ୍ଡ କିନା ଦୁଷ୍ଟେ ପୁଣି ମଣ୍ଡକିନା ଶିଷ୍ଟେ
ନିଜ ରାଜ୍ୟର ରକ୍ଷଣେ ଉଚିତ ବିଚାରେ
ସତ୍କର୍ମେ ଭଣ୍ଡାର ଧନ ହେଉଛି ନା ବ୍ୟୟ

ଭଣ୍ଡି ତ ନ ଖାନ୍ତି ଖଣ୍ଡ ଚାଟୁକଥା କହି
ଯୁବତୀ ପାଳନ୍ତି କିନା ପତିବ୍ରତା ଧର୍ମ
ଭଲ କର୍ମ କରନ୍ତି ନା ସ୍ୱଭୃତ୍ୟ ଅମାତ୍ୟ
ମନ୍ତ୍ରଣା ରଖନା ଗୁପ୍ତ ହୋଇ ମନ୍ତ୍ରୀ ଯୁତ
ଅନ୍ୟ କେ ଜାଣେ ତ ନାହିଁ ଲାଞ୍ଚ ଖୁଞ୍ଚ ଦେଇ
ଅନ୍ତଃପୁର ବାରଣ ବୁଝନା ଯାଇ ବ୍ୟଗ୍ର
ଖୋଜାଇ ଆଣ ନା ରାଜ୍ୟବାର୍ତ୍ତା ଦୂତପେଷି
ହୋଇଛି ନା ଦେଶେ ଭଲ ପନ୍ଥା ପାନ୍ଥାଳୟ
କୂପ ବାପୀ ପୁଷ୍କରିଣୀ ଜନହିତ କାର୍ଯ୍ୟ
କଷ୍ଟ ତ ନ ପାନ୍ତି ଦେଶେ ଗୋ ବିପ୍ର ସନ୍ନ୍ୟାସୀ
ଅନ୍ନ ବସ୍ତ୍ର ଲଭନ୍ତି ନା ଭିକ୍ଷୁକ ଅତିଥି
ନିତ୍ୟ ସାଜି ରଖ କିନା ଚତୁରଙ୍ଗ ସେନା
ଖାଦ୍ୟାଭାବେ ଭଜନ୍ତି କି କ୍ଷୀଣ ଗଜବାଜୀ
ରୀତିମତେ ଭୃତ୍ୟେ ଭୃତି ଲଭେ ନା କର୍ମର
କରିଛ ନା ନଦୀତୀରେ ତରୀରେ ଘଟନ
ଫୁଲ ଫଳ ଯୁତ ସୁଶୋଭନ ଉପବନ
ଅଛି ନା ସୁଲଭେ ରାଜ୍ୟେ ଲଭନ୍ତି ନା ପ୍ରଜା
ଭୂମିକର ନ୍ୟାୟଭାବେ ନିଅନା ଭୂମିରୁ
କଷ୍ଟତ ନପାନ୍ତି ପ୍ରଜା ବହୁକର ବଶୁଁ
ନିତି ସିଂହାସନେ ବସି କରନା ବିଚାର
ଅର୍ଥୀ ପ୍ରତ୍ୟର୍ଥିର ଦୋଷଗୁଣ ନ୍ୟାୟେ ବାଛି
ସୁଯତ୍ନେ ରଖନା ଗୋରୁବ୍ରଜ ନିଜରାଜ୍ୟେ
ରହନ୍ତିତ ଦୁଗ୍ଧବତୀ ଧେନୁ ପ୍ରତିଗୃହେ
ଦେବାର୍ଚ୍ଚନା କର କିନା ନିତି ଶୁଦ୍ଧମନେ
ହୋମେ ହବିର୍ଭାଗ ଦିଅ କିନା ଦେବକର୍ମେ
ଶୁଣି ଉତ୍ତରିଲେ ଧର୍ମସୁତ ଯୁଧିଷ୍ଠିର
ତବ ଶ୍ରୀପଦ ପ୍ରସାଦୁ ଆହେ ବ୍ରହ୍ମନିଷ୍ଠ !
ଯାବତ ଜିଜ୍ଞାସ୍ୟ ଭାଷ୍ୟ ବିଷୟର ମଧ୍ୟୁ
ଦୃଷ୍ୟ ଭାବେ କିଛି ଦୃଶ୍ୟ ନାହିଁ ଏହି ଦେଶେ

ଶୁଣି ମନ୍ଦେ ହସି ଋଷି ଭାସିଲେ ଏ ଭାଷା
ତୁମ୍ଭେ ଧର୍ମସୁତ ଅଧର୍ମେ କି ଥିବ ଚିତ୍ତ,
ତହୁଁ ଧର୍ମବନ୍ତ ପୁଛାକଲେ ବିଧିବନ୍ତେ
କାହିଁଥିଲ ଦେବଋଷି ଆସିଲ କି ମର୍ତ୍ତେ
ଶ୍ରୀଚରଣ ଦରଶନ କରାଇବା ଲାଗି
ଅବା କି ମୋ ବନ୍ଧୁ ଭ୍ରାତା ସଙ୍କଳନ ଆଶେ
ଆସିଲ ଏରାଜ୍ୟେ ଅବା ଅନ୍ୟ କେଉଁ କାର୍ଯ୍ୟେ;
ନତୁ ଦେଖି କି ଆଶ୍ଚର୍ଯ୍ୟ ଭିଆଇବା କିସ
କୃପାବଶେ ଆସିଛ ଏ ଦାସେ ଭାଷିବାକୁ
କହ ମୁନିବର ! ଶୁଣିବାକୁ ଇଚ୍ଛାମୋର;
କହିଲେ ନାରଦ ତହୁଁ ବିଷାଦିତ ଚିତ୍ତେ
ଶୁଣ ଧର୍ମରାଜ ଯହିଁ ପାଇଁ ମୋ ବିରାଜ
ଆଜି ସଂଜୀବନୀ ପୁରେ ଶମନ ସମାଜେ
ଥିଲି, ଯା ଦେଖିଲି କହୁଅଛି ତୁମ୍ଭ ଆଗେ
ତୁମ୍ଭ ପିତା ପାଣ୍ଡୁ ପାଣ୍ଡୁଗଣ୍ଡେ ଉଭା ହୋଇ
ରହିଛନ୍ତି ତହିଁ ତିନିପାବଚ୍ଛର ତଳେ
ନ ଭାଷଇ ପଦେ ବସ ବୋଲି ଜନ୍ତୁଇଶ
ପଦଧୂଳି ହୁଏ ବୋଲି ତାଙ୍କ ମୌନିଦେଶେ
ବ୍ରହ୍ମହତ୍ୟା ଦୋଷ ବଶୁଁ ତାଙ୍କ ଏ ଲାଞ୍ଛନା
ତୁମ୍ଭେତ ସୁପୁତ୍ର ପଞ୍ଚ ପାଞ୍ଚତା ଉପାୟ
ଏତେ ଭାଷି ଋଷି ମନୋଯାନ ଆରୋହଣେ
ମିଶିଗଲେ ମହାକାଶେ ଦୃଶକୁ ନ ଦିଶି
ଶୁଣି ଦୁର୍ଯ୍ୟୋଧନ କର୍ଣ୍ଣ ଶକୁନି ଏ ଆଦି
ଦୃଷ୍ଟେ ହୃଷ୍ଟେ ତାଳିଦେଇ ହସିଲେ ସଭାରେ
ବ୍ରହ୍ମହତ୍ୟା ଦୋଷୀ ଏ ପାଣ୍ଡବେ ବୋଲି ଭାଷି
ସଭା ମଧ୍ୟୁ ଖସି ଗଲେ, ରୋଷି ଦୁର୍ଯ୍ୟୋଧନ
ମାତ୍ର ଯୁଧିଷ୍ଠିର ଶୁଣି ପିତୃକଷ୍ଟ ଗୁଣି
ଘୋର କ୍ଳେଶ ବଶେ ଢଳି ପଡ଼ିଲେ ମହୀରେ
ଅଦୂର-ବନ୍ଧୁ ବିଦୁର ସହଦେବ ସହ

ଆସି ପ୍ରବେଶିଲେ ଖରେ ତାଙ୍କରି ସମ୍ମୁଖେ
ମୁଖେ ପାଣି ସିଞ୍ଚି ପୁଣି ବିଞ୍ଚି ସୁବ୍ୟଜନେ
କରାଇଲେ ସଚେତନ ରାଜନେ ତକ୍ଷଣି
ସଂଜ୍ଞାଲଭି ବିଭୁ-ସଂଜ୍ଞା ଉଚ୍ଚାରି ସେ ଉଚ୍ଚେ
କହିଲେ ହେଲାକି ହାୟ ! କି କଲାରେ ବିହି
ଆର୍ତ୍ତତ୍ରାଣ ବିନା ତ୍ରାଣ କେ କରିବ ତହୁଁ
ଯାଅ ଭ୍ରାତା ପାର୍ଥ ପଥ ବାହି ଘୂରାବତୀ ·
ଜଣାଇ ମଣାଇ କୃଷ୍ଣେ ଆଣ ଧାଡ଼ିକାରେ
ନ ତୁ ପ୍ରାଣ ତେଜିବି ମୁଁ ପିତାତାପ ହେଜି;
ସଦା ସେ ପାଣ୍ଡବ ପକ୍ଷ ଦୁଃଖ କାଳେ କିପାଁ
ସପକ୍ଷ ନୋହିବେ, ଆମ୍ଭ ବକ୍ଷୋଦୁଃଖ କହ
ଆଜ୍ଞା ପାଇ ପଦବ୍ରଜେ ଯାଇ ଅରଚୁତ
ପ୍ରବେଶ କେତେ ବାସରେ ଦ୍ୱାରାବତୀ ପୁରେ;
ରାଜଇ ମହାବ୍ଧି ମଧ୍ୟେ ପୁର ଦ୍ୱାରାବତୀ
ବହି ଅଭ୍ରଶୁଭ୍ର ସୌଧସଦନ ନିବହ
ଅଷ୍ଟ ରତ୍ନେ କାରୁକୃତ ନାନା ତରୁଲତା
ବିନିର୍ମିତ ସୁବିଚିତ୍ରେ ଯା ଭିତିଫଳକେ
ଦୋଳେ ଉର୍ଦ୍ଧ୍ୱେ ମୁକ୍ତାଜାଳ ହୋଇ ଲମ୍ୱମାନ
ଆନ ଆନ ମନ ସହ ମହାମହୋଲ୍ଲେ
ରତନ କେତନ ସ୍ୱର୍ଣ୍ଣ କଳସ ଯେ ଘେନି
ବୀତିହୋତ୍ର-ହେତି ବତ ପ୍ରକାଶନ୍ତି ଦ୍ୟୁତି
ତା ତୋରଣ ସ୍ତୋମ ଶକ୍ର କାର୍ମୁକ ଆକାରେ
ଶୋଭନ୍ତି ସ୍ୱପିଣ୍ଡ ମଣ୍ଡି ବିବିଧ ରତନେ
ଯେ ତୋରଣଦେଶ ବେନିପାର୍ଶ୍ୱେ ଅବସ୍ଥିତ
କରୀକୁମ୍ଭ ବିଦାରକ ହରି ମୂର୍ତ୍ତିଦ୍ୱୟ
ମେଢ଼ ମଣ୍ଡପ ଜଗତୀ ମନ୍ଦିର ସୋପାନ
ବାତାୟନ ପୁରଦ୍ୱାର ପ୍ରାକାର ପ୍ରାଚୀର
ଅଟ୍ଟାଳୀ ପ୍ରକୋଷ୍ଠ ସ୍ତମ୍ଭ ଦେହୁଳୀ ଅଳିନ୍ଦ
ଅପାରୁ ଅପାର ପୁର ମଧ୍ୟେ କରାଜନ୍ତି

କୂପ ବାମ୍ଫି ତଡ଼ାଗ ସୁବନ ଉପବନ
ଶୋଭୁଛନ୍ତି ତହିଁ ରହି ବିଚିତ୍ରତା ବହି
ଭୋଜବୃଷ୍ଣି ଅନ୍ଧକ ଯେ ଚୂହାଣ କୁକୁର
ଯାଦବ ଶୂର ଏ ଆଦି କ୍ଷିତିଖ୍ୟାତ ଯେବା
ଚୌରାଶୀ କୋଟି ଯାଦବ ସପତ ବଂଶର
ବସେ ଯହିଁ ସକୁଟୁମ୍ବେ ଭିନ୍ନ ଭିନ୍ନ ବାସେ
ରୁକ୍ମିଣୀ ସତ୍ୟଭାମାଦି ଅଷ୍ଟ ପାଟ ବଂଶୀ
ଷୋଡ଼ଶ ସହସ୍ର ବରମହୀଳା ଆବର
ପୁଣି ଦେବକୀ ରୋହିଣୀ ସୁଭଦ୍ରା ରେବତୀ
ଇନ୍ଦୁମତୀ ମୂଳେ ବହୁ ସୀମନ୍ତିନୀ ଠୂଳ
ପାରିଜାତ ଆଦି ଘେନି ବହୁଦେବତରୁ
ସୁପ୍ରଭା ସୁଧର୍ମା ସଭା ସ୍ୟମନ୍ତକ ମଣି
ଆଲମ୍ବ ବିଲମ୍ବ ଧ୍ୱଜ ପତାକା ଚାମର
ଆଲଟ ପାଟଛତ୍ରାଦି ପୁଣି ବିରାଜନ୍ତି
ବିଶ୍ୱକର୍ମା ଶିଳ୍ପକର୍ମେ ନିର୍ମିତ ଯେ ପୁର
କହେ ଜନ୍ମିଲେ ହେଁ ବସି ତା ଶୋଭାକେ ଶେଷେ
ବାରିଧି ସ୍ତମ୍ଭଇ ଯୋଷ ସ୍ତମ୍ଭେ ଜଳରାଶି
ବିଶ୍ୱଈଶ ବାସ ଜାଣି ଉଜାଣି କି ବିହି
ପ୍ରାକାର ପ୍ରକାରେ ଚକ୍ର ଭ୍ରମେ ନିରନ୍ତର
ପଡ଼ିଲେ ମକ୍ଷିକା ପିଣ୍ଡ ହୁଏ ଶତଖଣ୍ଡ
ତେଣୁ ନୀତି ଧର୍ମେ ନିତି ଚଳେ ପୁରବାସୀ
ଦୁଷ୍କର୍ମ ଦୁରାଚାରର ନାମ ତହିଁ ନାହିଁ
ଜରା ମୃତ୍ୟୁହୀନ ସର୍ବେ ମହାବୀର୍ଯ୍ୟବନ୍ତ
ଯାପନ୍ତି ଦିବାଯାମିନୀ ଆନନ୍ଦ ଉତ୍ସବେ
ଯହିଁ ନିଜେ ବିଜେ ଚକ୍ରଧର ହଳଧର
ତହିଁକି ସମ୍ଭବେ ବିଘ୍ନ ବିପଦ ଜନଙ୍କ
ସତେ ବସନ୍ତ ତହିଁ କରଇ ନିବାସ
ତରୁ ଲତା ଫୁଲ ଫଳେ ସତତ ଶୋଭିତ
ଅବ୍ଧିତରଙ୍ଗ ସଂଭୂତ ଶୀକରନିକର

ବହି, ନିତ୍ୟବହେ ଧୀରସମୀର ସେ ପୁରେ
ଅଷ୍ଟନିଧି ଧରି ବିରାଜନ୍ତି ଯହିଁ ରମା
ସେ ପୁର ଶୋଭା ସମ୍ପଦ ଲକ୍ଷ୍ୟ କାହିଁ ବିଶ୍ୱେ
ମୁକ୍ତିର ଦ୍ୱାରସ୍ୱରୂପ ହେବାରୁ ସେ ପୁର
ଦ୍ୱାରାବତୀ ନାମେ ଖ୍ୟାତି ଲଭଇ ଭୂଲୋକେ
ଲକ୍ଷି ଚକ୍ରଚିହ୍ନ ପାର୍ଥ ରମ୍ୟହର୍ମ୍ୟ ମାଥେ
ଏ କୃଷ୍ଣ ନିବାସ ବୋଲି ଭାଳି ସ୍ୱମାନସେ
ପୁରେ ଯାଇ ଉଭା ହୋଇ ଦିଶୁଥିଲେ ଶୋଭା
ଜନମନ ଲୋଭା କୃଷ୍ଣଗାତ୍ରକାନ୍ତି ବହି
ଚାହିଁ ତାଙ୍କୁ ପଶାରତା ଶକ୍ରାଜିତ ସୁତା
କହିଲେ ଶ୍ରୀକୃଷ୍ଣେ କିପାଁ ଛଳ ବେନିରୂପେ
ଶୁଣି ଅନାନ୍ତେ ସମ୍ମୁଖେ ଦେଖି ଦୁତିକୃଷ୍ଣ
କୃଷ୍ଣ ଉଠି କଲେ ତାଙ୍କୁ କୋଳ ସମ୍ଭାଷଣ
ପୁଛିଲେ ତହୁଁ ଏଭାବେ ସ୍ୱାଗତ ବାରତା
ଅସମୟେ ଆକସ୍ମିକ ଗତି ଲକ୍ଷି ତାଙ୍କ
କୁଶଳ ତ ତୁମ୍ଭବନ୍ଧୁ କୁଟୁମ୍ବ ସମସ୍ତ
ତାସହିତ ଦେଶ ଘୋଷ ଜନ ପ୍ରଜାଦିର
କି କାର୍ଯ୍ୟେ ଆଗତ ଏଥେ ଶ୍ରମେ ବିନା ରଥେ
ମୋ ପ୍ରାଣପ୍ରତିମ ପାର୍ଥ ମହାରଥ କହ
ମାଥେ କରି ଦେଇ ପାର୍ଥ ଭାଷିଲେ ତାଶୁଣି
ଭୋଦେବ ! ସେ ଧର୍ମ ଦେବ ଲୋଡ଼ନ୍ତି ତୁମ୍ଭଙ୍କୁ
ପିତାଙ୍କ ଦୁର୍ଦ୍ଦଶା ଦିନେ ନାରଦ ଭାଷନ୍ତେ
ସେଦିନୁ ସେ ଦୀନଭାବେ ରହନ୍ତି ଭୋସ୍ୱାମୀ !
ଅଶନ ବସନ ବାସ ବିଷବତ ମଣି
ଧରଣୀରେ ଗଡ଼ନ୍ତି ସେ ଗୁଣି ପିତାକଷ୍ଟ
ଚାଲ ନାଥ ବିଳମ୍ବ ନ କରି ମୋର ସାଥ
ସାର୍ଥ କର ପାଣ୍ଡବ ସପକ୍ଷ ବାନାଗୋଟି
ଶୁଣି ପାର୍ଥ ଆର୍ତ୍ତବାଣୀ ପ୍ରଭୁଚକ୍ରପାଣି
ପାର୍ଥ ସହ ଭୋଜନାନ୍ତେ ଚିନ୍ତି ଖଗକାନ୍ତ

ତା ଗରିଷ୍ଠ ପୃଷ୍ଠେ ଦୁହେଁ ଉପବିଷ୍ଟ ହୋଇ
ହସ୍ତିନା ନଗରେ ବେଗେ ଯାଇ ପ୍ରବେଶିଲେ
ଦେଖି ଧର୍ମରାଜେ ଖଗରାଜ ପୃଷ୍ଠ ବର୍ଜି
ବେନି କୃଷ୍ଣ ଯାଇ ପଦ ବନ୍ଦୁ ତାହାଙ୍କର
ହୃଷ୍ଟହୋଇ କୃଷ୍ଣପୃଷ୍ଠ ସମାର୍ଜି ନରେଶ
ଆଶିଷିଲେ ତହୁଁ ବେନି ଶିରେ କରସ୍ପର୍ଶି
ଭାଷିଲେ ହେ ଦୀନବନ୍ଧୋ ! ଦୀନ ଆର୍ତ୍ତହରା
ଏ ଦୀନର ନିବେଦନ ଘେନି ଦିବ୍ୟଚିତ୍ତେ
ଯା ପାଇଁ ଆତୁର ମୁଁ ତା ପ୍ରତୀକାର କର
ପତିତପାବନ ବାନା ବହତ ସ୍ୱଭାବେ
ଇଷ୍ଟ ଗୁରୁ ପିତୃମୋର ପିତୃପତି ପୁରେ
ଲଭୁଛନ୍ତି କଷ୍ଟ ନଷ୍ଟକର ସେ ଦୁରିତ
ଧିକ ଏ ଜୀବନେ ଧନେ ରାଜ୍ୟ ଭୋଗେ ମୋର
ଶୁଣି ଧର୍ମଦେବ ଖେଦବାଣୀ ଦେବଦେବ
ସ୍ମରନ୍ତେ ନାରଦ ଆସି ଦେଲେ ଦରଶନ
ପଦବନ୍ଦି ଭକ୍ତିବଶେ ଆସନେ ବସାଇ
ପୁଚ୍ଛିଲେ ଋଷିଙ୍କୁ କୃଷ୍ଣ ମୃଦୁମନ୍ଦେ ହସି
କହହେ କିରୂପେ ପାଣ୍ଡୁ ପାପୁ ହେବେ ମୁକ୍ତ
ତା ଶୁଣି କହନ୍ତି ବିଧି ବିଧିଜ୍ଞ ବିଧିଜ
ରାଜସୂୟ ଯଜ୍ଞେ ଦୋଷ ନାଶିବ ତାଙ୍କର
ରାଜସୂୟ ବିଧି ପୁଣ ପୁଚ୍ଛନ୍ତେ ରାଜନ
କହି ଆରମ୍ଭିଲେ ଋଷି ଭାବି ଏହିଭାବେ
ବହୁବ୍ୟୟ ରାଜସୂୟ ଯଜ୍ଞର ବିଧାନ
କହୁଛି ଶୁଣ ରାଜନ ଶ୍ରବଣ ନିବେଶି
ସୈନ୍ୟ ଆଦି କରି ପୂର୍ଣ୍ଣ ଲକ୍ଷେ ରାଜା ବରି
ଷୋଡ଼ଶ ଦିବସାବଧି ଯଜ୍ଞବିଧି ମତେ
ନବ ନବ ଖାଦ୍ୟପାନ ବସନ ଭୂଷଣ
ସୁଗନ୍ଧ ତୈଳ ତାମ୍ବୁଳ ବୀଜନ ପନୀର
ଦଣ୍ଡ ଛତ୍ର ସ୍ରକ୍ ଚନ୍ଦନ କର୍ପୂର କୁଙ୍କୁମ

ନିତିପ୍ରତି ନିଯୋଜିବ ଇଚ୍ଛିବେ ଯେ ଯାହା
ରହିବା ବସିବା ପୁଣି ଖାଇବା ଶୋଇବା
ପାଇଁ, ସ୍ଥାନ ନିଯୋଜିବ ଭିନ୍ନ ଭିନ୍ନ ଭାବେ
ଖରଉଷ୍ଟ ଗଜବାଜୀ ମେଷ ବୃଷ ଆଦି
ସମସ୍ତଙ୍କୁ ପୂର୍ଣ୍ଣଗ୍ରାସେ ଦେବ ଖାଦ୍ୟପାନ
ଏବାହାରେ ଋଷି ବିପ୍ର ଜପୀତପୀ ଯତି
ସନ୍ନ୍ୟାସୀ ବୈଷ୍ଣବ ପୁଣି ଅତିଥି ଭିକ୍ଷାଶୀ
ସ୍ୱଦେଶୀ ବିଦେଶୀ ପୁଣି ଘୋଷ ଗ୍ରାମବାସୀ
ଦୂତ ଭୃତ୍ୟ ମ୍ଳେଚ୍ଛ ଶ୍ୱାନ ଚାଣ୍ଡାଳ ବାୟସ
ଏମାନଙ୍କୁ ବହୁ ପରିମାଣରେ ଅଣାଇ
ସନ୍ତୋଷିବ ତାଙ୍କ ଇଚ୍ଛାମତେ ଦେଇ ଖାଦ୍ୟ
କ୍ଷୁଧାର୍ତ୍ତ ତୃଷାର୍ତ୍ତ ହୋଇ ଜନଜନ୍ତୁ କେହି
ନ ରହିବେ ପୂର୍ଣ୍ଣ ଷୋଳଦିନ ଘରିଯନ୍ତେ
ଷୋଡ଼ଶ ବାସର ପୁଣି ଋଷି ବିପ୍ର ଘେନି
ହୋମେ ହବି ଭାଗି ଦେବ ଦେବଙ୍କୁ ସର୍ବଦା
ଏହି ଭାବେ ଯେବେ କରିପାର ରାଜସୂୟ
ତେବେଁ ପିତା ବ୍ରହ୍ମହତ୍ୟା ପାତକୁ ତରିବେ
ଶୁଣି ନୃପମ୍ଣି ଗୁଣି ନିଜର ଅବସ୍ଥା
ପୁଣି ନିଜର ଐଶ୍ୱର୍ଯ୍ୟ ବୀର୍ଯ୍ୟର ବିଷୟ
ବଦନେ ବିଷାଦ ଭରି ଧରି ହୃଦେ ଖେଦ
ଭାଷିଲେ ନୈରାଶ୍ୟେ ଶକ୍ତି ନାହିଁ ମୋ ସେଥିରେ
ମନ କଲେ ହେଲେ ନିକି ବାମନ ସ୍ୱହସ୍ତେ
ସ୍ପର୍ଶିବା ଚନ୍ଦ୍ରମା କେବେ ବୃଥା ତା ପ୍ରୟାସ
ବ୍ୟାଧ ଶଧ କଲେ ହେଲେ ଶଶକ ବିଷାଣ
କଷଣ ମାତ୍ର ତା'ସାର ଲଭଇକି କେବେ
ଆକାଶ କୁସୁମ ବୋଲି ବୋଲନ୍ତି ଜଗତେ
ହସ୍ତଗତେ ଆସିଛକି କେବେ ବା କାହାର
ନୋହିବ ମୋ ହସ୍ତେ ବହୁବ୍ୟୟ ରାଜସୂୟ
ଗମିବି ମୁଁ ତୀର୍ଥେ ପିତା ପାପକ୍ଷୟ ଅର୍ଥେ

ତଥାପି ନୋହିବ ଯେବେ ସେଥିରେ ସୁଫଳ
ଜୀବନ ବର୍ଜିବି ଯାଇ ଗଙ୍ଗାର ସଙ୍ଗମେ
ନାହିଁ ଧନ ଜନ ମୋର ଯଜ୍ଞର ସାଧନେ
ସାମାନ୍ୟ ନୁହେତ ପୁଣି ତାର ଆୟୋଜନ
ଯୁଧିଷ୍ଠିର ଖେଦବାଣୀ ଶୁଣି ଋଷିମଣି
ପ୍ରବୋଧି ଭାଷିଲେ ତାଙ୍କୁ ସଧୀରେ ଏରୂପେ
ଯାହାକୁ ଶ୍ରୀକୃଷ୍ଣ ସାହା ଏହା କେତେ ମାତ୍ର
ନୁହ ଆତୁର ତାହା ନିଯୋଜିବେ ଆଣି
ତାହା ଶୁଣି ଚକ୍ରପାଣି କହିଲେ ହେ ଦେବ !
ସଙ୍ଗେ ଚାରି ଭ୍ରତା ଥାଇଁ ବୃଥାବ୍ୟଥା କିପାଁ
ଏକେ ଏକେ ପୃଥ୍ୱୀଜୟ କରଣେ ସାମର୍ଥ୍ୟ
ବହନ୍ତି ଭୀମଅର୍ଜୁନ ନକୁଳ ମାଦ୍ରିଜ
ଅଣାଇବା ଧନ ଜନ ଚାରି ଦିଗେ ପେଷି
ନିୟୋଜିବି ମୁଁ ସେ ସର୍ବ ତେଜ ଚିନ୍ତୁଁଚିନ୍ତା
ଶୁଣି ଯୁଧିଷ୍ଠିର ହର୍ଷ ବିସ୍ମୟ ମାନସେ
ମଉଳ ଭଜିଲେ କୃଷ୍ଣ ମନୋଭାବ ଭାବି
ନାରଦେ କହିଲେ ତହୁଁ ଆହେ ଚକ୍ରପାଣି !
ଜିଣି ଆଣି ରଖିଅଛି ଜରାସନ୍ଧବୀର
ଷଣ୍ଣବତି ସହସ୍ର ନରେଶ ବଳି ପାଇଁ
ପରଶ୍ୱ ନାଶିବ ତାଙ୍କୁ ପୂର୍ଣ୍ଣହୁତି ବେଳେ
କରଇ ସେ ନୃପମେଧ ଯଜ୍ଞ ବିଧିମତେ
ଇନ୍ଦ୍ର ହେବ ବୋଲି ସ୍ୱର୍ଗେ ଗର୍ବ ପରକାଶି
ତାକୁ ମାରି ପାରିଲେ ସୁଲଭେ ରାଜାବ୍ରଜ
ଲଭନ୍ତା ନା ବିଦାରଣେ ମରଣୁ ଉଦ୍ଧାରେ
ଯୁଧିଷ୍ଠିର ଶୁଣି ତହିଁ ନାରଦଙ୍କ ବାଣୀ
କହିଲେ ହେ ହରି ! ସେତ ତୁମ୍ଭର ବଇରୀ
ଅଷ୍ଟାଦଶ ବାର ଯୁଦ୍ଧ କରି ହାରି ତାକୁ
ରହିଛ ଦ୍ୱାରକାପୁରେ ଡରି ବାରି ମଧ୍ୟେ
ତୁମ୍ଭେ ତେବେ କି ସାହସେ ବିନାଶ ସକାଶେ

ଯିବ ତା ଆବାସେ ଭାଷ ସଂଶୟ ମୋ ଚିତ୍ତେ
ହସି ଯଦୁବଂଶନାଥ ଭାଷିଲେ ଭୋ ଦେବ !
ତବକାର୍ଯ୍ୟ ଯୋଗୁଁ ତାକୁ ରଖିଛି ନ ଜାଣି
ଏକସ୍ଥାନେ ଷଣ୍ଣବତି ସହସ୍ର ନରେଶ
ମିଳନ୍ତେ କି ତାକୁ ଅନ୍ତ କରିଥାନ୍ତି ଯେବେ
ଭୀମ ହାତେ ହତ ହେବ ଏକଥା ନିଶ୍ଚିତ
କହିଛନ୍ତି ଶିବପୂର୍ବେ ଶିବଗିରି ବାସେ
ଏତେ କହି ଭୀମାର୍ଜୁନ ଘେନି ସ୍ୱସଙ୍ଗତେ
ବାହାରନ୍ତେ ହୃଷୀକେଶ ହର୍ଷିତ ଅନ୍ତରେ
ତାଚାହିଁ ପୁଚ୍ଛିଲେ ସହଦେବେ ଧର୍ମଦେବ
ଭାଷି ସଂଶୟ ମୋ ନାଶ କୃଷ୍ଣଙ୍କ ଉକ୍ତିର
ସ୍ୱକର ନିରେଖି ତହୁଁ ଜାଣି ମନ୍ତ୍ରିମଣି
ଭାଷିଲେ ଭୋ ଦେବ ! ସତ୍ୟ ହୃଷୀକେଶଭାଷ
ତେଣୁ ଆନନ୍ଦ ଗଦ୍ଗଦ ହୃଦେ ଧର୍ମଦେବ
ବାସୁଦେବେ ଲକ୍ଷି ବିବକ୍ଷିଲେ ଏହି ଭାବେ
ହେ କୃଷ୍ଣ ପାଣ୍ଡବଗତି ଅଗତିର ନାଥ !
ଗତି କର ସର୍ବ ଶୁଭେ ସର୍ବ ହୃଦେ ଚିନ୍ତି
ଜୟଲଭି ବାହୁଡ଼ା ବିଜୟ କରି ଜବେ
ଫେଡ଼ ମୋର ଆର୍ତ୍ତି ଆହେ ଆର୍ତ୍ତତ୍ରାଣ ହରି !
କହିଲେ କୃଷ୍ଣତା ଶୁଣି ଯୋଡ଼ିବେନି ପାଣି
ଭୋ ଦେବ ! ତବ କଲ୍ୟାଣ ହେଉ ଫଳବାନ
ତଦୁତାରେ ସଜ ହୋଇ ସୁଖେ ତିନିଜଣ
ଗମିଲେ ମଗଧ ଅଭିମୁଖେ ପଦବ୍ରଜେ
ଦେଖ ଉପଦ୍ରବ ଆଶେ ଗମନ୍ତି ରଭସେ
କିବା ଭାନୁଜ ସ୍ୱର୍ଭାନୁ କ୍ଷିତିଜ ଏକତ୍ରେ
ଦେବର୍ଷି ନାରଦ ସହ ଆଦ୍ୟେ ସେ ରୋଚିସ
ଆସି ରହିଥିଲେ ତେଣେ ଗିରିବ୍ରଜ ପୁରେ
ଚନ୍ଦ୍ରଚୂଡ଼ ଗିରିଝର ଦେବୀଧାରା ତଟେ
ଯେଠାରୁ ନିକଟ ଅଟେ ଭଇରବୀ କୁଣ୍ଡ

ପ୍ରତ୍ୟର୍ପି ଦେବୀଙ୍କି ମଣି ଛୁରୀ ଦେବଦେହ
ଅବଗାହି ଅହରହ ସମାଧି ସାଗରେ
ନୃପମେଧ ଯଜ୍ଞହୋମ ନବମ ଦିବସେ
ରଭସେ ପ୍ରବେଶ ଆସି ଜରାସନ୍ଧଗୃହେ
ବୋଲି ହୋଇ କାଳୀଦତ୍ତ ମହେଶ ବିଭୂତି
ଆବର ନୟନେ ରଞ୍ଜି ଅଞ୍ଜନ ତାଙ୍କର
ଦିଶୁଛନ୍ତି ଅଭିନବ କାମଦେବ ସମ
ବିକାଶୁଛି ଦେହ ପ୍ରଭା ବହ୍ନି ଆଭା ନିଭା
ଦେଖି ନରନାରୀ ତାଙ୍କ ଅପରୂପ ରୂପ
ଚିତ୍ରରୂପ ରୂପେ ତାଙ୍କୁ ଅନାଇଲେ ଚିତ୍ରେ
ନାରଦ କଥିତ ମତେ ଯାଇ ଯଜ୍ଞ ସ୍ଥାନେ
ବେଦନାଦେ ମୁଗ୍ଧ କରି ଜରାସନ୍ଧହୃଦ
ସତ୍ୟ କରାଇ ଯାଚିଲେ ଯାଚକ ସଂଜାତ
ବିଶ୍ୱଜୟୀ ଖଡ୍ଗ କାଳଜୟୀ ବ୍ରହ୍ମପାଶ
ଅଜ୍ଞାତ ଏ ଅସ୍ତ୍ରେ ଶସ୍ତ୍ରେ ଜ୍ଞାତ ହୋଇ କେହ୍ନେ
ମାଗିଲେ ବ୍ରହ୍ମର୍ଷି ବୋଲି ଭାଳି ଜରା ହୃଦେ
ନିଜ ଭାଲ ନିନ୍ଦି ମନୋଦୁଃଖେ ଶୁଷ୍କମୁଖେ
ଦାନଦେଲେ ତାଙ୍କୁ ଆନ ନ କରି ବଚନ
ଦେବୀ ଖଡ୍ଗ ପାଶ ଋଷି ଜରା ପାଶୁଁ ଆଣି
ଆଣିହୀନ କଲେ ମଣିହରା ଫଣୀ ପରା
ଦେବୀବାକ୍ୟ ଗୁଣି ତେଣୁ ଜରା ବୀରମଣି
ବଳହୀନ ହେଲେ ଦିନୁଦିନ ଚିନ୍ତାବହି
ପ୍ରିୟବସ୍ତୁ ନଷ୍ଟ ହେଲେ ହୁଏ ଯେଉଁ କଷ୍ଟ
ନ ସହିଲେ ମହାନିଷ୍ଟ ହୁଅଇ ନିକଟେ

ଇତିଶ୍ରୀ ଜରାସନ୍ଧବଧ କାବ୍ୟେ ଭୀମାର୍ଜ୍ଜୁନ ସହ କୃଷ୍ଣମଗଧ ଗମନୋଦ୍ୟମ ବର୍ଣ୍ଣନେ
ନାମ ତ୍ରୟୋଦଶଃ ସର୍ଗଃ ।

---

## ଚତୁର୍ଦ୍ଦଶ ସର୍ଗ

ଏଥୁଅନ୍ତେ କୃଷ୍ଣ ଭୀମ ଅର୍ଜୁନ ବେନିଙ୍କି
ଘେନି ବିଜେ କଲେ ସୁଖେ ପଶ୍ଚିମାଭିମୁଖେ,
କାଶୀଦେଶେ ପରବେଶି ସେବୁଁ କାଶୀବାସୀ
ସନ୍ତୋଷ ବହି ସେ ପ୍ରକାଶିଲେ ନିଜ ବେଶେ
ବିଭାଷିଲେ ମୃଦୁମନ୍ଦେ ହସି ତହୁଁ କୃଷ୍ଣେ,
କି ଭାବି ହେ ଭାବଗ୍ରାହୀ ! ସ୍ୱାଗତ ଏ ସ୍ଥାନେ
କେଉଁ କାର୍ଯ୍ୟ କରି ଧାର୍ଯ୍ୟ ଗୁରୁତର ଭାବେ
ଆସିଅଛ ତେଣୁ ଏଥେ ଭୀମାର୍ଜୁନ ସାଥେ
ତାହାକହି ଅନୁଗ୍ରହେ ଫେଡ଼ ମୋ ସନ୍ଦେହ
ନୀଳ ନୀରଦନିନ୍ଦିତ ବିଗ୍ରହ-ଗ୍ରାହକ !;
ଶୁଣି କୃଷ୍ଣ ସଦାନନ୍ଦ ପଦ ମହାନନ୍ଦେ
ବନ୍ଦି ଭାଷିଲେ, ହେ ନାଥ ! ମନ୍ଦ ଜରାସନ୍ଧ
ରଣେ ଜିଣିଆଣି ରାଜାବୃନ୍ଦେ ବନ୍ଦିକରି
ରଖିଅଛି କାରାବାସେ ବଳି ଦେବା ଆଶେ
ପରଶ୍ୱ ନାଶିବ ତାଙ୍କୁ ପୂର୍ଣ୍ଣାହୁତି କାଳେ
ଅରାଜକ ହେବ ଧରା ରାଜନ ବିହୀନେ
ତେଣୁ ତାକୁ ବଧିବାକୁ ମନେ ବହି ଶ୍ରଦ୍ଧା
ଭୀମାର୍ଜୁନ ବେନି ଘେନି ଆସିଛି ଗୋସାଇଁ !
ଶିବଗିରି ବାସ କାଳେ ଦେଇଛ ଆଦେଶ
ଭୀମ ହାତେ ହତ ହେବ ବୋଲି ଜରାବୀର
ହେ ଚନ୍ଦ୍ରମଉଳି ! ଭୋଳି ସେ ଅଜ୍ଞା ତବ
ଜଣାଇବା କାରଣେ ଅଇଲୁଁ ତିନିଜଣ
କରକୃପା କୃପା ଅକୂପାର ସଦାଶିବ !
ଜରା ମାରି ଭୀମ ହରୁ ପୃଥ୍ୱୀଭାରାଭର;
ଶୁଣି ମହେଶ ସନ୍ତୋଷେ ସ୍ୱଅଙ୍ଗ ବିଭୂତି
ବିଲେପିଲେ ଭୀମ ଅଙ୍ଗେ ବଜ୍ରାଙ୍ଗ କରଣେ

ଆଦେଶିଲେ ଭୁଜ ବଳେ ବେନିଫାଳ କରି
ଚିରି ମାରିବୁ ଜରାକୁ ରଖି ଥାଅ ମନେ
ନତୁବା ସେ ଜଳେ ସ୍ଥଳେ ଅନଳେ ଅନିଳେ
ଅସ୍ତ୍ରେ ଶସ୍ତ୍ରେ ନଖେ ଦନ୍ତେ ବଧ ନୁହେ କାହିଁ
ଏତେ ଭାଷି କାଶୀବାସୀ ହେଉଁ ଅନ୍ତର୍ହିତ
ପ୍ରତ୍ୟାଗତ ହେଲେ ତହୁଁ ତିନିହେଁ ତ୍ୱରିତେ
ମାର୍ଗେ ନିରାକଳୁ ବନ ଜିଣି ନିରାକୁଳେ
ପ୍ରବେଶିଲେ ପଦ୍ମଦଳ ଦେଶେ ବେଗେ ଯାଇ,
ତହିଁ ମହାରାଜା ପଦ୍ମକେଶରିଙ୍କି ଜିଣି
ନେଇଅଛି ଜରାସନ୍ଧ ବାନ୍ଧି ରଣଦ୍ୱନ୍ଦ୍ୱେ
ତେଣୁ ରାଜ୍ୟପ୍ରଜା ଦୁଃଖୀ ରାଜାଗୁଣଗୁଣି
ତାହା ଜାଣି ତିନିଜଣ ଗମିଲେ ଅଗ୍ରତେ,
ମାନଭଙ୍ଗ ରାଜ୍ୟେ ଯାଇ ବିରାଜନ୍ତେ ଜବେ
ସେ ରାଜ୍ୟେ ଶୁଣିଲେ ମାନାର୍ଜୁନ ବନ୍ଦୀବାଣୀ,
ତହୁଁ ଗତିବଶେ ଯାଇ ନିରସ୍ତ ପ୍ରଦେଶେ
ପ୍ରବେଶିଲେ ତିନିଜଣ କେତେ କ୍ଷଣ ପରେ
ସେ ଧରାଧବ ମାଧବସେନେ ବନ୍ଦୀ କରି
ନେଇ ରଖିଅଛି ଜରା ନିଜ କାରାପୁରେ,
ତାହା ଶୁଣି ପୁଣି ଅଗ୍ରେ ଚଳିଯାଉଁ ବ୍ୟଗ୍ରେ
ଦିନ ଅର୍ଦ୍ଧମାନେ ହରୋଦ୍ୟାନେ ହେଲେ ଯାଇ
ତହିଁ ବିରାଜଇ ରାଜା ଭୀମ ଚକ୍ରବର୍ତ୍ତୀ
ଜରାସନ୍ଧ ଦ୍ୱନ୍ଦ୍ୱି ତାକୁ ନେଇଅଛି ବାନ୍ଧି
ରୋଦୁଛନ୍ତି ରାଜ୍ୟବାସୀ ରାଜାଗୁଣ ଘୋଷି
ଏକସ୍ଥାନେ ବସି ସର୍ବେ ବିରସ ମାନସେ,
ରୋଦନକାରଣ ତାଙ୍କୁ ପୁଛୁଁ ନାରାୟଣ
ପ୍ରଜାଏ ଭାଷିଲେ ଏହିଭାବେ ଭାଷାରାଶି,
ଆହେ ଦେବ କି କହିବୁଁ ବଡ଼ ଅସମ୍ଭବ
ମଗଧ ଅଧିପ ଜରାସନ୍ଧ ଶୌର୍ଯ୍ୟ ବୀର୍ଯ୍ୟ

ରାଜା ଭୀମଚକ୍ରବର୍ତ୍ତୀ ନୃପତିକେଶରୀ
କେ ସରି ତାହାଙ୍କୁ ରଣେ ଶୂର ବୀର ପଣେ
ତାଙ୍କୁ ବନ୍ଧୁପାଶେ ବାନ୍ଧି ନେଇ ନିଜ ବାସେ
ରଖିଅଛି ବଳି ଦେବା ମାନସେ ଗୋସାଇଁ !
କାଲି ରାତ୍ର ଅର୍ଦ୍ଧେ ହୋତ୍ର ପୂର୍ଣ୍ଣାହୁତି କାଳେ
ନାଶିବ ନରେଶେ ଜରା ବଳେ ବଳି ଦେଇ,
ତାଶୁଣି ଭାଷିଲେ କୃଷ୍ଣ ଭୀମସେନ ପ୍ରତି
ମୃଦୁମନ୍ଦେ ହସି ତାର ପୌରୁଷ ପ୍ରକାଶି
ଧନ୍ୟ ଭୀମ, ଭୀମକର୍ମା ତୋ ଯୋଗୁଁ ରାଜାଙ୍କ
ନଷ୍ଟ ହେବ କଷ୍ଟ, ଧରା ହେବ ଭାରାହରା,
ଧନ୍ୟତୋ ଗର୍ଭଧାରଣୀ, ଧନ୍ୟ ସେ ଧରଣୀ,
ପ୍ରସବି ସୁବୀରପୁତ୍ର ଲଭିବେ କୃତାର୍ଥ;
ଭୀମ ପୁଣ ପୁଚ୍ଛୁଁ ତାଙ୍କୁ ମଗଧ ଦୂରତ୍ୱ
ଉତ୍ତରିଲେ ପଞ୍ଚଦଶ ଯୋଜନ ସେ ଦେଶ,
ତାହା ଶୁଣି ଭୀମପୁଣି କହିଲା ଶ୍ରୀକୃଷ୍ଣେ
ଅଧ୍ୱଶ୍ରମ ହେଲା ସାର ମଗଧତ ଦୂର
କି ରୂପେ ଯିବା ସେ ଦେଶେ ଅବସର କାହିଁ
ଫେରି ଯାଉଁ ହସ୍ତିନାକୁ ଆଉ କେଉଁ କାର୍ଯ୍ୟ
ବୃନ୍ଦାରକ ବୃନ୍ଦବନ୍ଦ୍ୟ ହେ ଜଗଦାନନ୍ଦ !
ନୁହେ ମନ୍ଦଭାଗ୍ୟ ଜରାସନ୍ଧ ଦୁଷ୍ଟନଷ୍ଟ,
ଶୁଣି କୃଷ୍ଣ ତୁଷ୍ଣୀଂଭୂତେ ଚିନ୍ତୁଁ ଖଗେଶ୍ୱରେ
ଦ୍ରୁତେ ଆସି ଉପଗତ ହେଲା ସେ ଅଗ୍ରତେ
ପଦବନ୍ଦି ମହାନନ୍ଦେ ଭାଷିଲା ଭୋ ଦେବ !
କି ଅନୁଜ୍ଞା ତବ ଭାଗ, ପାଳିବି ରଭସେ,
ଆଦେଶିଲେ କୃଷ୍ଣ ତାକୁ ହେ ବିନତା ସୁତ !
ତିନିଙ୍କୁ ସ୍ୱପୃଷ୍ଠେ ଘେନି ଯାଅ ଜରାରାଷ୍ଟ୍ରେ
ନୃପମେଧେ ଜରାସନ୍ଧ କାଲି ନିଶା ଅର୍ଦ୍ଧେ
ବଧିବ ନିରପରାଧେ ଧରାଧିପ ବୃନ୍ଦ
ତାକୁ ବଧି ଭୀମଯୁଦ୍ଧେ ଭୂପେ ଉଦ୍ଧରିବେ

ବିଳମ୍ବ ନ ସହେ କାର୍ଯ୍ୟ ଆହେ ପକ୍ଷିରାଜ !;
ନାଥ ବାଣୀ ଘେନି ମାଥେ ତହୁଁ ପକ୍ଷିନାଥ
ବସାଇ ସ୍ୱପୃଷ୍ଠେ ହୃଷ୍ଟେ ଉଠିଲା ଗଗନେ
ମଗଧ ସାନ୍ନିଧ୍ୟ ଲଭୁଁ କ୍ଷଣିକର ମଧ୍ୟେ
ନିରୋଧିଲେ କୃଷ୍ଣ ତହୁଁ ବିହଗଅଧିପେ;
ହୋଇଛି ନିଶାର୍ଦ୍ଧକାଳ ନିସ୍ତବ୍ଧ ଜଗତ
ଝିଙ୍କାରୀ ଝଙ୍କାର ମାତ୍ର ଶୁଭୁଅଛି ଦୂରେ
ସାଇଁ ସାଇଁ ରବେ ଧରା ଧରିଛି ସୁତାନ
ବେଳେବେଳେ ଚାଳି ନେତ୍ରୁଁ ଖଦ୍ୟୋତିକା-ଦ୍ୟୁତି
ବିକାଶ ଆକାଶ ସରେ ସରୋଜବରଜ
କୋକନନ୍ଦ ଇନ୍ଦିବର କୁମୁଦ କହ୍ଲାର
ଫିଙ୍ଗିଥିଲା କାମ ବ୍ୟୋମେ ରଜତକଟାରୀ
ବାମାବାମ ବକ୍ଷେ ଲକ୍ଷି ଲକ୍ଷେବାର ମାଜି
ମାତ୍ର ନିରେଖି ସଂଯୋଗ ସୁଯୋଗ ନ ପାଇ
ସଂହରୁ ଖଣ୍ଡ ଚନ୍ଦ୍ରାସ୍ତ୍ର ବ୍ୟାଜେ ନିଜ ଶସ୍ତ୍ର
ଗ୍ରାସିଲା ତମସ ଆସି ବ୍ୟୋମ ଦଶଦିଶ
ନାଶିଲା ତିମିର ରୋଗ ପେଚକ ଲୋଚନୁଁ;
ତା ଚାହିଁ କହିଲେ ଭାବଗ୍ରାହୀ ବେନି ଭ୍ରାତେ
ରହ ଅହଃ ପ୍ରକାଶିବା ଯାଏ ଉର୍ଦ୍ଧ୍ୱଦେଶେ
ଆସଇଁ ମୁଁ ଭୈରବୀଙ୍କି ଶିବବାର୍ତ୍ତା କହି
କି କହନ୍ତି ମହାମାୟା ଜାଣିବା ନା ତାହା,
ଏତେ ଭାଷି ଖଗେଶ୍ୱର ପୃଷ୍ଠୁଁ ଅବତରି
ଦୁର୍ବାସା ପାଦୁକାମନ୍ତ୍ର ସ୍ମରନ୍ତେ ଅନ୍ତରେ
ଦେବୀଙ୍କ ଛାମୁରେ ଯାଇ ହୋଇ ଉପଗତ
ପ୍ରଣିପାତ କଲେ, ପଦେ ମସ୍ତକ ଲଗାଇ
ଭାଷିଲେ, ଗୋ ଶିବପ୍ରିୟେ ! ମହେଶଆଦେଶ
ଶ୍ରୀଚରଣେ ଜଣାଇବା କାରଣେ ଆସିଛି
ନୀଳନୀରଦ ନିନ୍ଦିତ କଳେବର ଚାହିଁ

ଜାଣିଲେ ଭୈରବୀଦେବୀ କୃଷ୍ଣ ଏ ସେ ବୋଲି
ପୂରୁ ମନୋରଥ ତବ ବୋଲି ଭବବାଳୀ
ଶୁଭାଶିଷ ପ୍ରଦାନିଲେ ହୋଇ ହରଷିତା
କହିଲେ ଭୈରବୀ ଆହେ ଦେବ ଦାମୋଦର !
କିବା ଶିବାଦେଶ ଭାଷ ଲଭେ ମୁଁ ସନ୍ତୋଷ;
ଶୁଣି ଯୋଡ଼ି ବେନି ପାଣି ଭାଷିଲେ ଗୋ ମାଏ !
ଶିବାଦେଶେ ଆସିଅଛି ଜରାସନ୍ଧେ ନାଶି
ଘେନି ଭୀମାର୍ଜୁନ ବେନି, ଆଜି ଏରଜନୀ
ଯାପିବୁଁ ଗୋପନେ କାଲି ଆସିବୁଁ ତା ବାସେ
କର କଲ୍ୟାଣ କଲ୍ୟାଣୀ ! କୃପା ପରକାଶି
ଭୀମସେନ ହାତେ ହତ ହେଉ ଜରାସନ୍ଧ
ବଡ଼ ସେ ଦୁର୍ଦ୍ଦାନ୍ତ ମାତଃ ! ଶାକ୍ତ ନାମ ଧରି
ଧରଣୀ କଲାଣି ପ୍ରାଣୀଶୂନ୍ୟ ବଳି ଦେଇ
ବନ୍ଦୀଭାବେ ଆଣିଅଛି ଧରାଧବ ବୃନ୍ଦ
ବଳି ଦେବ କାଲି ନିଶାଅର୍ଦ୍ଧେ ପରା ହାଣି;
ଶୁଣି କହିଲେ ଭୈରବୀ ଆହେ ହୃଷୀକେଶ !
ତୁମ୍ଭର ପ୍ରକାଶ ଧରାଭାରା ନାଶ ଅର୍ଥେ
ପୂର୍ବ ସର୍ବ ଜାଣିଅଛି ସର୍ବପାଶେ ରହି
ଜରା ହତ କରାଇବ ଭୀମ ହାତେ ବୋଲି
ହେଲେହେଁ ଭକ୍ତ ମୋ ଜରାସନ୍ଧ ଶାକ୍ତମଣି
ଧରଣୀ ନ ସହେ ତାର ଦୁରାଚାର ଭାର
ଅଜେୟ ବ୍ରହ୍ମପାଶକୁ ମାଗିବା ସମୟେ
ରୁଷ୍ଟ ହୋଇ ଦୁଷ୍ଟକୁ ମୁଁ ଦେଇଅଛି ଶାପ
ଭୟ ନାହିଁ ଆଉ ତାକୁ ଆହେ ଚକ୍ରଧର
ମୋ ପ୍ରଦତ୍ତ ଖଡ୍ଗ ପାଶ ନାହିଁ ତାହା ହସ୍ତେ
ଆଣିଲେଣି ଭକ୍ତପୁତ୍ର ମୋର ସେ ରୋଚିସ
ଦାନ ମଗା ବ୍ୟାଜେ ହୋମ ନବମ ଦିବସେ
ଗୁପଷ୍ଟ ତ ଆଦ୍ୟ ଗଦା ବରୁଣ ପର୍ବତେ

ପ୍ରକାଶିବ ବଳ କାହା ବଳେ ସେ ଆହବେ
ଶିବାଦେଶ ଲଙ୍ଘିବାକୁ କେବା ତ୍ରିଜଗତେ
ଭୀମ ହାତେ ନିହତ କରାଅ ଜରାବୀର
ଦେବୀ ବାକ୍ୟ ଶୁଣି ତୋଷେ ପ୍ରଭୁ ହୃଷୀକେଶ
ପଦେ ନମି ପ୍ରବେଶିଲେ ଭୀମାର୍ଜୁନ ପାଶେ
ହରଷେ ଦେବୀ ଆଦେଶ ବେନିଙ୍କି ଶୁଣାନ୍ତେ
ଉଷା ପ୍ରବେଶିଲା ବହି ଲୋହିତ ବରନ
ଗଗନେ ତାରକା କୁଳ ଭଜିଲେ ଆକୁଳ
ଶଶିର ବିରହେ ନେତ୍ରୁଁ ମୁଞ୍ଚି ଶିଶିରାଶ୍ରୁ
ବହିଲା ପ୍ରଭାତବାୟୁ ମୃଦୁମନ୍ଦ ଭାବେ
ତାରା ବିରହିଣୀ ଶୋକୋଚ୍ଛ୍ୱାସ କିସେ ଅବା
କୂଜିଲେ ପତତ୍ରୀବୃନ୍ଦ କୋଳାହଳ ନାଦେ
ତାରାବିରହିଣୀଙ୍କ ରୋଦନସ୍ୱନ ପରା
ସଞ୍ଚରିଲେ ଚଞ୍ଚରୀକଯେ ଗୁଣୁ ରୁତେ
ସାନ୍ତ୍ୱନାକାରିଙ୍କ ଶାନ୍ତିବଚନ ସ୍ୱରୂପେ,
ତେଣୁ ସୁରନଦୀତୀରେ ଉତୁରି ତିନିହେଁ
ନିତ୍ୟକର୍ମ ସମାପିଲେ ସ୍ନାନ କରି ନୀରେ
ତହିଁ ଚାହିଁ ମଗଧ ଆଗତ ଦ୍ୱିଜ ବ୍ରଜେ
ପୁଚ୍ଛିଲେ ମଗଧରାଜ ବିଜେ ଆଜ କାହିଁ,
ଭାଷିଲେ ସେ ଯାଗଶାଳେ ରାଜେ ଜରାସନ୍ଧ
ବିନାଶିବ ନିଶାଅର୍ଦ୍ଧେ ଭୂପାଳସକଳ
ପୁଣି କୃଷ୍ଣ, ପୁଣି ପୁଚ୍ଛା କଲେ ସେ ବ୍ରାହ୍ମଣେ
ଯାଗଶାଳେ ଯିବାକୁ ତ ମନାନାହିଁ କିଛି
ବ୍ରାହ୍ମଣେ ଭାଷିଲେ ତୁମ୍ଭେ ଶୁଣ ଦ୍ୱିଜବଂଶୀ
ଜରାର କୁମାର ବସିଅଛି ଆଦ୍ୟ ଦ୍ୱାରେ
ଅସ୍ତ୍ର ଥିଲେ ବିପ୍ର ହେଲେ କରେ ପ୍ରାଣନାଶ
ରାଜାର ବିଶ୍ୱାସୀ ସେତ ମହାବଳବନ୍ତ
ଦ୍ୱିତୀୟ ଦ୍ୱାରେ ହେ ଦ୍ୱିଜ ! ଅଛି ଏକଭେରୀ

ଶତ୍ରୁ ଉପଗତେ ଇଚ୍ଛାମତେ ସେ ରାବଇ
ରାବ ଶୁଣି ଜରାରାଟ ଅସି ଧରି ଆସି
ଶତ୍ରୁବିନାଶଇ ଚାଣ୍ଡେ ତାର ମୁଣ୍ଡ କାଟି
ତୃତୀୟ ଦ୍ୱାରେ ତା ଅଛି ଶିମୁଳୀ ତରୁଏ
ଫୁଲ ଫଳ ଦଳ ହୀନେ ମୃତବତ ହୋଇ
ଅଦ୍ଭୁତ ଏକଥା ଶତ୍ରୁ ଉପଗତ ହେଲେ
ପତ୍ର ପୁଷ୍ପ ଫଳବ୍ରାତ ତକ୍ଷଣି ଜନ୍ମାଏ
ତା ନିରେଖି ଜରାସନ୍ଧ ବୀର ଆସି ଖରେ
ଶତ୍ରୁଶିର କାଟେ ଅସିଚୋଟେ ଆକ୍ଷେ ରୋଷି
ଚତୁର୍ଥ ଦ୍ୱାରେ ତା ଏ ଦୁର୍ଦ୍ଦାନ୍ତ ଗର୍ଦ୍ଦଭ
ରହିଅଛି ବଳିବର୍ଦ୍ଦ କଛ ତାର ବପୁଃ
ଶତ୍ରୁ ଉପଗତ ହେଲେ ଉଚ୍ଚେ ରାବ ଦେଇ
ଆହ୍ୱାନଇ ଜରାବୀରେ ଅରିନାଶ ଅର୍ଥେ
ତାହାଶୁଣି ବୀରମଣି ଖଡ୍ଗଘେନି ହସ୍ତେ
ଆସି ନାଶେ ଶତ୍ରୁଶିର ଖଡ୍ଗାଘାତ କରି
ରୁଦ୍ର ବ୍ରହ୍ମା ଇନ୍ଦ୍ର ଆଦି ହୁଅନ୍ତୁନା କେହି
ଜିଣନ୍ତା ନାହିଁକେ ତାକୁ ହସ୍ତେ ଶସ୍ତ୍ର ଥିଲେ;
ପଥିକ ବିପ୍ରଙ୍କ ମୁଖୁଁ ଏହି କଥା ଶୁଣି
ପକ୍ଷିନାଥେ ଡାକି କୃଷ୍ଣ ଆଦେଶିଲେ ତାକୁ
ଅସ୍ତ୍ର ଶସ୍ତ୍ର ବହି ତୁମ୍ଭେ ରହ ଊର୍ଦ୍ଧ୍ୱଦେଶେ
ସୁଗୋପନ ଭାବେ ଯେହ୍ନେ ନ ଜାଣନ୍ତି କେହି
ଯେବେ ଯାହା ଲୋଡ଼ା ପଡ଼ିବ ହେ ପକ୍ଷିରାଜ !
ମାଗିଲେ ତା ଦେବ ବେଗେ ଗଗନୁଁ ଉତୁରି;
ଏତେ କହି ବିପ୍ରବେଶ ବହି ତିନିଜଣ
ବାହାର ହରଷେ ହର ସ୍ମରି ସ୍ୱମାନସେ
କଟିତଟେ ଅନ୍ତରୀୟ ସ୍କନ୍ଧେ ଉତ୍ତରୀୟ
ଭାଳେ ଊର୍ଦ୍ଧ୍ୱପୁଣ୍ଡ୍ର, ପୃଷ୍ଠେ ବିଲମ୍ବିତ ଚୂଡ଼ା
ହସ୍ତେ କୁଶବଟୁ ତମ୍ବାପାତ୍ରୀ ଅମ୍ବୁପାତ୍ର
କାଖେ ବେଦପୋଥି ସ୍କନ୍ଧ ସୂତ ଯହିଁ ବନ୍ଧ

ତହୁଁ ଜବେ ପଦବ୍ରଜେ ଗିରିବ୍ରଜେ ଯାଇ
ଜରାପୁର 'ଆଦ୍ୟଦ୍ୱାରେ ହେଲେ ବିଦ୍ୟମାନ
ଜରାସନ୍ଧ ନୃପମେଧ ଯଜ୍ଞର ଷୋଡ଼ଶ
ଦିବସ ହୋଇଛି ଆଜ 'ଗିରିବ୍ରଜପୁରେ
ନବବେଶେ ସାଜିଅଙ୍ଗ ଆଜି ପୁରବାସୀ
ଅତିହର୍ଷେ ମାତିଛନ୍ତି ମହାମହୋତ୍ସବେ
ଗନ୍ଧ-ମାଲ୍ୟ ଦୂର୍ବାକ୍ଷତ ସିନ୍ଦୂର -କଜ୍ଜ୍ୱଳ
ବିଲ୍ୱ ଅଳାଦଳ ଧୂପ ଦୀପ ନଇବେଦ୍ୟ
ଆଦି ନାନା ଉପାୟନ ପାତ୍ରହସ୍ତ ହୋଇ
ଆସୁଛନ୍ତି ନରନାରୀ ଯଜ୍ଞ ଦରଶନେ
ଆସୁଛନ୍ତି ଭାର ଭାର ଦଧି ଦୁଗ୍ଧ ଘୃତ
ମଧୁ ମଦ୍ୟ ଶର୍କରାଦି ନାନାବିଧ ଫଳ
କଦଳି କମଳା ଦ୍ରାକ୍ଷା ରସାଳ ପନସ
ନାରୀକେଳ ଇକ୍ଷୁଦଣ୍ଡ ଡାଳିମ୍ବ ଶ୍ରୀଫଳ
ଆସୁଛନ୍ତି ଛାଗ ମେଷ ମହିଷ ପ୍ରଭୃତି
ଦଳଦଳ ଭାବେ ସୁବିଶାଳ ଯାଗଶାଳେ
ନାନାବର୍ଣ୍ଣ ଧ୍ୱଜ ଛତ୍ର ପତାକା ନିକର
ପ୍ରୋଥିତ ପଥର ବେନି ପାର୍ଶ୍ୱେ ଯଥା ଭାବେ
ଫୁଲ ଫଳ ମାଳାମାୟୀ ପଲ୍ଲବ ତୋରଣା
ହୋଇଛି ଲମ୍ବିତ ସ୍ତମ୍ଭସ୍ତୋପ ସ୍କନ୍ଧଦେଶେ
ଉଡୁଛି କେତନ ବାୟୁ ଭରେ ଫରହର
ହେଉଛନ୍ତି ଥରହର ଚାହିଁ ରାଜାବ୍ରଜ
ଫଳବାନ ରମ୍ଭାତରୁ ଜଳପୂର୍ଣ୍ଣ କୁମ୍ଭ
ମହାରମ୍ଭେ ପ୍ରତିଦ୍ୱାରେ ହୋଇଛି ସ୍ଥାପିତ
ସ୍ଥାନେ ସ୍ଥାନେ କୁଞ୍ଜପୁଞ୍ଜ ହୋଇ ବିନିର୍ମିତ
ବସ୍ତ୍ରେ ଶସ୍ତ୍ରେ ସଜ୍ଜୀଭୂତ ହୋଇଛି ଯତନେ,
ସ୍ଥଣ୍ଡିଳ ମଣ୍ଡପ କୁଣ୍ଡ ଭାଣ୍ଡ ସ୍ରୁବ ସ୍ରୁଚ
ରକ୍ତାକ୍ତ ତଣ୍ଡୁଳ ଖଡ୍ଗପାତ୍ର ଅସ୍ତ୍ର ଶସ୍ତ୍ର
ରକ୍ତବସ୍ତ୍ର ରକ୍ତସୂତ୍ର ଖଣ୍ଡେ ମଣ୍ଡିହୋଇ

ରହିଛି ବେଦିକା ମଧ୍ୟେ ସମିଧ ସହିତ,
ମନ୍ତ୍ରନାଦେ ଗହ ଗହ ଧୂପେ ମହ ମହ
ହେଉଅଛି ପୁର ଆଜି ଶୋଭାପୂର ହୋଇ
ଆସିଛନ୍ତି ତନ୍ତ୍ରବିଦ ଋଷି ଦ୍ୱିଜବ୍ରଜ
ଆଚରନ୍ତି ଅଭିଚାର ମତେ ପୂଜା ହୋମ
ବିଶ୍ୱାମିତ୍ର ଭରଦ୍ୱାଜ ସୁଦେବ ସୁମନ୍ତ
ବାମଦେବ ସଦାଶିବ ବାଲ୍ମୀକି କଶ୍ୟପ
ଉଦ୍ଦାଳକ ଉଗ୍ରପାଦ ମାଣ୍ଡୁର ଏ ଆଦି
ନୃପମେଧ ଯଜ୍ଞବିଧି ସାଧନ ସକାଶେ,
ଅବିରତ ରତ ହେଉଁ ଆହୁତି ପ୍ରଦାନେ
ହବିର୍ଗନ୍ଧେ ଆମୋଦିତ ହୁଏ ଦିଗବ୍ରାତ,
ପୁରେ ପରିପୂର୍ଣ୍ଣ ଆଜି ଋଷି ବିପ୍ର ମୁନି
ଭିକ୍ଷୁକ ଅତିଥି ଦୀନ ହୀନ ରଙ୍କଜନ,
ଧନରତ୍ନ ଅନ୍ନ ବସ୍ତ୍ର ଖାଦ୍ୟପେୟ ଆଦି
ଯେ ଯାହା ଇଚ୍ଛନ୍ତି ପାଉଛନ୍ତି ଅବିରତ,
ଚଣ୍ଡୀ ଦେବୀ ପୁରାଣାଦି ହେଉଛି ପାଠିତ
ବ୍ରାହ୍ମଣ ଅତିଥି ଭୋଜି ଲାଗିଅଛି କାହିଁ,
ହରଷ ଆସିଛି ଆଜ ଜରାସନ୍ଧ ପୁରେ
ବୈରସ୍ୟ ପଶିଛି ଯାଇ ଦୂରେ କାରାବାସେ
ଯଥା ଆଦିତ୍ୟ ଉଦୟେ ଆଲୋକ ଅନ୍ଧାର,
ଅଷ୍ଟାଦଶ ବାର ଯୁଦ୍ଧେ ଯେଉଁ ରାଜାବ୍ରଜ
ଦୁଃଖକୁ ସ୍ୱସୁଖ ମଣି ମାତି ଘୋର ରଣେ
ମନଃ ପ୍ରାଣ ସମର୍ପଣ କରିଥିଲେ, ପୂର୍ବେ
ଆଜି ସେ ନିଗଡ଼ବନ୍ଧେ ରୁଦ୍ଧ କାରାପୁରେ,
କୂର୍ମର ଅବଳେ ବନ୍ଦୀ ହୋଇ ବଳିରୂପେ
ସଂସ୍ଥିତ ବ୍ୟଥିତ ଭାବେ ଦୁଷ୍ଟ ଜରାରାଷ୍ଟ୍ରେ,
ଅତଃ ଦୁଷ୍ଟସଙ୍ଗ ସ୍ୱତଃ ମହାଭୟଙ୍କର
ଜାଣ ହେ ସୁଜାଣ ନର ନିକର ଏ ଭବେ;
ତାହିଁ ସହଦେବେ ଦେବ ବେଦ ଉଚ୍ଚାରନ୍ତେ

ଗହ ଗହ ନାଦେ ପୁର-ଉର ପୂରିଗଲା
ତାଶୁଣି ବିଚିତ୍ରମଣି ଜରାପୁତ୍ରମଣି
ଚିତ୍ତବୃତ୍ତି ହଜାଇଲା ମଜାଇ ମର୍ମାକୁ
ଝଟିତିରେ ଉଠି ନମି ପାଛୋଟି ତିନିଙ୍କି
ନେଇ ପୀଠପୃଷ୍ଠେ ଉପବିଷ୍ଟ କରାଇଲା
ତହୁଁ କୃଷ୍ଣ ଆଶିଷିଲେ ଶିରେ କରସ୍ପର୍ଶି
"ରାଜ୍ୟେ ରାଜା ପୁଅ ଯୁବରାଜ" ଭାଷି-ବ୍ୟାଜେ
ଅର୍ଘ୍ୟ ଆଣି ପୂଜାକରି ଦ୍ୱିଜତ୍ରୟେ ପୁଣି
ଭାଷିଲା ଏ ଭାଷାରାଶି ଆଣି କି ବରଜି
ହେ ବ୍ରହ୍ମନିଷ୍ଠ ବ୍ରାହ୍ମଣେ ଆଜି ଯାଏ ମୁହିଁ
ଦେଖିନାହିଁ ତୁମ୍ଭପରି ତେଜସ୍କର ଦ୍ୱିଜ
ଲକ୍ଷ ଲକ୍ଷ ସଂଖ୍ୟା ଦ୍ୱିଜ ଆସିଲେଣି ଏଥେ
ଫେରିଲେଣି ସାର୍ଥ ମନୋରଥେ ଦାନଘେନି
ପଞ୍ଚଦଶ ଦିନ ଶେଷ ହେଲା ଜଗିବସି
ନଦେଖିଲି କାହିଁ ତବ ତୁଲ୍ୟ ବେଦବେତ୍ତା
କି ଯୋଗେ ମୋ ପିତା ଶୁଭ ଯାଗ ଉଦଯୋଗି
ଭାଗ୍ୟ ଯୋଗ୍ୟ ତିନି ବିପ୍ର ଲଭିଲେ ଗୋସାଇଁ !
ଅତୀତ ହେଲାଣି ଦାନକାଳ ଏତେବେଳେ
ରହ ଏହି ସ୍ଥାନେ ବିପ୍ରେ ! ବାସ ଗ୍ରାସ ପାଇ
ତିନିଙ୍କୁ ଘେନି ମୋ ସାଥେ କାଲିର ପ୍ରଭାତେ
ଭେଟାଇବି ଆକଟେ ମୁଁ ରାଜାଙ୍କ ନିକଟେ
ଅନ୍ନ ବସ୍ତ୍ର କଷ୍ଟ ତୁମ୍ଭ ନଷ୍ଟ କରାଇବି
ଦିଆଇ ପ୍ରଭୂତ ଅର୍ଥ ମନୋରଥ ମତେ
ବହୁପଥ ଅତିକ୍ରମି ଆସିଅଛ ଏଥେ
ବୁଭୁକ୍ଷିତ ଥିବାପରି ଦିଶୁଛ ତ ପୁଣି
ଭାଷିଲେ ତା ବାଣୀ ଶୁଣି ଦେବରାଜ ବ୍ୟାଜେ
ଆହେ ଯୁବରାଜ ! ତୁମ୍ଭେ ବିବେକୀ ଧାର୍ମିକ
ବିଚକ୍ଷଣୀ ବ୍ରାହ୍ମଣ ଆମ୍ଭେ ବହୁଦୂରୁ ଆସି

ମନାସିଛୁଁ ସମ୍ରାଟଙ୍କ ସଙ୍ଗେ ହେବୁଁ ଭେଟ
ତା ନୋହିବା ଯାଏ କେବେ ଅନ୍ନଜଳ ସ୍ପର୍ଶ
ନ କରିବୁଁ ପରାମର୍ଶ କରିଛୁଁ ତିନିହେଁ
ଆମ୍ଭେ ଉପବାସେ ଅଛୁଁ ଯଥାର୍ଥ ଏକଥା
ତା ପାଇଁ ତୁମ୍ଭଙ୍କୁ କିପାଁ ବ୍ୟଥା ନୋହୁଥିବ
ବିପ୍ର ଅତିଥିଙ୍କ ଉପବାସ କଲା ଦୋଷ
ସର୍ବଥା ଘେନଇ ଗୃହୀ କଥା ନୁହେ ମିଥ୍ୟା
ତେଣୁ ହେ କୁମାରମଣି ! ଦ୍ୱାର ଛାଡ଼ି ଦେଇ
ଭିତର ପୁରେ ଯିବଙ୍କୁ ଆଦେଶ ସହର
ଏତେ ଭାଷି ସଓଁକାରେ କଲୁ ବେଦଧ୍ୱନି
କମ୍ପିଲା ଅବନୀ ଚମକିଲା ତାର ହୃଦ
ତେଣୁ ସେ କାତରେ ଉତ୍ତରିଲା ଆହେ ବିପ୍ର !
ସ୍ତମ୍ଭ ତୁମ୍ଭ ବେଦନାଦ କମ୍ପେ ମୋ ହୃଦୟ
ରାଜାଦେଶ ପ୍ରକାଶିବା ସକାଶେ ମୋ ଭୟ
ହେ ଅଭୟଦାତା ତୁମ୍ଭ ପାଶେ କି କହିବି
ଶୁଣି ଶ୍ରୀକୃଷ୍ଣ ଭାଷିଲେ ହେ କୁମାରମଣି !
ଭୀତ ନୋହି ରାଜାଦେଶ ପାଳିବା ଉଚିତ
ଆମ୍ଭେ ବିଦେଶୀ ବ୍ରାହ୍ମଣ ନୋହୁଁ କାହିଁ ଦୋଷୀ
ବୋଲି ବସ୍ତ୍ର ଝାଡ଼ିଝୁଡ଼ି ଦେଲେ ତିନିଜଣ
ପ୍ରତ୍ୟୟ ପାଇ ସେ ରାଜତନୟ ସତ୍ୱର
ପଶିବା ସକାଶେ ପୁରେ ତାଙ୍କୁ ଆଦେଶିଲା,
ପୁରେ ପଶି ଯାଉଁ କେତେ ଦୂରେ ହୃଷୀକେଶ
ଭାଷିଲେ ଭୀମଅର୍ଜୁନେ ଏବଚନ ରାଶି
ଆବର ରହିଲା ତିନିଦ୍ୱାର ପାର ପାଇଁ
ଯହିଁ ନିବସନ୍ତି ଭେରୀ ଶାଳ୍ମଳୀ ରାସଭ
ବିପଦ ଆସ୍ପଦ ତିନି କିଏ କେବା ଘେନି
ନିବାରିବ କହ ବେନି ଯାଉ ମୋ ସନ୍ଦେହ,
ଭାଷିଲେ ସେ ଭୀମକର୍ମା ଭୀପ ହସି କୃଷ୍ଣେ

ମୋ ଭାଗେ ରହିଲା ଭେରୀ ଭାଙ୍ଗି ଚୂରି ଦେବି
ଅର୍ଜୁନ ଭାଷିଲେ ଦେବ ! ମୋ ଭାଗେ ଶାଲ୍ମଳୀ
ସମୂଳେ ଉପାଡ଼ି ଶୂନ୍ୟମାର୍ଗେ ଉଡ଼ାଇବି,
ତାହା ଶୁଣି କୃଷ୍ଣହସି ଭାଷିଲେ ବେନିଙ୍କି
ଭଲ ଭାଗ ଦେଲ ମୋତେ ଅଭାଗା ଗର୍ଦ୍ଦଭେ
ତହୁଁ କିଛି ଦୂରେ ଯାଉଁ ଦ୍ୱିତୀୟ ଦୁଆରେ
ପ୍ରବେଶନ୍ତେ ମହାଭେରୀ ରାବିଲା ଭୈରବେ
ଭୀମେ କହୁଁ କୃଷ୍ଣ ସେହୁ ଧାଇଁ ଭୀମବେଶେ
ପ୍ରହାରୁଁ ସ୍ୱ ବଜ୍ରମୁଠି ହେଲା ଚୂର୍ଣ୍ଣୀଭୂତ
ମହାଭେରୀ ଗର୍ଭୁଁ ଏକ ଗନ୍ଧର୍ବ ନିକସି
ଅମର ବିମାନେ ବସି ଗଲା ସ୍ୱର୍ଗପୁରେ;
ତହୁଁ ଯାଇ କେତେଦୂରେ ତୃତୀୟ ଦୁଆରେ
ଉପନୀତ ହେଉଁ ପଲ୍ଲବିତ ସେ ଶାଲ୍ମଳୀ
ରକ୍ତ ପୁଷ୍ପେ ଯୁତ ହୋଇ ଦିଶିଲା ଶୋଭିତ
ମୃତ ଶୁଷ୍କବତ ହୋଇଥିଲା ଯେଉଁ ତରୁ
କୃଷ୍ଣ କହୁଁ ପାର୍ଥେ ପାର୍ଥ ସ୍ମରୁଁ ପକ୍ଷିନାଥେ
ଆଣିଦେଲା ଗାଣ୍ଡୀବ, ବାୟବ୍ୟ, ପାଶୁପତ,
ଧନୁରେ ବସାଇ ବେନିଶର ଧନଞ୍ଜୟ
ପ୍ରସାରୁଁ ସମୂଳେ ଛିଡ଼ି ଉଡ଼ିଲା ଆକାଶେ
ତରୁର ଭିତରୁ ଏକ ଗନ୍ଧର୍ବ ନିକସି
ଅମର ବିମାନେ ବସି ଗଲା ସ୍ୱର୍ଗପୁରେ;
ତହୁଁ ଯାଇ କେତେ ଦୂରେ ଚତୁର୍ଥ ଦୁଆରେ
ଉପସ୍ଥିତ ଯଦୁନାଥ ଭୀମାର୍ଜୁନ ସାଥେ
ତାଙ୍କୁ ଦେଖି ଖରବର ରାବନ୍ତେ ପ୍ରଖରେ
ପାଞ୍ଚ ପାଞ୍ଚଜନ୍ୟ କୃଷ୍ଣ ନିଯୋଜିଲେ ମୁଖେ
କରୁଁ ସେହି ପୁଣି କମ୍ବୁବତ ଶବ୍ଦଜାତ
ପଦସ୍ପର୍ଶି ବିନାଶିଲେ ଶାପବାକ୍ୟ ଗୁଣି
ଗର୍ଦ୍ଦଭର ଗର୍ଭୁଁ ଏକ ଗନ୍ଧର୍ବ ନିକସି

ଅମର ବିମାନେ ବସି ଗଲା ସ୍ୱର୍ଗପୁରେ;
ଦ୍ୱାରବଳି ତହୁଁଚଳି ପାଖଶାଳେ ଉଭା
ଜନମନ ଲୋଭା ଦିବ୍ୟଶୋଭା ବହି ଅଙ୍ଗେ
ସେକାଳେ ସେ ଯଜ୍ଞଶାଳେ ଥିଲେ ବାମଦେବ,
ସୁଦେବ, ସୁମନ୍ତ, ସଦାଶିବ, ଭରଦ୍ୱାଜ,
ବାଲ୍ମୀକି, କଶ୍ୟପ, ବିଶ୍ୱାମିତ୍ର, ଉଦ୍ଦାଳକ,
ଆଦି ତନ୍ତ୍ରବାଦୀ ଏହି ଋଷି ବିପ୍ରଗଣ
ଦେଖି ଅପରୂପ ରୂପ ବିପ୍ର ତିନିଙ୍କର
ଅନାଇଲେ ବାର ବାର ଚିତ୍ତେ ଚିତ୍ରମଣି
କର ପ୍ରସାରି କଲ୍ୟାଣ କରି ତିନିଜଣ
ସଓଁକାରେ ବେଦନାଦ କରୁଁ ଏକସ୍ୱରେ
କମ୍ପିଲା ବ୍ରହ୍ମାଣ୍ଡଖଣ୍ଡ ଦଲଦଲ ହୋଇ
କମ୍ପିଲା ଆତଙ୍କେ ଜରାସନ୍ଧଙ୍କ ହୃତ୍ପିଣ୍ଡ
ଚାହିଁତିନି ବିପ୍ରରୂପ ହୋଇ ବିମୋହିତ
ବ୍ୟବହାର କଲେ ଏହି ଭାବେ ସେ ବ୍ୟାହାର
ପଞ୍ଚଦଶ ଦିନଶେଷ ଚାହିଁ ନାହିଁ କାହିଁ
ଏହିରୂପେ ରୂପବନ୍ତ ବେଦବିଦବିପ୍ର
ଆସିଛନ୍ତି କିବା ରୁଦ୍ର ଇନ୍ଦ୍ର ବ୍ରହ୍ମା ମିଶି
ବେଦନାଦେ ମୋହୁଛନ୍ତି, ଚରାଚର ଆଦି
ଏତେ କହି ହସ୍ତେ ବହି ରତ୍ନଝରୀ ଗୋଟି
ଯାଗଶାଳୁଁ ଉଠି ନମି ପାଛୋଟି ତାହାଙ୍କୁ
ପାଦ୍ୟଅର୍ଘ୍ୟେ ପାଦପୂଜି ପୁଣି ସପ୍ରମୋଦେ
ନିବେଦିଲେ ହାତଯୋଡ଼ି ସ୍ୱାଗତ ବାରଣ
ଆହେ ବିପ୍ରେ ! କାହିଁ ବସ, ନାମ ତୁମ୍ଭ କିସ,
କି ଉଦ୍ଦେଶ୍ୟେ ଆସିଅଛ ଭାଷ, ମୋ ସଦେଶେ;
ତା ଶୁଣି କୃଷ୍ଣକୈତବେ ଉତ୍ତରିଲେ ବାଣୀ
ହେ ମଗଧନାହା ! ଯାହା ପୁଚ୍ଛ କହୁଁ ଶୁଣ
ଗୁରୁବଂଶେ ଜାତ ବସୁଁ ହସ୍ତିନା ନଗରେ
ସଗରଜ-ତ୍ରାଣେଶ୍ୱରୀ ପଦେ ବହେ ନିତ୍ୟେ

ମୋନା ବିଷ୍ଣୁ ଦାସ ଘଟେ ପଟେ ମୋ ଆବେଶ
ନାହିଁ କେ ମୋ ପାପ ତ୍ରାଣ ଏକା ମୁଁ ସଂସାରେ
ଜୟଭେଦୀ ନନ୍ଦନ ଏ ନାମ ଯଶୋଦାସ
ବନ୍ଦନ କରନ୍ତି ଶତ୍ରୁହତ ଯଜ୍ଞ ଏସେ
ତାଙ୍କ ନାମ ଜୟଦାସ ଜୀବଦାସ ବଳା
ରାଗ ବଳେ କାହାକୁ ନ ଛାଡ଼ନ୍ତି ସଙ୍ଗରେ
ଧର୍ମଦେବ ଗୁରୁ ଆମ୍ଭ ଦେବତା ଗିରୀଶ
ଜରାମୃତ୍ୟୁ ଆମ୍ଭହାତେ ବେନିଙ୍କ ଆଦେଶେ
ଭ୍ରମୁଁ ତେଣୁ ଭୟହୀନେ ନିଜ ଇଚ୍ଛାମତେ
ଅବିରତେ ପାଳି ପରହାନିହତ ବ୍ରତ
ସର୍ବ ବିଦ୍ୟାବିଶାରଦ ଶାରଦା ପ୍ରସାଦେ
ଭାବ ଧରାଧବ ! ଏହା ଆମ୍ଭର ସ୍ୱଭାବ;
ଶୁଣି ଜରାସନ୍ଧ ଲଭି ମାନସେ ଆନନ୍ଦ
ଭାଷିଲେ ଆସିତ ଶେଷ ହେଲା ଦାନ କାଳ
ଚଉବିଂଶ କୋଷମଧ୍ୟ ହୋଇଲାନି ଶେଷ,
ଷୋଡ଼ଶ ଦିବସ ଆଜି ଯଜ୍ଞ ଉତ୍ସବର
ଦେଖ ନୃପମେଧ, ରାତ୍ରଅର୍ଦ୍ଧେ ପୂର୍ଣ୍ଣ ହେବ
ବିଧିମତେ ସାଧୁଅଛି କାର୍ଯ୍ୟସିଦ୍ଧି ପାଇଁ
ମାର୍ଜନ କରାଉଅଛି ରାଜନ ବରଜେ
ଇଷ୍ଟଦେବ ତୁଷ୍ଟହେବା ଅର୍ଥେ ବଳି ଦେବି
ଆଜ ରଜନୀକ ଯାପ ବାସ ଗ୍ରାସ ପାଇ
ନିଯୋଜିବି ଏହିଠାବେ ନ ମଜ୍ଜିବ କଷ୍ଟେ
ପ୍ରଭାତିଲେ ରାତ୍ରୀ କାଲି ହେବି ପ୍ରପୁଙ୍ଗବେ !
ସମର୍ପି ସେ ସର୍ବକୋଷ ଦେଶ ଘୋଷ ସଙ୍ଗେ
ସନ୍ତୋଷ କରିବି ତୁମ୍ଭମାନଙ୍କ ମାନସ
ସନ୍ଦେହ ନ କର ଲବେ ମୁଁ ସେ ଜରାସନ୍ଧ
ମୋ ସମାନ ରାଜା କରୁ ଲଭ ଯେବେ ଦାନ
ଆନ ସ୍ଥାନେ ଘେନିବ କି ଦାନ ଆଉ ଦିନେ

ଚିରଦିନ ଲାଗି ତୁମ୍ଭ ଖଣ୍ଡିବି ଦୀନତା
ଦରିଦ୍ର କରି ସେ ବଂଶେ ନ ରଖିବି କ୍ଷଣେ;
ଶ୍ରୀକୃଷ୍ଣ ଭାଷିଲେ ରାଜା ! ଧନ୍ୟ ତୋ ଜୀବନ
ତୋ ସମାନେ ନାହିଁ ରାଜା ଏମର୍ତ୍ତ୍ୟଭୁବନେ
ଯେଉଁ ଯାଗ ଉଦଯୋଗି ଅଛୁ ମହୀତଳେ
କର୍ଣ୍ଣେ ଯା ନ ଶୁଣିଥିଲୁଁ ଦେଖିଲୁଁ ନୟନେ
ପୁଣ୍ୟଜନ ବିନା କେବା କରେ ଏହ୍ନେ ପୁଣ୍ୟ ?
ଧନ୍ୟତୋ ମହିମା ତିନିଭୁବନେ ତୁ ସାଧୁ
ମଗଧ ଗଗନ ସୁଧାକର ତୁ ମହାତ୍ମା
ଆସିଅଛୁଁ ବହୁକଷ୍ଟ ସହି ତିନିଶ୍ରେଷ୍ଠ
କିଞ୍ଚିତ ଦାନେ କି ଚିତ୍ତ ନ ପାରିବୁ ତୋଷି
ବହୁଦାନ ଘେନିଲେ ହୁଅଇ ଆୟୁଃକ୍ଷୟ
ତୁମ୍ଭ ବହୁଦାନେ ଇଚ୍ଛା ନାହିଁ କିଛି ଆମ୍ଭ
ତୀର୍ଥବାସୀ ବିପ୍ର ଆମ୍ଭେ କ୍ଷିପ୍ର ଯିବୁଁ ତୀର୍ଥେ
ବହୁଅର୍ଥେ କାର୍ଯ୍ୟ ନାହିଁ ଏ ସେ ଧାର୍ଯ୍ୟ କଥା
ବିଭାଷିଲେ ଜରା ଯେବେ ଧନେ ନାହିଁ ମନ
ମନାସିଛ ମନେ ଦେବ କଷଣ କି ତେବେ
ଶ୍ରୀକୃଷ୍ଣ ଭାଷିଲେ ଆମ୍ଭେ ସାମାନ୍ୟ ବ୍ରାହ୍ମଣ
କି କଷଣ ଦେବୁଁ ତୁମ୍ଭେ ଅଟ ହୋ ସମ୍ରାଟ
ଏହା କହି ବେଦପଢୁଁ ସହ ସହ ନାଦେ
କମ୍ପେ ଦଶଦିଗ ଜରା ହୃଦଦେଶ ସହ
ଶୁଣି ଜରା ଭ୍ରସ୍ତବ୍ୟସ୍ତେ ରହ ରହ କହି
ବିହିଲେ ଏବାଣୀ କହ କହ ଦ୍ୱିଜମଣି !
କି ଦାନ ମାଗିବ ମାଗ ନ ସହେ ମୋ ଦେହ
ନିଃସନ୍ଦେହ ଦେବି ଆଣି ତୁମ୍ଭର ଚରଣେ
ତୁଚ୍ଛା ଦେଖି ଭଣ୍ଡାର ବା ଇଚ୍ଛିଅଛ ମନେ
ଦାନ କେହ୍ନେ ଦେବ ବୋଲି ଦୀନ ଭାବ ଲକ୍ଷି
ଯାହା ଇଚ୍ଛା ମାଗ ବେଗ ତ୍ୟାଗି ଯାଗାହୁତି

ତୁମ୍ଭଙ୍କୁ କି ଦାନଦେବା ଦ୍ରବ୍ୟ ନାହିଁ ଗୃହେ ?
କୃଷ୍ଣ ଭାଷନ୍ତି ନୃପତି ! ତୋର କଳା କୀର୍ତ୍ତି
ଆହୁତି ଯାଚିବୁଁ କିପାଁ ନୁହଇ ଉଚିତ
କହି, ତହୁଁ ଦକ୍ଷିଣାବର୍ତ୍ତକ-ଶଙ୍ଖ ଏକ
ଜଳ, ତିଳ, ପୂର କରି ଜରା କରେ ଦେଲେ
ନିଜ କରତଳ ପାତି ତାର ତଳଦେଶେ
ସତ୍ୟ କରାଇଲେ ଜରାସନ୍ଧେ ତିନିବାର
ହସ୍ତେ ନ୍ୟସ୍ତ କରୁଁ ଜରାବୀର ଶଙ୍ଖୁ ନୀର
ସାକ୍ଷୀ କଲେ ଉର୍ଦ୍ଧ୍ୱେ ଦେଖି ଲକ୍ଷି ଏହି ମତେ
ଆହେ ଧର୍ମଦେବ, ସୁରଦେବ୍, ଦିଗପାଳ,
ଆହେ ରବି, ଶଶୀ, ଦେବବ୍ରହ୍ମପିତ୍ତ, ଋଷି
ଆହେ ଚାରିଯୁଗ, ଚାରିମେଘ, ରହ ସାକ୍ଷୀ
ଜରାରାଜା ଦିଏ ଦାନ କରେ ମୁଁ ଆଦାନ
ହେ ଯାଜ୍ଞିକେ ! ପ୍ରତ୍ୟକ୍ଷେ ନିରେଖି ରହ ସାକ୍ଷୀ
ଦାନ ଆନ ନ କରଇ ରାଜନ ଯେସନ
ଏତେ କହି ତହୁଁ ଜରାରାଜନେ ଭାଷିଲେ
ଦିଅ ଆୟୋଧନ ଧନେ ନାହିଁ ପ୍ରୟୋଜନ
ଶୁଣି ଗୀର ଜରାବୀର ବିରସତା ଭଜି
ମ୍ଳାନ ମୁଖେ ମନୋଦୁଃଖେ ନିକ୍ଷେପିଲେ ଶଂଖ
କହିଲେ ନୁହହେ ବିପ୍ର ଦେବ କି ଦାନବ
ଆସିଅଛ ସ୍ୱଇଚ୍ଛାରେ ରଣେ ମରିବାକୁ
ଉତ୍ତାରିଲେ କୃଷ୍ଣ ନୋହୁଁ ଦେବ ବା ଦାନବ
ସ୍ୱଭାବେ ମାନବ ଆମ୍ଭେ ବିପ୍ର ତିନିଜଣ
ତବ ଭାଷା ଶେଷପଦ ଆଦ୍ୟବର୍ଣ୍ଣେ ଇଷ୍ଟ
ଆକାରେ କରିବାଲାଗି ଆସିଅଛୁଁ ଭାବ
ବୁଝିପାରି ଜରା ବୋଲେ କି ବୋଲୁରେ ଦ୍ୱିଜ !
ଅଜ୍ଞାନ ତୁଁ ମତିଭ୍ରମ ହୋଇଛି ନା ତୋର
ସତ୍ତ୍ୱଗୁଣୀ ପରା ବିପ୍ର ନ ଗୁଣି ତୋ ଚିତ୍ତେ

ଅନିମିତ୍ତେ ମୃତ୍ୟୁ ଚିନ୍ତୁଁ ହୋଇ ବେଦବେତ୍ତା
ବିପ୍ର ହୋଇ ଏରୂପରେ ଭରସା ତୋହର
ଗୋତ୍ର ଗାତ୍ର ଟାଳେ କାହିଁ ପିପିଲିକାପଲ
ଶ୍ରୀକୃଷ୍ଣ କହନ୍ତି ରାଜା ଯାର ଯେ ପ୍ରକୃତି
ଗୁରୁ କହିଲେ ହେଲେ କି ବରଜେ ସେ ତାହା
କରିନାହିଁ କିହେ ନୃପ ! ନୃପମେଧ ଶଧ
ବିନା ଅପରାଧେ ବଧ କରିବାକୁ ନୃପେ
ରାଜନ ବିହୀନ ଧରା କରିଦେବୁ ପରା
ଆଜ ରଜନୀରେ, ପରଦୋଷ ଘୋଷୁ କେତେ
ପାରୁ ଯେବେ ଦିଅ ଯୁଦ୍ଧ ନତୁ ତୋ ଆହୁତି
ଧ୍ୱଂସିବୁଁ ଏକ୍ଷଣି କୀର୍ତ୍ତି ନାଶ ଯିବ ତୋର
ଦକ୍ଷ ଯଜ୍ଞ ବିଧ୍ୱଂସିଲେ ଯେହ୍ନେ ବିରୂପାକ୍ଷ
ଯାବତ ଜୀବନ ଆମ୍ଭ ଏସନ ପ୍ରକୃତି
ଯୁଦ୍ଧ ନ ପାଇଲେ କେବେ ତୃପତି ନ ଭଜୁଁ
ଯେ ଦିନ ଯୁଦ୍ଧ ନ ପାଉଁ ଅତିଦୀନ ହୋଇ
କଟାଉଁ ସେ ଦିନଗୋଟା ଆଉଟାଇ ମନ
ଶୁଣି ଜରା ରୋଷବଶେ ରକ୍ତ କରି ନେତ୍ର
ଡେଇଁଲା ବିଚିତ୍ରଭାବେ ଦେଇ ଲମ୍ଫଝମ୍ପ
ଗର୍ଜ୍ଜିଲା ପ୍ରଚଣ୍ଡ ଭାବେ ହୁଂକାରକୁ ସର୍ଜ୍ଜି
ଆର୍ଦ୍ର ମୃତ୍ତିକାରେ ଯଥା ବୃଷର ପୌରୁଷ
ଯଜ୍ଞସ୍ଥାନେ ସମବେତ ଯାବତ ମାନବ
ନିସ୍ତବ୍ଧ ହୋଇଲେ ଶୁଣି ସେହି ଘୋର ଶବ୍ଦ
ଭୀତଗ୍ରସ୍ତ ହୋଇ କେତେ ଇତସ୍ତତଃ ଭାବେ
ସଚପଳେ ପଳାଇଲେ ନିଜପୁର ପ୍ରତି
ଯେ ସ୍ଥାନେ ସମ୍ଭବେ ଭୟ ବିପଦର ଭାବ
ସେ ସ୍ଥାନ ବର୍ଜ୍ଜିବା ବୁଦ୍ଧିମାନ ଜନ କାର୍ଯ୍ୟ

ଇତିଶ୍ରୀ ଜରାସନ୍ଧବଧ କାବ୍ୟେ କୃଷ୍ଣଭୀମାର୍ଜ୍ଜୁନ ଜରାପୁର ପ୍ରବେଶେ
ନାମ ଚତୁର୍ଦ୍ଦଶଃ ସର୍ଗଃ ।

—

## ପଞ୍ଚଦଶ ସର୍ଗ

ଅନନ୍ତର ଜରାସନ୍ଧ ମଗଧଅଧିପ
ପ୍ରକୋପେ ଭାଷିଲେ ବାଣୀ ହୋଇ ଝାଣି ଟାଣି
ଲାଙ୍ଗୁଡ଼ ଟିପିଲେ ଯଥା କୋପଇରେ କପି,
ରେ ବ୍ରାହ୍ମଣ ! କରୁ ନିର୍ଜେ ମରଣ ବରଣ
କି ଯିବ ତୋ ମୋ ଅଖ୍ୟାତି ଶୁଭିବ ଏ କ୍ଷିତି
ମହାଦେବ ପ୍ରାୟେ ଦେବ କରି ବ୍ରହ୍ମହତ୍ୟା
ପାର କରି ନ ପାରିଲେ ସେ ପାତକ ଏକ
ବ୍ରାହ୍ମଣ ବଧର ଅପରାଧେ ତେଣୁ ଭୟ
ଜାଣୁ ଜାଣୁ ଯୁଦ୍ଧ ଶଧ କରିବି ମୁଁ କେହ୍ନେ
ମୋ ମହିମା ଶୁଣି ନାହିଁ ତୁହିଁ କିରେ ଦ୍ୱିଜ !
ଆୟୁଷ ତୋ ଥାଉଁ ଥାଉଁ ଲୋଡୁ ଆୟୁଃ କ୍ଷୟ
ଜଣା କି ନାହିଁରେ ବିପ୍ର । ମୁଁ ସେ ଜରାସନ୍ଧ
ପୃଥ୍ୱୀ ନୃପବୃନ୍ଦ ବନ୍ଦୀ, ମୋର ବନ୍ଦୀ-ଗୃହେ
ଯେଉଁ ରାଜାଗଣ ଯୁଦ୍ଧ କଲେ ଜଣେ ଜଣେ
ଜିଣି ପାରନ୍ତି ଜଗତଯାକଙ୍କୁ ସହଜେ
ବୀର ମହାବୀର ପୁଣି ମଲ୍ଲ ମହାମଲ୍ଲ
କେତେ ମୋର ହାତେ ହତ ହେଲେନି ଜଗତେ
କମ୍ପନ୍ତିରେ ଦିଗପାଳ ମୋ ନାମ ଶ୍ରବଣେ
ଛାର ବ୍ରାହ୍ମଣରେ ଆସି କରୁ ତୁ କଟାଳ
କରଇଁ ମୁଁ ନୃପମେଧ ଇନ୍ଦ୍ରପଦ ଶଧେ
ପଦ କ୍ଷେପୁ ବହ୍ନି ମଧ୍ୟେ ବିପଦ ନ ଭାବି
ମଥୁରା-ନରେଶ, ଭୋଜବଂଶ-ଅବତଂସ,
କଂସ ମୋ ଜାମାତା ଧ୍ୱଂସ କରନ୍ତେ ତାହାଙ୍କୁ
ମନ୍ଦ ଗୋପପତି ନନ୍ଦନନ୍ଦନ ବେନିହେଁ
ସେ ବାର୍ତ୍ତା ମୋ ସୁତା ବେନି ଜଣାନ୍ତେ ଅଗ୍ରତେଁ

ବାହି ବିରାଟବାହିନୀ ଅଷ୍ଟାଦଶ ବାର
ହରାଇଲି ରହି ନ ପାରିଲେ ମଧୁପୁରେ
ଚ୍ଛୁର କରି ପୁର ପୁଣି ଉଜାଡ଼ି ସମୂଳେ
ଅନଳ ଲଗାଇ ପୋଡ଼ି, କଲି ଛାରଖାର
ତେଣୁ ପଳାଇ ଚପଳେ ମହୋଦଧି ମଧ୍ୟେ
ଗୁଚି ବଞ୍ଚିଲେ ରେ ବିପ୍ର ! କି କହିବି ତାହା
ତେବେ କି ସାହସେ ଇଚ୍ଛା କରୁ ତୁ ସମରେ
ମୋର ଦୋଷ ନାହିଁ ନାଶଯିବୁ ନିଜ ଦୋଷେ
ଖେଳ କଉତୁକ ପରା ମଣୁକିରେ ରଣ-
ଶମନ ସମାନ ଜାଣ ପ୍ରାଣଭକ୍ଷୀ ସେ ରେ
କରିବୁ ନା ପ୍ରହରଣ ସ୍ରୁବ ସୂଚ ଚୟ
ଛତା ପୋଥା ତମ୍ବାପାତ୍ରୀ ଅମ୍ବୁପାତ୍ର ବ୍ରାତ
ତହିଁକି ହୁଅଇ ରଣ ଆରେରେ ବ୍ରାହ୍ମଣ !
ଚଳ ନେଇ ବସନ, ଭୂଷଣ, ଧନ, ରତ୍ନ,
ଭଲା ବିଧି ଘଟାଇଲା ଆଶି ଏତେବେଳେ
ବିପ୍ର ବାଣଟାଣ ଆଣିବାଣୀ ଶୁଣିବାକୁ
ଡରାଇଲେ ପଳାଇବେ ଭାଳି ନିଜ ମନେ
ଲମ୍ଫ ଝମ୍ପ ଦେଇ ବାହ୍ୱାସ୍ଫୋଟ ପ୍ରକାଶିଲା
ସ୍କନ୍ଧୁଁ ଉପବୀତ କାଢ଼ି ବାମହସ୍ତେ ଭିଡ଼ି
ସଜାଡ଼ିଲା ପିନ୍ଧାବସ୍ତ୍ର ଖଣ୍ଡି ମାଲବନ୍ଧେ
ଚିରା ମାରି ବ୍ୟସ୍ତାଲୀଢ଼ ପଦେ ହୋଇ ସ୍ଥିତ
ଲମ୍ଫି ବସେ ପଶୁ ପାଶେ ଯଥା ପଶୁରାଜ
ଡାକିଲା ବ୍ରାହ୍ମଣେ ଆସ ରଣପରା ଚାହଁ
ଧର୍ମେ ସାକ୍ଷୀ ରଖି ପୁଣି କହିଲା ଯାଜ୍ଞିକେ
ଦେଖି ସାକ୍ଷୀ ରହ, ବିପ୍ର ନାଶ ଦୋଷ ନୋହୁ
ଶୁଣି ଭୀମସେନ ତାହା ନ ସହି କହିଲେ
ଯୁଦ୍ଧେ ଗୁରୁ ବିପ୍ର ବଧ ନୁହେ ଅପରାଧ
କହ କେତେ ବାର ବାର ଆହେ ନରବର
ଏ ପ୍ରକାର କହେ ସିନା ଅଭାଜନ ଜନ;

ପାର୍ଥ କହିଲେ ଯଥାର୍ଥ କହ ନୃପନାଥ
ମହାନ ସମର୍ଥ ତୁମ୍ଭେ ଅରି ମାରିବାରେ
ଅଷ୍ଟାଦଶ ବାର ଯୁଦ୍ଧ ବେନି ଶତ୍ରୁବଧେ
ଜଣା ନ ଯାଏ କି ଏଥୁଁ ସାମର୍ଥ୍ୟ ତୁମ୍ଭର
କୃଷ୍ଣ ଭାଷିଲେ ହେ ନୃପ ! ସ୍ୱପୌରୁଷ କେତେ
ଅପୁରୁଷ ପୁଂସବତ କରୁଛ ପ୍ରକାଶ
ନିଜର ପ୍ରଶଂସା ନିଜେ କରଇ ଯେ ଜନ
ମରଣ ସମାନ ତାର ଜାଣ ଏ ସଂସାରେ
ପାର ଯେବେ କର ଯୁଦ୍ଧ ବିଳମ୍ବେ କି କାର୍ଯ୍ୟ
ଧାର୍ଯ୍ୟ କରିଛୁଁ ନା ଆମ୍ଭେ ତୀର୍ଥେ ଯିବା ଅର୍ଥେ
ତହୁଁ କୃଷ୍ଣ ରୋଷକଷାୟିତ ନେତ୍ରେ ଚାହିଁ
ଅନୁଜ୍ଞା ବହିଲେ ବିଜୟାଙ୍କେ ଏ ମତେ
ହେ ହୋତାଏ ଆହୁତି କି ସ୍ତମ୍ଭ ତୁମ୍ଭେମାନେ
ନଭୁ ତହିଁ ପାପେ, ଶାପେ କରିବୁଁଟି ଭସ୍ମ
ଶୁଣି କୃଷ୍ଣ ଭାଷା ତ୍ରାସେ ସ୍ତମ୍ଭନ୍ତେ ଆହୁତି
ବୋଲେ ଜରା ନ ସ୍ତମ୍ଭ ହେ ଦ୍ୱିଜାତି କଦମ୍ବ !
ପୁରୋଧା କହିଲେ ଶୁଣି ଆହେ ନୃପମଣି ।
ଅତିଥି ନୋହିଲେ ତୃପ୍ତି ନୁହେ ଫଳପ୍ରାପ୍ତି
ତେଣୁ ଆଗେ ଅତିଥିଙ୍କି ବେଗେ ଯାଇ ତୋଷ
ପଛେ ଆହୁତି ଅର୍ପିବା ବୀତିହୋତ୍ରେ ସିନା,
ପୁରୋଧାଙ୍କ ବାଣୀଶୁଣି କ୍ରୋଧେ ଜରାସନ୍ଧ
କ୍ଷିପ୍ରେ ପ୍ରବେଶିଲା ଆସି ତିନିବିପ୍ର ପାଶେ
ଉଭା ହୋଇ ଗର୍ଜନ ସର୍ଜିଲା ଅତି ଉଚ୍ଚେ
ପ୍ରଳୟ ଜୀମୂତବତ କମ୍ପାଇ ଧରିତ୍ରୀ
ବାହାନାଦ କରି ମହାରଡ଼ି କେ ଦେଲା
ସ୍ୱର୍ଗ, ମର୍ତ୍ତ୍ୟ, ରସାତଳ କମ୍ପିଲା ସେ ରୁତେ
ରକ୍ତନେତ୍ର ବକ୍ରେ ଚାହିଁ ଅଧର କାମୋଡ଼ି
ଡେଇଁଲା ବିଚିତ୍ରଗତି କରି କାମରୂପୀ
ବ୍ୟସ୍ତାଳୀତେ ରହି ହସ୍ତଦ୍ୱୟ ଅଗ୍ରେ ତୋଳି

ଲୋଚନ ଭ୍ରମାଇ ଦଗ୍ଧ ତାମ୍ରଚକ୍ର ପ୍ରାୟେ
ବୋଇଲା ଆସରେ ତିନିଦ୍ୱିଜ ଏକ ଯୋଗେ
ମରଣ ଲୋଡ଼ିଲ ରଣେ ନାହିଁ ତୁମ୍ଭ ତ୍ରାଣ
କେଞ୍ଚୁ କିଞ୍ଚିତ ପ୍ରମାଣେ ପତଙ୍ଗ ସମାନ
ଶମନ-ଭବନେ ପଠାଇବି କ୍ଷିପ୍ରେ ବିପ୍ରେ ।
କୃଷ୍ଣ ଉତ୍ତରିଲେ ଶୁଣି ଆହେ ଜରାସନ୍ଧ
ଏକେ ତିନିଙ୍କରି ଯୁଦ୍ଧ ହୋଇବ ଅବିଧି
ଜରା ବୋଲେ ବିଧି ବା ଅବିଧି ଯୁଦ୍ଧେ କିବା
କରିଛୁ ନା ରଣଇଚ୍ଛି ମରଣବରଣ
କାଳବ୍ୟାଳ ବିଳେ ଯଥା ବଳେ ପଶେ ପ୍ଲବ
କୃଷ୍ଣ କହିଲେ ତିନିଙ୍କ ମଧ୍ୟୁ ଯାକୁ ଇଚ୍ଛ
ବାଛି ନେଇ କର ଯୁଦ୍ଧ ମଗଧଅଧିପ ।
କାଳ ଘୋଟେ ଯାକୁ ତାର ବାଳଧରି ବଳେ
ନିବେଶେ ମରଣପଥେ ବିପଥ ନ କରି
ଶୁଣି ଗୀର ଜରାବୀର କୃଷ୍ଣମୁଖ ଦେଖି
ବୋଲେ ତୁଁତ ଖର୍ବ ଦ୍ୱିଜ ତୋଠିଁ କାର୍ଯ୍ୟନାହିଁ
ଅର୍ଜୁନେ ନିରେଖି ବୋଲେ ଏସେ କ୍ଷୀଣ ବପୁଃ
ଚିପିଲେ ତ ତଣ୍ଟି ଆଣ୍ଟେ ମରିବ ସହଜେ
ମଧ୍ୟେ ବିରାଜଇ ଯେଉଁ ପୃଥୁଳ ବ୍ରାହ୍ମଣ
ତା ସଙ୍ଗେ ଯୁଝିଲେ କାଖେ ଲାଗିବ କିଞ୍ଚିତ
ପାରୁ ବା ନ ପାରୁ ଆସୁ ଯୁଝିବାକୁ ସେହି
ଭାଷୁଁ ଭୀମେ ଆଦେଶିଲେ ପ୍ରଭୁ ହୃଷୀକେଶ
କୃଷ୍ଣ ମୁଖୁଁ ଶୁଣି ବାଣୀ ଭୀମବୀରମଣି
ବାହାରିଲେ ମହାହବେ ବାହାନାଦ କରି
ସ୍ୱତ୍ରିକଚ୍ଛ ଚେଳ ମାଲବନ୍ଧେ ଭିଡ଼ି ଦୃଢ଼େ
ଉପବୀତ କାଢ଼ି ଆଣି ବାନ୍ଧି ସବ୍ୟ ହସ୍ତେ
ଧରାପୃଷ୍ଠୁଁ ମୁଷ୍ଟିଏକ ଧୂଳି ଅଙ୍ଗେ ବୋଳି
ଆକ୍ରୋଶିଲେ ଜରାସନ୍ଧେ ରୋଷ ପରକାଶି
ଦେଖି ତାଙ୍କ ବୀରଠାଣି ଜରା ନୃପମଣି

କହିଲା ନୁହଦେ ବିପ୍ର ଅପର କେ ତୁମ୍ଭେ
ଦମ୍ଭେ ବିପ୍ରରୂପ ଧରି ଇଚ୍ଛ ମରିବାକୁ
ବ୍ରହ୍ମଘାତକ ପାତକ ନ ଗଳୁ ମୋ ସ୍କନ୍ଧେ
ଏତେ କହି ରେରେକାର ଗୁତେ ଦେଇ ଡାକ
ଭୀମମୂର୍ତ୍ତି ବହି ତମେ ଭୀମେ ଆକର୍ଷିଲା
ବୋଇଲା, ଧନୁଷ, ଫଳା, ଖଡ଼ଗ, ପଟ୍ଟୀଶ,
ଆଦିର କି ଯୁଦ୍ଧ ଜାଣୁ ଆରେ ବାଦୀ ବିପ୍ର !
ଭୀମସେନ ଭାଷେ ଆମ୍ଭେ ଏକେ ଦ୍ୱିଜଜାତି
ନ ଜାଣୁ ହୋ ଖଡ୍ଗ ଫଳା ଧନୁଷ ପ୍ରୟୋଗ
ଭିଡ଼ାଭିଡ଼ି ଗଡ଼ାଗଡ଼ି ପଡ଼ା ପଡ଼ି କଥା
କିଛି କିଛି ଜଣାଅଛି ଅନ୍ୟଥା ନ ଜାଣୁ;
ଜରା ବୋଲେ ସେ ତ ମାଲବିନ୍ଧାଣ ବ୍ୟବସ୍ଥା
କିଛି ଜାଣୁ; ଶୁଣ ବିପ୍ର ଅଧିକ ପ୍ରକାରେ,
ଭୁଜେ ଭୁଜ ପାଦେ ପାଦ ଛନ୍ଦାଛନ୍ଦି ହୁଏ
ହୃଦେ ହୃଦ ଶିରେ ଶିର ଭିନ୍ଦାଭିନ୍ଧି କେବେ
ଭିଡ଼ନ ମୋଡ଼ନ ପୁଣି ତାଡ଼ନ ଆଡ଼ନ
ଧାରଣ ମାରଣ ତାରଣାଦି କେତେ ମତେ
ଛାଟନ ବେଷ୍ଟନ ଉର୍ଦ୍ଧ୍ୱେ ଲମ୍ଫଣ ଝମ୍ପିଣ
ଘୂରଣ କ୍ଷୁରଣ ଉଦ୍ଧାରଣ ତହିଁ ମିଶେ
ହୁଂକୃତ ଧିକ୍କୃତ ଉଚ୍ଚାବଚ ତ୍ରାହିଭାଷ
ଉତ୍କ୍ଷେପ ନିକ୍ଷେପ ବିକ୍ଷେପାଦି ଯୁତ ପୁଣି
ବାହ୍ୱାସ୍ଫୋଟ ଜଙ୍ଘାସ୍ଫୋଟ ଦନ୍ତ ରଟମଟ
ନୟନ ତରାଟ ନାନାଭଙ୍ଗିମା ତା ସଙ୍ଗେ
ଛତିଶଭରା କୌତୁକ ନାନା ଛନ୍ଦପାତ
ଧରାଧରି ମରାମରି କଷାକଷି ଭାବେ
ଏସର୍ବ ମାଲବିନ୍ଧାଣେ ହୁଅଇ ପ୍ରୟୋଗ
ସାଧନା ବଳେ ସେ ସାଧ୍ୟ ହୁଏ ଆରେ ବିପ୍ର !

ଆକର୍ଷି କରନ୍ତେ ରଣ ପୁଣ ପୁଣ ବଢ଼ି
କିରୀଟୀ ଶବଦେ ଛାଡ଼ ହୁଏ ହେଲେ ଗାଢ଼
ଚୌରାଣୀ ମାଲବିନ୍ଧାଣ ହୁଅଇ ଏରୂପେ
ଜାଣିବୁ କାହିଁରେ ବିପ୍ର ! ବେଦ ପୋଥି ବହି
ଜରା ଭାଷ ଶୁଣି ହାସ ଜନ୍ମାଇ ସେ ଭୀମ
ବୋଲେ ମୋର ସମ୍ମତ ତା ତୁମ୍ଭ ମତ ମତେ
କିରୀଟୀ ରହନ୍ତି ସାଥେ ତହିଁ କିବା ବ୍ୟଥା
ବୋଲିବା ନା କାର୍ଯ୍ୟକାଳେ ଧାର୍ଯ୍ୟ କର ଯାହା
ଶୁଣି ଆକର୍ଷିଲା ଜରାସନ୍ଧ ଭୀମେ ଧରି
ଅଧରେ ରଦନ ଚାପି କୋପି ଭୀମନାଦେ
ତହୁଁ ଦୁହେଁ ଭୁଜେ ଭୁଜ ଧରାଧରି ହୋଇ
ମୁଣ୍ଡେ ମୁଣ୍ଡ ମରାମରି ହୋଇଲେ ପ୍ରଚଣ୍ଡେ
ହୁଂକାର ଶବଦେ ପାଦ ଛନ୍ଦାଛନ୍ଦି କରି
ଭିନ୍ଦାଭିଳି କଲେ ପୁଣି ମୁଣ୍ଡେ କା ପିଚିଣ୍ଡେ
ପୃଷ୍ଠେ ହସ୍ତନ୍ୟସ୍ତି ହୃଦେ ହୃଦ ଦୃଢ଼େ ଭିଡ଼ି
ଭିଡ଼ନ ମୋଡ଼ନ ଭାବେ ନମାନ୍ତି ମସ୍ତକ
ଛାଟନ ବେଷ୍ଟନ ନିକ୍ଷେପଣ କେତେବେଳେ
ବିହନ୍ତି ବିକ୍ରମ ଦର୍ପେ ଦର୍ପୋନ୍ମତ୍ତ ହୋଇ
ମୁଖେ ମୁଥାଘାତ ଗଣ୍ଡେ ଚପେଟ ଆଘାତ
ପେଟେ ପଦାଘାତ କରୁଥାନ୍ତି ତହିଁ ପୁଣି
ଲମ୍ଫ ଗତି ଦେଇ କେବେ ଛଡ଼ାଛଡ଼ି ହୋଇ
ବ୍ୟସ୍ତାଲୀଢେ ରହି ବାହ୍ୱାସ୍ଫୋଟ ପ୍ରକାଶନ୍ତି
ଭ୍ରୂଭଙ୍ଗ ନୟନେ ଚାହିଁ ଦନ୍ତ କଡ଼ମଡ଼ି
ପୁଣି ଆସି ଜଡ଼ାଜଡ଼ି ହୁଅନ୍ତି ରଭସେ
ତହୁଁ ମରାମରି ଧରାଧରି ଭିଡ଼ାଭିଡ଼ି
ମୋଡ଼ାମୋଡ଼ି କାୟାକୁ କରନ୍ତି ରୋଷଭରେ
ବଳେ ବଳବାନ ଦୁହେଁ ସମରେ ସମର୍ଥ
କେ କାହାକୁ ଉଣା ନୁହେ ମଲ୍ଲବନ୍ଧ ଜ୍ଞାନେ

ନ ପାରି ସେ ଭୀମେ ଜରା ତମେ ଜରଜରି
ବିକ୍ରମ ପ୍ରକାଶି ବଳେ କଲା କୋଳାଗତ
ପାଦଛନ୍ଦି ଦୃଢ଼େ ପୁଣି କ୍ଷୁରଣ ଆଚରି
ନିପାତିଲା ମହୀତଳେ ବାତଜେ ତ୍ୱରିତେ
ହୃଦେ ମାଡ଼ି ବସି ରୋଷେ ଦନ୍ତ କଡ଼ମଡ଼ି
ରଡ଼ିକି ଛାଡ଼ିଲା ମେଘ ଘଡ଼ଘଡ଼ି ଜାଣି
ତ୍ରାସିଲେ ତ୍ରିଦଶେ ସ୍ୱର୍ଗେ ପାତାଳେ ଉରଗ
ମର୍ତ୍ତ୍ୟେ ମର୍ତ୍ତ୍ୟଲୋକେ ଶୁଣି ସେ ଭୈରବ ରବ
ଗୋତ୍ରଗାତ୍ରେ ଗିରିରାଜ ବିରାଜିଲା ପରି
ଶୋଭିଲା ସେ ଜରାସନ୍ଧ ଭୀମବକ୍ଷେ ଚଢ଼ି
ଗର୍ବୋନ୍ମତ୍ତ ଭାବେ ଆତ୍ମଗରିମା ପ୍ରକାଶି
ପ୍ରତିଜ୍ଞା କଲା ସେ ରହି ଏହି ପରକାରେ
ଆରେ ଭିକ୍ଷାଶୀ ପଥିକ କିପାଁ ଆସି ଏଥେ
ବୃଥା ଗଞ୍ଜି ହେଲୁ କଥା ନମାନି, ତୁ ମନେ
ବ୍ରାହ୍ମଣ ହୋଇରେ ତୋର ସାହସ ଅଶେଷ
ମୋ ସଙ୍ଗେ ସମର କରୁ ଅଜ୍ଞାନ ପାମର
ମୂଷା ହୋଇ ମୃଷା ଆଶା ମାର୍ଜାର ବିନାଶେ
ଶଶା ହୋଇ ନାଶି ବସୁ ଚଣ୍ଡ କେଶରିକି ?
ଟାଳେ କିରେ ପିପିଲିକା କେବେ ହେଲେ ଶୈଳେ
ନବୁଝି ପାମର ବିପ୍ର କ୍ଷତ୍ର ତୁଲେ ଯୁଝୁ
ଆୟୁଃ ଥାଉଁ ଥାଉଁ ତୋର ପୂରିଲାରେ କାଳ
ଦେଖାଇବି ଯମାଳୟ ସମ୍ଭାଳ ବ୍ରାହ୍ମଣ !
ସ୍ମର ଆରେ ବିପ୍ର ତୋର ନିଜ ପିତା ମାତା
ବନ୍ଧୁ ଭ୍ରାତା କଷ୍ଟ ମିତ୍ର ଦେବତା ଆବର
ଏକାଳେ ହୁଂକାର ନାଦ କରି ବୃକୋଦର
ଲେଉଟି ବସିଲା ମାଡ଼ି ଜରା ବକ୍ଷୋଦେଶେ
ପ୍ରତିଜ୍ଞା କରନ୍ତେ ପୁଣି ଜରା ବଳବନ୍ତ
ଲେଉଟି ବସିଲା ମାଡ଼ି ଭୀମ ହୃଦସ୍ଥଳେ

ଭୀମ ତଳେ ପଡ଼ି ପୁଣି ରୋଷେ ଦନ୍ତଭିଡ଼ି
ଲେଉଟାଇ ଜରାରାଟେ ମାଡ଼ିଣ ବସିଲା
ଏହି ମତେ ଗଡ଼ାଗଡ଼ି ପଡ଼ାପଡ଼ି ହୋଇ
ମରାମରି ଧରାଧରି ହୁଅନ୍ତି ବେନିହେଁ
ପଦାଘାତେ ଟଳଟଳ ହେଉଁ ବସୁନ୍ଧରା
ବାସୁକିର ମଥାବ୍ୟଥା ହେଲା ସେଥି ଯୋଗୁଁ
ଦୁହିଙ୍କ ମୁଷ୍ଟିର ଘାତ ପ୍ରତ୍ୟାଘାତ ଶବ୍ଦ
ଅଶନି ନିଃସ୍ୱନ ବତ କରେ ସ୍ତବ୍ଧ କର୍ଣ୍ଣ
ତା ଶୁଣି ଆକାଶବାସୀ ବୃଷା କର ଚାହିଁ
କିହେଲା କିହେଲା କହେ ମହାତ୍ରାସ ବଶେ
ତର୍ଜନ୍ତି ଗର୍ଜନ୍ତି ବେନି ଉଠନ୍ତି ପଡ଼ନ୍ତି
ମୁଖ ରଡ଼ି ଦେଇ ପୁଣି ଭିଡ଼ନ୍ତି ହାମୋଡ଼ି
ମହାଘୋର ରଣଦେଖି ଋଷି ବିପ୍ରଗଣ
କ୍ଷିପ୍ର ବିସ୍ମୟରାଶି ଯୋଗେ ପୋତେ ଯାଗକୁଣ୍ଡ
ଭରଦ୍ୱାଜ ଋଷିରାଜ ପୁଚ୍ଛିଲେ ସୁଦେବେ
ଏ କେ ସେ ସଙ୍ଗର ସାଧେ ଜରାସନ୍ଧ ସଙ୍ଗେ
ସୁଦେବ ଭାଷିଲେ ଶୁଣି ଦେବ ହୃଷୀକେଶ
ଭୀମାର୍ଜୁନ ବେନି ଘେନି ଆସିଛନ୍ତି ରୋଷି
ଜରାମନ୍ଦ କର୍ମ ଦେଖି । ପରବାଣି ଦ୍ୱନ୍ଦ୍ୱ
କୈତବେ ଏ ବେଶ ସାଜି, ମରାଇବା ବ୍ୟାଜେ;
ସ୍ୱଭାବେ ଯୁଦ୍ଧସଂଶ୍ରବ ଭୀମ ମହାଯୋଦ୍ଧା
ବଧିବ ଏକ୍ଷଣି ଦେଖ ମନ୍ଦ ଜରାସନ୍ଧେ
ଭୀମ ଜରାସନ୍ଧ ଯୁଦ୍ଧ ଅତି ଅଗୋଚର
ଚରାଚର ତ୍ରସ୍ତବ୍ୟସ୍ତ ବେନି ମୁଖ ରାକେ
କେତୁ ମଙ୍ଗଳର ତୁଳ ବେନିଙ୍କ ସଂଗ୍ରାମ
ଖାଲ, ଢିପ, ଡୋଙ୍ଗରାଦି ସର୍ବ ସମତୁଲ,
ମେଢ଼, ମଣ୍ଡପ, ଜଗତୀ, ପ୍ରାଚୀର, ତୋରଣ,
ଯାଗଶାଳ ସହ ଭାଙ୍ଗି ହେଲା ଛାରଖାର

କ୍ଷତବିକ୍ଷତ ଶରୀର କ୍ଷତଜ୍ଜେ ଜଡ଼ିତ
ନ ଜାଣନ୍ତି ରଣମଦେ ହୋଇ ମତ୍ତଭୋଳ
ବହନ୍ତେ ରୁଧିରଧାର ଉଭୟଙ୍କ ଦେହୁଁ
ସପୁଷ୍ପ କିଂଶୁକ ଶୋଭା ବହନ୍ତି ସେ ଦୁହେଁ
ସମର ବଢୁଛି ବେଳୁଁବେଳ ଯେତେ ଯେତେ
ତେତେ ତେତେ ତେଜ ବଢୁଅଛି ସେ ଜରାର
ପୁନରପି ମାଡ଼ିବସି ଦୃଢ଼େ ଭୀମପରେ
ପ୍ରହାରିଲା ନିର୍ଦ୍ଦୟେ ହୃଦୟେ ବଜ୍ରମୁଥ
ଚାହିଁଛନ୍ତି ବନ୍ଦୀ ଭୂପବୃନ୍ଦ ତହିଁ ବସି
ଯା କର ଚରଣେ ବେଢ଼ା ସୁଦୃଢ଼ ନିଗଡ଼
ବିପ୍ରର ଦୁର୍ଦ୍ଦଶା ଦେଖି ଦୁଃଖୀ ହୋଇ ସର୍ବେ
ଭୈରବୀ ଦେବୀଙ୍କି ଭାବେ ଏଭାବେ ସ୍ତବିଲେ
ନମୋ ମା ଭୈରବି ! ଭବତାପ ପରାଭବି !
ନମଶ୍ଚଣ୍ଡିକେ, ଅମ୍ବିକେ, ନମୋ ବିଶ୍ୱମ୍ଭରେ,
ନମଃ ଶିବପ୍ରିୟେ, ଶିବ, ସର୍ବାର୍ଥ-ସାଧିକେ,
ଯୋଗେଶ୍ୱରି ଯୋଗମାୟେ କାମିକାମପ୍ରଦେ
ନମୋ ମାତଃ ଆଦ୍ୟାଶକ୍ତି ଅନଳସଂଭୂତେ
ବିରାଜେ ତୋ ତନୁତେଜ ଅନଳୁଁ ଅଧିକେ
ମାଗୋ ତୋର ଏକଦେହେ ସହସ୍ରେକ କର
ଅମରନିକର ଚାହିଁ କଲେ ମହାଭୟ
ଅଭୟ ଦେଉଁ, ତୁ ତାଙ୍କୁ ଆଗୋ ମା ଅଭୟେ
ହର୍ଷେ ସର୍ବ ଶସ୍ତ୍ରଶାସ୍ତ୍ର ଅର୍ପିଲେ ତୋ ହସ୍ତେ
କାମାକ୍ଷୀ କାମରୂପିଣୀ ସୌମ୍ୟା ଭୀମା ରମା
ବହୁ ନାନାରୂପ ମାଗୋ ମୋହୁ ଚରାଚର
ମୋହିନୀ ସ୍ୱରୂପେ ବହୁ ଶକ୍ତିମୂର୍ତ୍ତି ବହି
ମାଗୋ ମହାଶକ୍ତି ବହୁ ଦନୁଜେ ସଂହାରୁ
ଚଣ୍ଡ ମୁଣ୍ଡ ଶୁମ୍ଭ ଗୋ ନିଶୁମ୍ଭ ରକ୍ତବୀର୍ଯ୍ୟ
ଚାମର ବିମଳ ପୁଣି ମହିଷ ଅସୁର

ବୀରଘଣ୍ଟ କାଳଘଣ୍ଟ ଧୂମ୍ରଲୋଚନାଦି
ବହୁଦୈତ୍ୟେ ହତ କଲୁ ମାଗୋ ଶାକମ୍ଭରି !
ସ୍ତମ୍ଭନ ମୋହନ ପୁଣି ବଶ୍ୟ ଉଚ୍ଚାଟନ
ଗୁଟିକା ଅଞ୍ଜନ ଆଦି ଉଲୂକ ଯେ ବିଦ୍ୟା
ସମସ୍ତ ତୁ ଜାଣୁ ଭବ ଭାବବିନୋଦିନି !
ଅକ୍ଷୟେ, ଅବ୍ୟୟେ, ସନାତନି, ବିଶ୍ୱରୂପେ,
କାଳପାଶ ଜଳପାଶ ନାଗପାଶ ଆର
ବ୍ରହ୍ମପାଶ ଆଦି ତୋର ପାଶେ ଗୋ ଅଭୟେ !
ଧନୁ ତୂଣ ବାଣ ଖଡ୍ଗ ଶକ୍ତି ଶୂଳ ଭାଲ
ଅକ୍ଷୟ ଭାବେ ଗୋ ରହେ ତୋହର ଶ୍ରୀ ଭୁଜେ
ବିପଦଧ୍ୱଂସିନି ! ମାତଃ ସମ୍ପଦ୍‌ପ୍ରଦାୟିକେ
ଶୋକ ଦୁଃଖ ବିନାଶିନି ! ଅସାଧ୍ୟସାଧିନି !
ଦୁର୍ଭିକ୍ଷ ମଡ଼କ ପୁଣି ରାଷ୍ଟ୍ରଉପଦ୍ରବ
ଆଶୁ ନାଶୁ ମାଗୋ ତୋର ପଦେ ନିବେଦିଲେ
ତୋତେ ସ୍ମରିଲେ ଗୋ ହୁଏ ଦୁର୍ଗତି ଖଣ୍ଡିତ
ମଣ୍ଡିତ ହୁଅଇ ଦୀନ ରତ୍ନ ବସ୍ତ୍ର ଧନେ
କାମ କ୍ରୋଧ ଲୋଭ ମୋହ ମଦ ହିଂସା ବାଦେ
ମତ୍ତ ହୋଇ ନ ସେବିଲୁଁ ପଦ୍ମପାଦେ ତୋର
ମାଗୋ ଆନନ୍ଦଦାୟିନି ! ଏ ଜରା ଦୁର୍ମତି
ବଳିଦେବ ବୋଲି ଗୋ ଆଣିଛି ବନ୍ଦୀ କରି
ଏଂସଙ୍କଟୁ ଉଦ୍ଧର ମା ସଙ୍କଟତାରଣି !
ମରାଇ ଏ ବିପ୍ର କରେ ଜରାକୁ ସତ୍ୱରେ
ତ୍ରାହି ପାଇଲେ ଗୋ ମାତଃ କହୁଅଛୁଁ ସତ୍ୟ
କନ୍ୟାମାସେ ଶାରଦ ଉତ୍ସବ କରି ତୋର
ଅନେକ ସମ୍ଭାରେ ନିଶାକାଳେ ଭକ୍ତିଭରେ
ତୋପଦ ସେବିବୁଁ ଷୋଳ ଦିବସ ପର୍ଯ୍ୟନ୍ତ
ବଳି ଭୋଜା ଛାଗ ମେଷ ମହିଷ ସମର୍ପି
ରହିବୁ ଗୋ ବ୍ରତେ ବ୍ରତରୀତ କି ଆଚରି

ସ୍ତୁତିବାକ୍ୟ ଶୁଣି ଗୋସାମଣି ସୁପ୍ରସନ୍ନେ
ତଡ଼ିଲ୍ଲତା ରୂପେ ପ୍ରତିଭାତି ଅଳ୍ପ କ୍ଷଣ
ଆକାଶେ ଅଦୃଶ୍ୟେ ରହି ଭାଷିଲେ ଏ ଭାଷା
ମନୋଭ୍ରାନ୍ତି ତେଜ ରାଜାବ୍ରଜ ହେଲି ତୁଷ୍ଟ
ବିପ୍ରର ହାତେ ଏ ଜରା ହୋଇବ ନିହତ
ଆକାଶ ସମ୍ଭବା ବାଣୀ ଶୁଣି ନୃପଗଣ
ଦେବୀ ଚରଣେ ଅର୍ପିଲେ ମନଃ ପ୍ରାଣ ଦୃଢ଼େ
ତହୁଁ ଯାଇ ମହାଶକ୍ତି ଶକ୍ତିର ସ୍ୱରୂପେ
ସଙ୍ଗର ଅଙ୍ଗଣେ ପ୍ରବେଶିଲେ ଭୀମ ଅଙ୍ଗେ
ସୂର୍ଯ୍ୟକାନ୍ତମଣି ଗାତ୍ରେ ସୂର୍ଯ୍ୟରଶ୍ମି ଯଥା
ଜରା ଯୁଦ୍ଧେ ପରାଭୂତ ହେଉଥିଲା ଭୀମ
ପରାକ୍ରମ ବଢ଼ିଲା ତା ଶକ୍ତି ଶକ୍ତି ବଶୁଁ
ତେଣୁ ଘୋରକ୍ରୋଧେ ନାଦି ଭୈରବଆରବ
ଜରା ରାଟେ ଲେଉଟାଇ ନିପାତିଲା ତଳେ
କରିକି କେଶରୀ ବଳେ ଆକ୍ରମିଲା ପରା
ଦୃଢ଼େ ମାଡ଼ିବସିଲା ସେ ଜରା ହୃଦେ ଭୀମ
ମେରୁକୁ ମନ୍ଦର ମାଡ଼ି ବସିବା ପରାଏ
ମହାଭାରା ହେଲା ଭୀମ ଜରା ବକ୍ଷୋପରି
ଏକେ ସେ ଅଧ୍ୱରବ୍ରତୀ ଷୋଡ଼ଶ ଦିବସ
ଆହାର ବିହାର ନିଦ୍ରା ତ୍ୟାଗି ଏକାବେଳେ
ତହିଁ ଖଡ୍ଗ ପାଶ ହରା ଚିନ୍ତାରେ ବ୍ୟାକୁଳ
ହେବାରୁ ହୋଇଛି ମହାବଳୀ ବଳହୀନ
ତେଣୁ ଧରାତଳୁଁ ଆଉ ନପାରିଲା ଚଳି
ରହିଲା ଅଚଳଭାବେ କିରୀଟୀ କି କହି
ଶୁଣି ଭୀମ ବହିତମ ବୋଲେ ଆରେ ଜରା
ପିଅର ପୁଅର କାର ନାମରେ କିରୀଟୀ
ଏତେ ଭାଷି ବାମହସ୍ତ ତୋଟିରେ ନିବେଶି
ବେନି ପାଦେ କଟି ଜାନୁ ମାଡ଼ିଲା ସୁଦୃଢ଼େ

ଦକ୍ଷମୁଷ୍ଟି ଊର୍ଦ୍ଧ୍ୱେ ଟେକି ବକ୍ର ଦୃଷ୍ଟି ଦେଇ
ଅମାପ ପ୍ରତିଜ୍ଞା ଭୀମ କଲା କୋପବଶେ
ଆରେ ମନ୍ଦ ଜରାସନ୍ଧ ନୃପକୁଳାଙ୍ଗାର
କେ ରଖିବ ରଖୁ ଆସି ପାମରରେ ତୋତେ
ମୋ ହସ୍ତ ପର୍ବତେ ତୋର ଅସୁ-ଅଂଶୁମାନ
ଅସ୍ତ ଭଜିବରେ ଆଜି ବର୍ଜି ତେଜ ଓଜ
ଆରେ ଭଣ୍ଡ ! ଶକ୍ତିନାମେ ବହୁ ପ୍ରାଣୀ ହାଣି
କରିଲୁ ନି ପୁତ୍ରହୀନା ଧରଣୀ ରାଣୀ କି
ହିଂସାଧର୍ମ ଗ୍ରହି ମୂଢ଼ ! ଶାକ୍ତନାମ ବହୁ
ସହିବ କି ଦୈବ ତାରେ ନିର୍ଦ୍ଦୟ-ହୃଦୟ !
ଆରେ ଭଣ୍ଡଶାକ୍ତ ! ତୁ ରେ ଶକ୍ତିସେବା କରି
ପାଇଅଛୁ ପରା ଗଦା ଖଡ୍ଗ ପାଶ ବର
ନିରୀହ ନରେଶ ତାର ବଳେ ଧରି ଆଣି
କରିଛୁ ପରାରେ ନୃପମେଧ ଯଜ୍ଞ ଶଧ
ଷଣ୍ଣବତି ସହସ୍ର ନରେଶ ଶିର ହାଣି
ଇନ୍ଦ୍ରପଦ ଲୋଭୁ ପରା ତୁରେ ପରପ୍ରାଣେ
ମୋର କରେ ଇନ୍ଦ୍ରପଦ ଅଛିରେ ତୋହର
ତେଣୁ ଆସିଅଛିଁ ତୋର ଏଜନ୍ମ ବର୍ଜାଇ
ଯମରାଜାବ୍ରାଜକ ତୁ ହୋଇ ଯାଆ ଆଜ
ନାରକିବୃନ୍ଦର ଇନ୍ଦ୍ର ହୋଇବୁ ନା ତହିଁ
ଅଷ୍ଟାଦଶ ବାର ଯୁଦ୍ଧ କରି ଆରେ ଜରା
ହରାଇଥିଲୁ ରେ ପରା ରାମକୃଷ୍ଣ ଦ୍ୱୟେ
ଐବର୍ତ୍ତେ ସିଂହର ଶକ୍ତି ବହୁ କେଡ଼େ ଦେହେ
କାହିଁଗଲା ଆଜି ତୋର ସେହି ପରାକ୍ରମ
ମିଛେହେଁ ବଖାଣୁ ଭଣ୍ଡ ! ତୁଣ୍ଡେ ତୋ ଗରିମା
ପାପ ପ୍ରାୟଶ୍ଚିତ୍ତ ଏବେ ପାଅରେ ଦୁର୍ମତି
ନୃସିଂହ ସମାନ ହୃଦବିଦାରି ତୋ ଆଜ
ବ୍ୟାଜ ନୁହେ ରକ୍ତପାନ କରିବି ଦୁରନ୍ତ

ପରମାଂସ ଦାନେ ମନ ବଳାଉ ରାକ୍ଷସ
ତୋ ମାଂସ ଭୁଞ୍ଜିବେ ଆଜ ଶକୁନି ଶୃଗାଳ
ପୂର୍ବୁଧାତା ଲେଖିଅଛି ମୋ ହାତେ ତୋ ହତ
ରାମ କୃଷ୍ଣେ ହରାଇଛିଁ ବୋଲି ଗର୍ବ କିପାଁ
ବଳବନ୍ତ ପଣେ ରେ ପେଷିଛି କାଳ ମୋତେ
ଆଉ କି ଜୀବନେ ଯାଇ ଭେଟିବୁ କୁଟୁମ୍ବ
ଜାଣି ନାହୁଁ କିରେ ଗର୍ବୀ ଉର୍ବୀ ଭାରୋନାଶେ
ଜନମ ମୋହର ମୁଁ ସେ ବୃକୋଦର ଜେନା
ସମ୍ଭାଳ ସମ୍ଭାଳ ବଜ୍ରମୁଷ୍ଟିରେ ପାପିଷ୍ଠ
ଅଶନି ସମାନ ଶିର କରିଦେବ ଚୂର
ଆରେ ଜରା ଧରାକୁ ତୁ ମଣି ସରା ପରା
ତେଣୁ ଅତି ଦର୍ପେ ମାତି ହିଂସା କର୍ମ କରୁ
ଅତି ଦର୍ପେ ହତା ଲଙ୍କା ଜଣା କି ତୋ ନାହିଁ
ବଳିଦେବି ଭାଳି ନୃପେ ରଖିଅଛୁ ବାନ୍ଧି
କରିବିରେ କାରାଗାର ତୋର ଶୂନ୍ୟ ଆଜି
ତୋତେ ମାରି ମରଣୁ ଉଦ୍ଧାରି ନୃପୟେ
ତୋ ମିତ୍ର କାଳଦମନ ବଜ୍ରନାଭ ଆଦି
ନୋହିବେ ସାହାରେ କେହି ତୋ ମହାପ୍ରୟାଣେ
ସ୍ମର ଆରେ ଜରା ତୋର ବନ୍ଧୁ ଇଷ୍ଟମିତ୍ର
ସଂଜୀବନୀନାଥ ତୋର ପୋଛିଲାଣି ପାଞ୍ଜୀ
ମଣିଛୁ କି ମୋତେ ଜରା ଭିକ୍ଷାଶୀ ବ୍ରାହ୍ମଣ
ତୋତେ ନାଶିବାକୁରେ ଆସିଛିଁ ଦ୍ୱିତିଯମ
ନୁହଇଁ ମୁଁ ଛାଗଳରେ ଜରା ମତିଭୋଳ
ଅଥବା ନୁହଇଁ ମେଷ ମହିଷ ମନୁଷ୍ୟ
ଅଥବା ନୁହଇଁ ମୁଁରେ ବନ୍ଦୀ ନରପତି
ଶକ୍ତିନାମେ ଭଣ୍ଡଶାକ୍ତ ! କାଟିବୁରେ ମାଥ
ଜାଣୁନା ବ୍ରାହ୍ମଣଶକ୍ତି ଭ୍ରୂଭଙ୍ଗ ମାତ୍ରକେ
ନାଶନ୍ତିରେ ମହାପରାକ୍ରମୀ ନୃପଚୟ

ଜାଣି ନାହୁଁ କିରେ ଜରା ପର୍ଶୁପାଣି କଥା
ଅଗସ୍ତ୍ୟ, ଭୃଗୁ, ବଶିଷ୍ଠ, ଗୌତମ, ବିକ୍ରମ
ଏତେ ଭାଷି ଭୀଷ୍ମ ରୂପେ ନୟନତରାଟି
ଡାକିଲା କେ ଅଛ, ଆସି ରଖ ଏ ଜରାକୁ
ଦେଖାଇ ଏଠାବେ ନିଜ ତେଜ ନିଜ ବୀର୍ଯ୍ୟ
ଶୁଣି ଭୟେ ଯାଗଶାଳ ସ୍ଥିତ ଜନଜାଳ
ପଳାଇଲେ ତ୍ରସ୍ତବ୍ୟସ୍ତେ ଭୀମନେତ୍ର ଚାହିଁ
ତହୁଁ ଊର୍ଦ୍ଧ୍ୱେ ଦୃଷ୍ଟିଦେଇ କହଇ ଏଗୀର
ଆହେ ଇନ୍ଦ୍ର ଚନ୍ଦ୍ର ରବି ଗ୍ରହ ଦିଗପାଳ
ଆହେ ଯକ୍ଷ ଗନ୍ଧର୍ବ କିନ୍ନର ବିଦ୍ୟାଧର
ପାର ଯେବେ ରଖ ଆସି ଜରାକୁ ସମରେ
ତହୁଁ ଚାହିଁ ଅଧୋଦେଶେ ଭୀମନାଦ ଘୋଷି
ଡାକିଲା ସେ ନାଗଲୋକେ ପରକାଶି ରାଗ
ଆହେ ପୃଥ୍ୱୀ ଭାରାଧର ନାଗେଶ ବାସୁକୀ
ପାର ଯେବେ ରଖଆସି ଜରାକୁ ସମରେ
ମାରୁଅଛିଁ ମୁଁ ମାରୁତି ଅରାତିଅନ୍ତକ,
ଭଣ୍ଡଶାକ୍ତ ହିଂସାସକ୍ତ ମନ୍ଦ ଜରାସନ୍ଧେ,
ତହୁଁ ଜରାବୀରେ ଭାଷିଲା ସେ ମହାବୀର
ଆରେ ଜରା କେହି ନୋହିଲେରେ ତୋ ରକ୍ଷକ
ସ୍ମର ଇଷ୍ଟଦେବ ଏବେ ନାହିଁ ଅବସର
ଆସିଲାଣି ନିମନ୍ତ୍ରଣ ଶମନ ସଦନୁ
ଏତେ କହି କୋପ ବହି ହୁଂକାର ଶବଦେ
ପ୍ରହାରିଲା ବଜ୍ରମୁଠ ଜରାସନ୍ଧ ମାଥେ
ଧନ୍ୟ ତା ବିକ୍ରମ ଭୀମ ତେତେ ବଡ଼ ମାଡ଼େ
ନୋହିଲା ନିହତ ଜରାସନ୍ଧ ବଳବନ୍ତ
ଚାହିଁ ଭୀମ ବହି ତମ ଦନ୍ତେ ଓଷ୍ଠଦଂଶି
ପୁଣି ବେନି ମୁଠ ମାଥେ ମାରେ ବଜ୍ରଜାଣି
ତଥାପି ସେ ଅଚେତ ବା ନିହତ ନୋହିଲା

ବହିଲା ରକତ ମାତ୍ର ମସ୍ତକୁଁ ତା ଧୀରେ
ତେଣୁ ଭାନୁକୁ ସ୍ୱର୍ଭାନୁ ଗ୍ରାସିବା ସଂଜାତ
ଆକ୍ରମି ବିକ୍ରମେ ପୁଣି ହୃଦ ବିଦାରିଲା
ତେବେହେଁ ନୁହନ୍ତେ ଅନ୍ତ ଶ୍ରାନ୍ତ ହୋଇ ଭୀମ
ଶତଶୃଙ୍ଗ ପର୍ବତ ଚିନ୍ତିଲା ଅନ୍ତର୍ଗତେ
ଏକୋଉର ଶତସିଂହ ଶକ୍ତି ହେଉଁ ଜାତ
ବୃକୋଦର ମୂର୍ତ୍ତି ଭୀମ ବହିଲା ସ୍ୱଦେହେ
ମେରୁଖଣ୍ଡ ଜାଣି ପିଣ୍ଡ ନବତାଳ ଉଚ୍ଚ
ଘୋର ନେତ୍ର ବକ୍ର ପୁଣି ନଭେ ସ୍ପର୍ଶେ ଶିର
ନିଃଶ୍ୱାସେ ବହଇ ଝଡ଼ ଦନ୍ତ କଡ଼ମଡ଼
ତହୁଁ ରେରେକାର ରବେ କରି ଘୋର ଧ୍ୱନି
କମ୍ପାଇଲା ତ୍ରିଦିବ ଅବନୀ ନାଗଲୋକ
ପୁନଃ ମୁଷ୍ଟି ଉର୍ଦ୍ଧ୍ୱେ ତୋଳି ମହାକ୍ରୋଧେ ଜ୍ୱଳି
ମାରୁଁ ହୃଦେ ବଧ ଶଧେ ନୁହେ କିଛି ବାଧା
ତେଣୁ ଜରା ପରାକ୍ରମ ଚାହିଁ ଭୀମବୀର
ପ୍ରଶଂସେ ଜରାକୁ ଏହି ଭାଷାରାଶି କହି
ମୋ ମୁଷ୍ଟି ଆଘାତ ସହୁ ଧନ୍ୟ ତୁହିଁ ଜରା
ସହି ନ ପାରନ୍ତି ଯାକୁ ଚରାଚରେ କେହି.
ଏତେ ଭାଷି ପୁଣି ରୋଷି ଆକର୍ଷି ତା ପିଣ୍ଡ
ଖଣ୍ଡ ଖଣ୍ଡି କଲା ନଖେ ପ୍ରଚଣ୍ଡ ଆରବେ
ବିଦାରେ ହର୍ଯ୍ୟକ୍ଷ ମର୍ଥା ମହୋକ୍ଷର ବକ୍ଷ
ତେବେ ମଧ୍ୟ ନୋହୁଁ ବଧ ବୀର ଜରାସନ୍ଧ
ଖେଦ ଜାତ ହେଲା ବୃକୋଦର ହୃଦଗତେ
ମନେ ପାଞ୍ଚିଲେ ଏହାକୁ ବଞ୍ଚାଇବି ଆଜ
ହିଂସା ଧର୍ମ ସଞ୍ଚି କରୁ ଚରାଚର ଧ୍ୱଂସ
ଜାଣି ଭୀମ ମନୋରଥ ପାର୍ଥ ମହାରଥ
ବିଭାଷିଲେ ହୃଷୀକେଶେ ବିନୟେ ଏଭାବେ
ହେ ପାଣ୍ଡବଗତି କୃଷ୍ଣ ! ପାଣ୍ଡବଜୀବିତ

ପାଣ୍ଡବ ସପକ୍ଷବାନା ଉଡ଼ାଇଛ ବିଶ୍ୱେ
ଡେଙ୍ଗୁଛ କି କୃପା ଏବେ କୃପାଅକୂପାର
ନ ସ୍ମରାଇ ଭୀମହୃଦେ ଜରା ମୃତ୍ୟୁ ଭେଦ
ଯୁଦ୍ଧେ ମତ୍ତଭୋଳ ହୋଇ ଭୀମ ଭୀମବାହୁ
ଭୋଲାନାଥ କଥା ଭୁଲି ଅଛନ୍ତି ସର୍ବଥା
ଶୁଣି କିରୀଟିଙ୍କ ବାଣୀ କୃଷ୍ଣ ଅଟେ ହସି
ତାଳି ପିଟି ଝଟିତି ଆକର୍ଷି ଭୀମଦୃଷ୍ଟି
ପୋଛା ଖଣ୍ଡ ସ୍କନ୍ଧୁଁ କାଢ଼ି ଖଣ୍ଡନ୍ତେ ଦ୍ୱିଖଣ୍ଡେ
ଚାଣ୍ଡେ ସ୍ମୃତ ହେଲା ଭୀମେ ଭୀମବାକ୍ୟ ଗୋଟି
ତହୁଁ ଘୋରନାଦ କରି ଜରା ବେନିପାଦ
ଧରନ୍ତେ ଜଣିଲା ଜରା ନିଜର ମରଣ
ଜ୍ଞାନ-ଭାନୁ ପ୍ରସରନ୍ତେ ହୃଦୟ-କନ୍ଦରେ
ବିନୀତ ଉକ୍ତିରେ କୃଷ୍ଣେ ସ୍ତବିଲା ଏ ଭାବେ
ହେ ଅଗତିଗତି ନାଥ ଇଷ୍ଟବର ଦାତା
ଜଗତକରତା, ପିତା, ମାତା, ବନ୍ଧୁ, ଗୁରୁ,
ମୁଁ ଦୁଷ୍ଟ ପାପିଷ୍ଠ ଅଷ୍ଟାଦଶ ବାର ଯୁଦ୍ଧେ
ବହୁକଷ୍ଟ ଦେଇଅଛି ରୁଷ୍ଟଭାବ ବହି
ତଥାପି ହେ ଚକ୍ରୀ ! ଚକ୍ରେ ନ ଛେଦି ମୋ ଶିର
କ୍ଷେମେ ରଖିଅଛ ମୋତେ କ୍ଷମାକୁ ଆଚରି
ତବ ଚକ୍ରେ ବଧଶଧ କରିଥିଲି ମୁହିଁ
ଲଭିବି ଦୁର୍ଲ୍ଲଭି ଗତି ବୋଲି ଯଦୁପତି !
ପୂର୍ବ ଦୋଷ ବଶେ କିସେ ମୋ ନାଶ ସକାଶେ
କୂଟ ବେଶେ ଆସିଅଛ ଜୟ ଆଶା ପୋଷି,
ଆନ ହାତେ ନିହତ ନ କରାଇ ସ୍ୱ ହାତେ
ଅରି ମାରି ଖଣ୍ଡ ମୁଣ୍ଡ, ବ୍ରହ୍ମାଣ୍ଡ-ଗୋସାଇଁ !
ଯେସନେ ନ ଦିଏ ଦଣ୍ଡ କାଳଦଣ୍ଡଧର
ତେସନେ ଦିଅ ହେ ଗତି ପତିତପାବନ !
ଏ ଭାବେ ସ୍ତବି ସେ ନେତ୍ରୁଁ ଅଶ୍ରୁ ବରଷାଇ

କହିଲା ବିନୟେ କେତେମତେ ଭାଷାରାଶି
ମାତ୍ର କୃଷ୍ଣ ତହିଁକି ନ କରି କର୍ଣ୍ଣପାତ
କହିଲେ ସେ ଭୀମେ, ତମେ କି ଚାହୁଁ ମାରୁତି !
ବେନି ଫାଳେ ଚିରି ମାର ଏଦୁଷ୍ଟକୁ ଚାଣ୍ଡେ
ବ୍ରହ୍ମାଣ୍ଡେ ନାହିଁରେ ଏହା ସମେ ପାପୀନୃପ
କୃଷ୍ଣାଦେଶେ ରୋଷି ଭୀମ ଏକପାଦ ଧରି
ଅପର ପୟର ମାଡ଼ି ତହିଁ ହେଲା ଛିଡ଼ା
ନୃସିଂହ ପରାଏ ରାଗେ ଗର୍ଜି ଭୀମନାଦେ
ଅଚିରେ ଚିରିଲା ତାକୁ ବେନିଫାଳ କରି
ବଂଶ ଦଣ୍ଡ ଚିରେ ଯଥା ଗୃହୀ ଅନାୟାସେ
ଶୁଭିଲା ପ୍ରଚଣ୍ଡ ଶବ୍ଦ କଡ଼ କଡ଼ ନାଦେ;
କୃଷ୍ଣମୁଖ ଦେଖି ମରିବାରୁ ସ୍ୱଦୁଷ୍କୃତ
ନାଶି ସ୍ୱର୍ଗବାସୀ ହେଲା ସ୍ୱକୀୟ ସ୍ୱରୂପେ
ତହୁଁ ଏକଖଣ୍ଡ ଧରି ଘୂରାଇ ପ୍ରଚଣ୍ଡେ
ଫିଙ୍ଗନ୍ତେ ପଡ଼ିଲା ଯାଇ ମହାବ୍ଧିର ମଧ୍ୟେ
ଆର ଖଣ୍ଡ ଭ୍ରମାଇ ଫିଙ୍ଗନ୍ତେ ଊର୍ଦ୍ଧ୍ୱଦେଶେ
ରହିଲା ଆକାଶେ ବହି ଖେଚର ସ୍ୱରୂପ
କିଂଶୁକ କୁସୁମ ସମ ବ୍ୟୋମୁଁ ବର୍ଷେ ରକ୍ତ
ରକ୍ତାକ୍ତ ମାରୁତି ଗାତ୍ର ମାତ୍ର ତୃପ୍ତମତି
ଜରାହତ ହେଉଁ ଶକ୍ତି ଭୀମ ଦେହୁଁ ଖସି
ସ୍ୱର୍ଗିମାନେ ବସି ଗମେ ସ୍ୱଧାମ କୈଳାସେ
ବିଦ୍ୟୁତପ୍ରଭା ପ୍ରକାଶି ବିଦ୍ୟୁତର ବେଗେ
ସ୍ୱାର୍ଥ ଅର୍ଥେ ପରପ୍ରାଣ କରେ ଯେ ପୀଡ଼ନ
ଜାଣ ମରଣ ବରଣ କରଇ ସେ ନର
ଏଅନ୍ତେ ମରଣ ବାର୍ତ୍ତା ବାର୍ତ୍ତାବହ-ବ୍ୟୁହ
ରଣ ବାର୍ତ୍ତା ସହ ନିବେଦନ୍ତେ ସହଦେବେ
ପିଅର ମରଣ ଶୁଣି ଯୁଦ୍ଧେ କଲା ବାଞ୍ଛା
କରି ନ ପାରି ସେ ହୃଦେ କ୍ରୋଧ ସମ୍ବରଣ

ତ୍ରୟୋବିଂଶ ଅକ୍ଷୌହିଣୀ ସ୍ୱବାହିନୀ ସାଜି
ବାହିଲା ରଣପ୍ରାଙ୍ଗଣେ ବିପ୍ର ତ୍ରୟ ଯହିଁ
ଦଲ ଦଲ କମ୍ପେ ମହୀ ସୈନ୍ୟ ପଦାଘାତେ
ଆବର ସମର ବାଦ୍ୟନାଦ ଘୋରଯୋଗେ;
ବାହାରନ୍ତି ଗଜବାଜୀ ରଥ ପତ୍ତିପନ୍ତି
ଯୁଦ୍ଧ ବେଶେ ସାଜି ରଙ୍ଗେ ଆଚ୍ଛାଦି ଆକାଶ
ଯୋଦ୍ଧା ମହାଯୋଦ୍ଧା ପୁଣି ମଲ୍ଲ ମହାମଲ୍ଲ
ରଥୀ ରାଉତ ମାହୁନ୍ତ ପଦାତିକ ତୁଲେ
ଶୁଭେ ଧନୁର ଝଙ୍କାର ଶସ୍ତ୍ର ଝଣତ୍କାର
ମାତଙ୍ଗ ବୃଂହିତ ପୁଣି ଅଶ୍ୱ ହ୍ରେଷାରବ
ଝଲକେ ଫଳକରାଶି ଝମକେ କବଚ
ଝପଟେ ଘୋଟକ ଅସି କରେ ଝକଝକ
ଚାହିଁ ଭୀମ ବହି ତମ ଗରଜି ପ୍ରଚଣ୍ଡେ
ଧାଇଁ ଯାଇ ଭୁଜଦଣ୍ଡେ ମନ୍ଥେ ସୈନ୍ୟପିଣ୍ଡ
ରଥେ ରଥ ଗଜେ ଗଜ ଅଶ୍ୱେ ଅଶ୍ୱ କରି
କଚାଡ଼ନ୍ତେ ବଳେ ଧରି ଛିଡ଼େ ହାତ ଗୋଡ଼
ଚପେଟ ଗଳଥା ମୁଥ କଫୋଣିକା ମାତେ
ଗଡ଼ାଏ ସେ ପୁଣି ଯୁଦ୍ଧେ ବହୁ ଯୋଦ୍ଧା ତଳେ
ଯେହ୍ନେ ମତ୍ତହସ୍ତୀ ଆସି ଧ୍ୱଂସେ ପଦ୍ମବନ
ବ୍ୟକତ ରକତ ସ୍ରୋତ ଭାସିଯାନ୍ତି ଶବ
ପଳାନ୍ତି ଜୀବିତ ସୈନ୍ୟସର୍ବ ଗ୍ରହି ରବେ
ଗୋଡ଼ାଇ ମାରନ୍ତେ ଭୀମ ଉପରୋଧ ଛାଡ଼ି
ପଡ଼ିଲେ ବିରାଟ ସୈନ୍ୟ ଧରାତଳେ ଲୋଟି
ବ୍ୟୂହ ଭଙ୍ଗ ହେଉଁସୈନ୍ୟ, ସହଦେବେ ଭେଟି
ବାହୁଦଣ୍ଡ ପିଟି ତା ରଥଟି ଖଣ୍ଡକଲେ
ରୋଷେ ତା କେଶ ଆକର୍ଷି ଉଠାନ୍ତେ ସ୍ୱମୁଷ୍ଟି
ଦୃଷ୍ଟି ପଡ଼ୁଁ କୃଷ୍ଣ ଧାଇଁ ରୋଧିଲେ ସେ ଭୀମେ
କହିଲେ ଆରେ ମାରୁତି ଏହାକୁ ତ୍ୟକତ

ନତୁ କାର୍ଯ୍ୟ ଉଚ୍ଚ ନୋହିବରେ ଏହାଯୋଗୁଁ
ଲକ୍ଷେ ରାଜା ନାହାନ୍ତି ତ ଧରଣୀର ବକ୍ଷେ
ଏହାକୁ ନାଶିଲେ କାହୁଁ ପାଇବା ନରେଶେ
ହୃଷୀକେଶ ଭାଷେ କେଶ ଛାଡ଼ୁଁ ଭୀମସେନ
ତାକୁ ଭୁଜାନ୍ତରେ ଆଣି ପ୍ରଭୁ ଚକ୍ରପାଣି
ଦେଖାନ୍ତେ ନିଜର ଚତୁର୍ଭୁଜ ଦେବମୂର୍ତ୍ତି
ଚମତ୍କୃତ ଚିତ୍ତ ଭଜେ ଚାହିଁ ସହଦେବ
ସିଂହଗ୍ରସ୍ତ ମୃଗତ୍ରସ୍ତ ଯଥା ସିଂହେ ଚାହିଁ
ତେଣୁ କୃଷ୍ଣ ପଦେ ନମି ବିନୀତ ଭକ୍ତିରେ
ଭକ୍ତିବିବଶ ମାନସେ ଆରମ୍ଭିଲା ସ୍ତୁତି
ଆହେ ମହାବାହୋ ! କ୍ଷମ ମୋ ଦୋଷନିବହ
ସ୍ୱଭାବେ କ୍ଷମାସାଗର ଭାବଗ୍ରାହୀ ଯେଣୁ
ହୋଇଲି କ୍ରୋଡ଼ଭାଜନ ନ ଜାଣି ମୁଁ ମୂଢ଼
କେଡ଼େ ଦ୍ରୋହକାରୀ ଦେହ ବହିଲି ଭୋନାଥ !
ତୁମ୍ଭର ଶ୍ରୀପଦଦ୍ରୋହୀ ହୋଇ ମୋର ପିତା
ମରଣ ବରଣ କଲେ ଘୋରାପଦ ଭୁଞ୍ଜି
ତେଣୁ ହୁଏ ଭୟ ମୋର ହେ ଅଭୟଦାତା !
ତ୍ରାହି କର ତହୁଁ ବାରେ ଶ୍ରୀପଦ ଦ୍ରୋହିକି
ସୁମତି କୁମାର ଉକ୍ତି ଶୁଣି ଯଦୁପତି
ଉତ୍ତରିଲେ ତାର ପ୍ରତି ସୁଧାବୋଳା ଗୀରେ
ହୁଅ, ତୁଁ ନିର୍ଭୟ ବାଳ ! ହୋଇବୁ ଭୂପାଳ
ସାଧ ଆଗେ ପିତୃକାର୍ଯ୍ୟ ନ ଭଜି ବିରାଗ
କୃଷ୍ଣାଦେଶେ ବାସେ ଯାଇ ଶବର ଅଭାବେ
ଭିଆଇ ଅଦଭ୍ରଦର୍ଭେ ପୁତ୍ତଳିକା ଏକ
ପୁରୋଧା ସହ ବିଧିରେ ଶ୍ମଶାନେ ତା ଦହି
ଶେଷୁଁ ସେ ଅନ୍ତ୍ୟେଷ୍ଟିକ୍ରିୟା ଦ୍ୱାଦଶ ଦିବସେ
ତହୁଁ କୃଷ୍ଣ ଭୀମାର୍ଜୁନ ତିନିଜଣ ମିଳି
କଲେ ଅଭିଷେକ ମଗଧର ଧରାଧବେ

ବନ୍ଦୀ ଭୂପବୃନ୍ଦ ମୁକ୍ତ କରାଇ ବନ୍ଧନୁ
ମହାନନ୍ଦେ ବାହୁଡ଼ିଲେ ନିଜ ରାଜଧାନୀ;
ହେ କୃଷ୍ଣ ନବନୀରଦ ନିନ୍ଦିତ ସୁଗାତ୍ର
ପୀତପଟ କଟିତଟ ଘଟାନଟରାଟ
ବର୍ହୀ ବର୍ହ ଉତ୍ତଂସକ କଂସ ଧ୍ୱଂସକାରୀ
ବରଜ ପୁରାଭିରାମ ରାମ ଅବରଜ
ବଲ୍ଲବ ବଲ୍ଲଭୀ ଚିତ୍ତବିତ୍ତ ଚୋରୀକରା
କାଳିନ୍ଦୀକୂଳ କଦମ୍ବମୂଳ ବିନୋଦିୟା
ଅରି ଦର ଗଦା ପଦ୍ମଧର ଚତୁର୍ଭୁଜ
କିରୀଟ କୁଣ୍ଡଳ ହାର କେୟୂର ମଣ୍ଡିତ
ଗ୍ରାହ ନିଗ୍ରହ କାରକ କରୀ ନିସ୍ତାରକ
ନରକଅକ ଭଞ୍ଜନ ନରକଗଞ୍ଜନ
ଅଘଓଡ଼ା ଛାଗ ସଂଘାତକ ଶ୍ଲାଘ୍ୟ ବାଘ
ପୂର୍ବଦେବ ନିସୂଦନ ଦେବ ପ୍ରମୋଦନ
ସୁମନମନମାନସସର କେଳି ହଂସ
ଭବଅକୂପାର ପାରିକରା କର୍ଣ୍ଣଧାର
ସ୍ୱଭାବେ ଦୀନବାନ୍ଧବ ଆର୍ତ୍ତତ୍ରାଣ ହୋଇ
ନ ତାରିବ ଏଦୀନାର୍ତ୍ତେ କିପାଁ ଭବତାପୁଁ
ବୃନ୍ଦାରକବୃନ୍ଦ ବନ୍ଦ୍ୟ ଯେ ପଦାରବିନ୍ଦ
ତଦାଶ୍ରୟୀ ସଦାଯେଣୁ ମିଶ୍ର-ହରିହର
ଶମ୍ଭୁକର ଭରଦ୍ୱାଜ ଗୋତ୍ରୋତ୍ପନ୍ନ ଗାତ୍ର
ତାଳଶ୍ରୀଗିଡ଼ାଖ୍ୟା ବସତି ଯା ବାସସ୍ଥଳୀ
ଦନ୍ତିକା ସ୍ରବନ୍ତୀ ତଟବର୍ତ୍ତୀ ଅଟେ ଯେବା
ବ୍ରହ୍ମଣ୍ୟ ବ୍ରାହ୍ମଣଗଣ ବସେ ଯାର ଉରେ

——

# ଗ୍ରନ୍ଥ ସୂଚନା

ପ୍ରଥମ ସର୍ଗ : ସ୍ୱର୍ଗସନ୍ତ ବର୍ଣ୍ଣବ ଅର୍ଥାତ୍ ନନ୍ଦନକାନନସ୍ଥ ଦେବତର୍ଥାଦି ସହ ଅନ୍ୟାନ୍ୟ ସ୍ୱର୍ଗୀୟ ତରୁଲତା, ଜୀବଜନ୍ତୁଗଣର ବିବରଣ, ସେଥି ସଙ୍ଗେ ସୁରପୁରବାସୀର ସ୍ତ୍ରୀପୁରୁଷମାନଙ୍କର ଭୟର ବିଳାସ ରତ୍ନକୁଟଗିରି ଓ ସ୍ୱର୍ଗକ୍ଷାର ବିବରଣ, ଦିଗ୍ଗଜଗଣଙ୍କର ଜଳକ୍ରୀଡ଼ା ଆଦି ବର୍ଣ୍ଣିତ ।

ଦ୍ୱିତୀୟ ସର୍ଗ : ଅମରାବତୀପୁର ଓ ସୁଧର୍ମା ସଭାର ବିଷୟ, ଇନ୍ଦ୍ରଙ୍କ ବସନ୍ତୋତ୍ସବ ଯାତ୍ରାନୁଷ୍ଠାନର ବିବରଣ, ଭଗବାନ ଭୃଗୁ ଋଷିଙ୍କ ଦ୍ୱାରା ତ୍ରିଦେବ ପରୀକ୍ଷା କରଣ, ତତ୍ସଙ୍ଗେ ବ୍ରହ୍ମା ମହେଶ ଓ ବିଷ୍ଣୁଙ୍କର ପୁର ଓ ରୂପ ବର୍ଣ୍ଣନ, ବିଷ୍ଣୁଙ୍କୁ ଶ୍ରୀବାସ ଚିହ୍ନଧାରଣ ଆଦି କଥାର ବର୍ଣ୍ଣନ ।

ତୃତୀୟ ସର୍ଗ : ଆମନ୍ତ୍ରିତ ବିଭିନ୍ନ ଦେବଦେବୀଙ୍କ ସୁଧର୍ମା ସଭା ପ୍ରବେଶ, ତ୍ରିଦେବଙ୍କ ଆଗମନ, ବିଷ୍ଣୁ ଦମ୍ପତିଙ୍କର ଷୋଡ଼ଶୋପଚାର ପୂଜାର ବିଷୟ, ଚିତ୍ରରେଖା ଅପସରା ଲାଭାର୍ଥେ କମୁଗ୍ରିତା ଓ ମିତ୍ରତ୍ରୟର ସହାୟତା, ଜୟସେନର ମୋହିନୀ ରୂପଧାରଣ, ମଧୁସ୍ୱରୀବୀଣା ଓ ତାଣ୍ଡବନୃତ୍ୟ–ଠାରୁ ମିତ୍ରତ୍ରୟର ସହ ବିଚିତ୍ର ରଥରେ ଶାପ ଇଭାନ ବର୍ଣ୍ଣିତ ।

ଚତୁର୍ଥ ସର୍ଗ : ମଗଧ ଓ ତାର ରାଜଧାନୀ ଗିରିବ୍ରଜପୁରର କଥା, ରାଜା ବୃହଦ୍ରଥଙ୍କ ରାଜତ୍ୱ, ପୁତ୍ରଭାବେ ତାଙ୍କର ବଦରିକାଶ୍ରମରେ ତପସ୍ୟା, ଜରାରାକ୍ଷସୀର ବିବରଣ, ଦୁର୍ବାସାଙ୍କ ବରଦାନରେ ବୃହଦ୍ରଥଙ୍କ ସନ୍ତାନ ଲାଭ ଅର୍ଥାତ୍ ଜରାସନ୍ଧ ଜନ୍ମ ଓ ଜରାରାକ୍ଷସୀର ନିଧନ ଆଦି ବର୍ଣ୍ଣିତ ।

ପଞ୍ଚମ ସର୍ଗ : ଜରାସନ୍ଧର ବାଲ୍ୟଜୀବନ ଓ ରାଜାହେବା କଥା, ଚନ୍ଦ୍ରଚୂଡ଼ ଗିରିବାସିନୀ ଭୈରବୀ ଦେବୀଙ୍କ ପୂଜା, ତାଙ୍କଠାରୁ ଗଦାଖଡ୍ଗ ପ୍ରାପ୍ତି, ନାବକେଳି ଯୋଗେ ଖଣ୍ଡ ଓ ଶାଲ୍ମଳୀତରୁ ପ୍ରାପ୍ତି ପୂର୍ବକ ସ୍ୱଗୃହ ଦ୍ୱାରରେ ସ୍ଥାପନ, ମୃଗୟା ଯାତ୍ରା ଓ ତତ୍ସଙ୍ଗେ ଭେରୀ ପ୍ରାପ୍ତି ପୂର୍ବକ ସ୍ୱପୁର ଦ୍ୱାରରେ ସ୍ଥାପନ, ନରବଳି ଅନ୍ୱେଷାଣାର୍ଥେ ଚାର ପ୍ରେରଣ, ଋଷିପୁତ୍ର ରୋଚିସଙ୍କ କାରାବାସ କଥା ଆଦି ବର୍ଣ୍ଣିତ ।

ଷଷ୍ଠ ସର୍ଗ : ଜରାସନ୍ଧ ହିଂସା କର୍ମରେ ରୋଚିସଙ୍କ ଆକ୍ଷେପ, ବନ୍ଦୀ ରହି ବଳିର୍ଗତ ରୋଚିସ ଦେବୀ ସହ ସାକ୍ଷାତ୍ ଓ ପ୍ରିୟପାତ୍ର ସେବା, ଦେବୀପ୍ରତି ବଳି ଭକ୍ଷଣ ଦୋଷାରୋପଣେ ଦେବୀ ତାଙ୍କୁ କର୍ମ ପଦିକା ଦର୍ଶନାର୍ଥ ସଂଜୀବନିପୁର ଯିବାର ଆଦେଶ, ତନ୍ନିବନ୍ଧନ ରୋଚିସଙ୍କୁ ଜୟନ୍ତକ

ମଣି ଓ ଯବାନ୍ତକ ଛୁରୀ ଏବଂ ଦେବଦେହ ପ୍ରଦାନ, ଭୈରବୀ ଦେବୀଙ୍କ ମଣି ଓ ଛୁରୀ ପ୍ରାପ୍ତିର ପ୍ରଶ୍ନ ଯହିଁରେ ଇନ୍ଦ୍ରଙ୍କ ସହସ୍ର ଚକ୍ଷୁ ଧାରଣ, ମଣିପ୍ରାପ୍ତି ଓ ଅପହୃତିର କଥା, ଯବାଘ୍ନଷ ରାକ୍ଷସର ତପସ୍ୟା ଓ ବରଲାଭ, ତ୍ରିଦିନ ଉତ୍ପୀଡ଼ନ, ଆଦ୍ୟାଶକ୍ତିଙ୍କର ଛୁରୀପ୍ରାପ୍ତି, ଯବାଘ୍ନଷର ମୃଗୟା, ଶକ୍ତିଙ୍କର ରୂପଧାରଣ ଓ ରକ୍ଷୋରରେ ନିବାସ ଆଦି ବର୍ଣ୍ଣିତ ।

ସପ୍ତମ ସର୍ଗ : ଯବାଘ୍ନଷ ରାକ୍ଷସର ସ୍ୱର୍ଗରାଜ୍ୟ ପୁନରାକ୍ରମଣ, ଦେବବୃନ୍ଦ ସହ ତୁମୁଳ ଯୁଦ୍ଧରେ ତାର ସେନାର ନିଧନ ଓ ଅନ୍ତେ ଜାଳାବଗ କର୍ତ୍ତୃକ ତାହାର ନିଧନ ଆଦି ବର୍ଣ୍ଣିତ ।

ଅଷ୍ଟମ ସର୍ଗ : ଦେବ୍ୟାଦେଶେ ପଞ୍ଜିକାଦର୍ଶନାର୍ଥ ଦକ୍ଷିଣ ଦିଗନ୍ତ ମାର୍ଗଦୃଶ୍ୟ, ଦକ୍ଷୀଣକାଳୀ ଠାରୁ ବିଭୂତି ଓ ଅଞ୍ଜନ ଲାଭ, ବୈତରଣୀନଦୀ ଦର୍ଶନ, ସଂଜୀବନିପୁରେ ପ୍ରବେଶ ଓ ଯମରାଜଙ୍କ ସହିତ ସାକ୍ଷାତ୍, ଚିତ୍ରଗୁପ୍ତ କର୍ତ୍ତୃକ ପଞ୍ଜିକାଦର୍ଶନ, ସାମଦତ୍ତଙ୍କ ସହଚର ଅନୁଚର । ମାନବ ବିବରଣୀ । ନିଷ୍କୟ କୁଣ୍ଡମାନଙ୍କର ବିବରଣ ଆଦି ବର୍ଣ୍ଣିତ ।

ନବମ ସର୍ଗ : ରୋଚିସଙ୍କ ସ୍ୱର୍ଗମନ, ମାର୍ଗଦୃଶ୍ୟ, ଦେବଦୂତଦର୍ଶନ, ଇନ୍ଦ୍ରଙ୍କ ସହ ସାକ୍ଷାତ୍ ଓ ନିବେଦନ, ଶକ୍ରାଦେଶେ । ନାରଦଙ୍କ ମର୍ତ୍ତ୍ୟପୁରେ ଆଗମନ, ଇନ୍ଦ୍ରହେବା ସକାଶେ ଜରାସନ୍ଧଙ୍କ ନୃପମେଧ ଯଜ୍ଞ ଓ ବଳିଦାନର ଅନୁଷ୍ଠାନ ପାଇଁ ଉତ୍ତେଜନା, ତନ୍ନିବନ୍ଧନ ଭୈରବୀଦେବୀଙ୍କ ପାଶରୁ ପାଶ ଆନୟନରେ ଉପଦେଶଦାନ, ଜରାସନ୍ଧଙ୍କ ଦିଗ୍‌ବିଜୟ, ଷର୍ଣ୍ଣବତି ସହସ୍ରନରେଶ ବନ୍ଦୀକରଣ ଆଦି ବିଷୟ ବର୍ଣ୍ଣିତ ।

ଦଶମ ସର୍ଗ : ନାରଦଙ୍କ ମଥୁରା ପ୍ରବେଶ, ପତିପୁତ୍ରବିଧୁରା କଂସ ମହିଷୀ ହେତି ପ୍ରହେତିଙ୍କୁ ସାନ୍ତ୍ୱନାଦାନ ଓ ବୈରୀସାଧନାର୍ଥ ଉତ୍ତେଜନା, ଉଭୟେ ପିତା ଜରାସନ୍ଧଙ୍କ ଠାରେ ଆତ୍ମ ଦୁଃଖ ନିବେଦନ, ତନ୍ନିବନ୍ଧନ ଷଣ୍ଣବତି ସହସ୍ର ନରେଶ ସହ ମଥୁରା ଅଭିଯାନ, ଛଳନାପୂର୍ବକ ରାମକୃଷ୍ଣଙ୍କ ବିଭିନ୍ନ ସ୍ଥାନକୁ ପଳାୟନ ଓ ଶତ୍ରୁସୈନ୍ୟର ନିଧନ ସାଧନ, ଭାନୁମତୀ ନଦୀରେ ସମ୍ମିଳିତ ସେନାର ଦହନ, ଯାଦବ ପ୍ରତି କୃଷ୍ଣଙ୍କର ଉତ୍ସାହବାକ୍ୟ, ଯାଦବଗଣଙ୍କ ଯୁଦ୍ଧଜୟ, ରାମକୃଷ୍ଣଙ୍କର କୈତବ ପଳାୟନ, ବନ-ପର୍ବତ ନଦୀ ଓ ପ୍ରାନ୍ତର ଆଦିର ବର୍ଣ୍ଣନା ।

ଏକାଦଶ ସର୍ଗ : ବାଣା ଦାରକା ବଜ୍ରନାଭ ଆଦି ମିତ୍ରରାଜାଗଣଙ୍କୁ ଆନୟନ, ବଜ୍ରନାଭ ସେନାପତିତ୍ୱରେ ମଥୁରା ଅଭିଯାନ, ଯମୁନାନଦୀ ବୃଦ୍ଧିରେ ସମ୍ମିଳିତ

ସେନାର ନିମଜ୍ଜନ, ବଜ୍ରନାଭ ଅଭିମାନରେ ରାମକୃଷ୍ଣଙ୍କ ଛଳ-ପଳାୟନ, ମଣିଭଦ୍ରାପର୍ବତ ବାସ କାଳେ ରାମକୃଷ୍ଣଙ୍କ ପ୍ରତି ଜରାସନ୍ଧର ଶତ୍ରୁଘାତୀ ଗଦା ନିକ୍ଷେପ, ଉଭୟଙ୍କ ପଳାୟନ ଓ ଶତ୍ରୁସେନାର ନିଧନ-ସାଧନ, କୋଳାହଳ ବନରେ ସମ୍ମିଳିତ ସେନାର ଦହନ, ବଜ୍ରନାଭାଦି ମିତ୍ରରାଜାଙ୍କ ପରାଜୟ କଥା ବର୍ଣ୍ଣିତ ।

ଦ୍ୱାଦଶ ସର୍ଗ : ଜରାସନ୍ଧଙ୍କ ପୁନର୍ବାର ମଥୁରାକ୍ରମଣ, ଗୋମତ ପର୍ବତ **** ବିଭିନ୍ନ ସ୍ଥାନରେ ରାମକୃଷ୍ଣଙ୍କ ଅବସ୍ଥାନ, ଜରାସନ୍ଧଙ୍କ କାଳଦମନ ନିମନ୍ତ୍ରଣ, ଯାଦବ ସଭାକୁ ସର୍ପପେଟିକା ପ୍ରେଷଣ, ଗରୁଡ଼ କର୍ତ୍ତୃକ ମଥୁରା ଧନ-ଜନଦ୍ୱାରା ପ୍ରେରଣ, ସମ୍ମିଳିତ ସୈନ୍ୟସହ ନାଳଦମନର ମଥୁରା ଅଭିଯାନ ଓ **** ର କୃଷ୍ଣସହ ସାକ୍ଷାତ୍, ଛଳନାପୂର୍ବକ କୃଷ୍ଣଙ୍କ ଇନ୍ଦ୍ରଗିରି ପଳାୟନ, ମୁଚୁକୁନ୍ଦ କର୍ତ୍ତୃକ କାଳଦମନର ନିଧନ ବର୍ଣ୍ଣିତ ।

ତ୍ରୟୋଦଶ ସର୍ଗ : କୌରବ ସଭାରେ ନାରଦଙ୍କ ପ୍ରବେଶ, ଯୁଧିଷ୍ଠିରଙ୍କଠାରେ ପାଣ୍ଡୁଙ୍କ ଯଶ ପ୍ରାପ୍ତି ****, କୃଷ୍ଣ ଆନୟନାର୍ଥ ଅର୍ଜୁନଙ୍କ ଦ୍ୱାରକାଗମନ ଓ କୃଷ୍ଣସହ ପ୍ରତ୍ୟାବର୍ତ୍ତନ, ନାରଦଙ୍କ ପୁନରାଗମନ, ଯୁଧିଷ୍ଠିରଙ୍କଠାରେ ନାରଦଙ୍କ ରାଜସୂୟଯଜ୍ଞ ବିଧିକଥିତ, ଭୀମାର୍ଜୁନ ସହ କୃଷ୍ଣଙ୍କର ମଗଧାଭିଯାନ, ଜରାସନ୍ଧଙ୍କ ଠାରୁ ମୋଚିସଙ୍କ ଖଡ୍ଗ ପାଶ ଆନୟନ ଆଦି ବର୍ଣ୍ଣିତ ।

ଚତୁର୍ଦ୍ଦଶ ସର୍ଗ : ନୃପମେଧ ଯଜ୍ଞ-କଥନ, କୃଷ୍ଣାର୍ଜୁନ ଭୀମଙ୍କ କାଶୀଯାତ୍ରା, ଶିବଦର୍ଶନ ଓ ଭୀମଙ୍କ ବିଭୂତି ଲାଭ, ତିନିଙ୍କର ସୁରନଦୀ ପ୍ରବେଶ, ଭୈରବୀ-ଦେବୀଙ୍କଠାକୁ କୃଷ୍ଣଙ୍କର ଗମନ, ବିପ୍ରବେଶରେ ତିନିଙ୍କର ଜରାପୁରରେ ପ୍ରବେଶ, ପ୍ରଥମ ଦ୍ୱାରେ ସହଦେବ ସହ ସାକ୍ଷାତ; ଦ୍ୱିତୀୟଦ୍ୱାରରେ ଭେରୀଦର୍ଶନ ଓ ଭୀମକର୍ତ୍ତକ ଚୂର୍ଣ୍ଣ, ତୃତୀୟଦ୍ୱାରରେ ଶାଳ୍ମଳୀ ତରୁଦର୍ଶନ ଓ ଅର୍ଜୁନ କର୍ତ୍ତକ ଛେଦନ, ଚତୁର୍ଥ ଦ୍ୱାରରେ ଖରଦର୍ଶନ ଓ କୃଷ୍ଣକର୍ତ୍ତକ ନିଧନ, ଜରାସନ୍ଧଙ୍କ ଯୁଦ୍ଧଯାଚଞ୍ଚା ଆଦି ବର୍ଣ୍ଣିତ ।

ପଞ୍ଚଦଶ ସର୍ଗ : ଜରାସନ୍ଧଙ୍କ ଆତ୍ମଗରିମା ପ୍ରକାଶ ଓ ଭୟ ପ୍ରଦର୍ଶନ ବିପ୍ରରୂପୀ ଭୀମଙ୍କୁ ଜରାସନ୍ଧଙ୍କ ମଲ୍ଲଯୁଦ୍ଧର ବିବରଣ କଥନ, ଭୀମସହ ଜରାସନ୍ଧଙ୍କ ଘୋର ମଲ୍ଲଯୁଦ୍ଧରେ ବିଜୟ, ଭୈରବୀଦେବୀଙ୍କ ପ୍ରତି ବନ୍ଦୀନୃପଗଣଙ୍କର ମୁକ୍ତି, ଜରାସନ୍ଧ ଓ ଭୀମଙ୍କର ପ୍ରତିଜ୍ଞା, ଜରାସନ୍ଧବଧ, ସହଦେବ ସହ ଯୁଦ୍ଧ, ତିନିଙ୍କର ପ୍ରତ୍ୟାଗମନ ଆଦି ବର୍ଣ୍ଣିତ ।

## ପ୍ରାଥମିକ ଉପାଦାନ ପଞ୍ଜିକା

ମିଶ୍ର, ହରିହର

୧୯୨୭ : ଅମର ପ୍ରାର୍ଥନା
ଉତ୍କଳ ସାହିତ୍ୟ ପ୍ରେସ୍, କଟକ

୧୯୨୯ : ରାଘବ ବିଳୟ
ଆଶା ପ୍ରେସ୍, ବ୍ରହ୍ମପୁର

୧୯୭୨ : ଗୋଚାରସିଦ୍ଧି କାବ୍ୟ
ବିଶ୍ୱଭାରତୀ ପ୍ରେସ୍, ସମ୍ବଲପୁର





## ସମ୍ପାଦକ : ଶ୍ରୀ ଦୀପ୍ତିରଞ୍ଜନ ଶେଠ

ଦୀପ୍ତିରଞ୍ଜନ ଶେଠ ଜଣେ କବି, ଗବେଷକ, ପ୍ରାବନ୍ଧିକ ଓ ଜୀବନୀ ସାହିତ୍ୟର ରଚୟିତା ଭାବରେ ସୁପରିଚିତ । ଇତିହାସ, ସଂସ୍କୃତି, ଐତିହ୍ୟ ଓ ସାହିତ୍ୟ କ୍ଷେତ୍ରରେ ପାରଦର୍ଶିତା ତାଙ୍କ ଲେଖାଗୁଡ଼ିକରୁ ସହଜରେ ଅନୁମେୟ ହୁଏ । ତାଙ୍କର ପ୍ରକାଶିତ ରଚନାବଳୀ ହେଲା :

(୧) ଭାରତୀ ବିଳାପ (ଖଣ୍ଡ କବିତା) – ୧୯୯୬ ।
(୨) ଖଗେଶ୍ୱର ପରିକ୍ରମା – (୨୦୦୬) ।
(୩) କବିଭୂଷଣ ସ୍ୱପ୍ନେଶ୍ୱର ଦାଶ– (୨୦୧୩): ପ୍ରକାଶକ: ଦିବ୍ୟପ୍ରକାଶନୀ, ଭୁବନେଶ୍ୱର
(୪) କୋଶଳବ୍ୟାସ ନୀଳମାଧବ ପାଣିଗ୍ରାହୀ – (୨୦୧୪) ।
(୫) କର୍ମଯୋଗୀ ବ୍ରଜମୋହନ – (୨୦୧୫) ।
(୬) ଅନାଲୋଚିତ ପ୍ରତିଭା ଖଗେଶ୍ୱର ସାହୁ – (୨୦୧୫) ।
(୭) ଶ୍ରୀଦୁର୍ଗା ଦଧିବାମନ ମନ୍ଦିର ସଂକ୍ଷିପ୍ତ ଇତିହାସ – (୨୦୧୫) ।
ପ୍ରକାଶକ : ଶ୍ରୀ ଶ୍ରୀ ଦୁର୍ଗା ଦଧିବାମନ ମନ୍ଦିର ପୂଜା କମିଟି, ଅର୍ଡ଼ା ।
(୮) ଅନାଲୋଚିତ ପ୍ରତିଭା ଶଶିଭୂଷଣ ମିଶ୍ରଶର୍ମା – (୨୦୧୫)
(୯) ହୁମା-ବିମଳେଶ୍ୱର (ଓଡ଼ିଆ) – (୨୦୧୫) ।
(୧୦) ବ୍ରଜମୋହନ ପତ୍ରାବଳୀ – (୨୦୧୬) ।
(୧୧) ଶ୍ରୀବଲ୍ଲଭ ପାଣିଗ୍ରାହୀ ରଚନାବଳୀ – (୨୦୧୬) ।
(୧୨) ସ୍ୱପ୍ନେଶ୍ୱର ସାହିତ୍ୟ ସଂଗ୍ରହ – (୨୦୧୬) ।
(୧୩) ହୁମା ବିମଳେଶ୍ୱର (ଓଡ଼ିଆ) ଦ୍ୱିତୀୟ ସଂସ୍କରଣ : (୨୦୧୭) ।
(୧୪) Huma-Bimaleswar : (English) – (୨୦୧୭) । (ପ୍ରଥମ ସଂସ୍କରଣ) ।
(୧୫) ଓଡ଼ିଆ ଆନ୍ଦୋଳନର ବିଶିଷ୍ଟ ସୈନିକ : ବାଲୁଙ୍କେଶ୍ୱର ମିଶ୍ର – (୨୦୧୭) ।
(୧୬) କବି ଖଗେଶ୍ୱର ଶେଠ – (୨୧୭) ।
(୧୭) ସମ୍ବଲପୁର ଭାଷାଆନ୍ଦୋଳନର ଅନ୍ୟତମ ସୈନିକ:ଶ୍ରୀପତି ମିଶ୍ର– (୨୦୧୮) ।
(୧୮) ନୀଳମାଧବ ପାଣିଗ୍ରାହୀ ରଚନାବଳୀ –(୨୦୧୮) ଯୁଗ୍ମ-ସଂପାଦନା ।
(୧୯) ଶିବପ୍ରସାଦ ତ୍ରିପାଠୀ ଜୀବନ ଓ ପ୍ରତିଭା – (୨୦୧୮) ।
(୨୦) ଡାକ୍ତର ଜନାର୍ଦ୍ଦନ ପୂଜାରୀ ଗ୍ରନ୍ଥାବଳୀ – (୨୦୧୮) ଯନ୍ତ୍ରସ୍ଥ ।

—